# ମଣିଷର ଭାଷା



ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ୍ ଲି:

# ମଣିଷର ଭାଷା

## मणिषर भाषा

## Manisara Bhasa

ଅମେରିକା ଅନୁଭୂତ ଓ ଲଣ୍ଡନ-ଚିଠିର ପ୍ରଣେତା

ଅଧ୍ୟାପକ ଶ୍ରୀ ଗୋଲୋକବିହାରୀ ଧଳ

ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ

ପ୍ରକାଶକ :—

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ପ୍ରାଇଭେଟ୍ ଲିଃ

New Students Stores (Private) Ltd

CUTTACK.

ବ୍ରହ୍ମପୁର, କଟକ

୧୯୫୭

ମୂଲ୍ୟ ତିନି ଟଙ୍କା

# ଅଭିମତ

ବିଶିଷ୍ଟ ଭାଷା-ବିଜ୍ଞାନବିତ୍ ଶ୍ରୀ ଗୋଲୋକବିହାରୀ ଧଳଙ୍କର 'ମଣିଷର ଭାଷା' ବହିଖଣ୍ଡି ମୁଁ ପ୍ରାୟ ଦୁଇବର୍ଷ ତଳେ ଥରେ ପଢ଼ିଥିଲି । ସେତେବେଳେ ତରତରରେ ଅଳ୍ପସମୟ ମଧ୍ୟରେ ପଢ଼ିଯାଇଥିଲି । ତେଣୁ ମୋଟରଗାଡ଼ିରେ ବସିଥିବା ଲୋକ ଚତୁର୍ଦ୍ଦିଗରେ ଶୋଭା ଯେତିକି ଦେଖିପାରେ, ମୁଁ ବହିଟିର ଉପାଦେୟତା ସେତିକି ମାତ୍ର ଉପଲବ୍ଧି କରିଥିଲି । ଏବେ ପୁଣି ଥରେ ମନ ଦେଇ ପଢ଼ିଲି । ଫଳରେ ସୌନ୍ଦର୍ଯ୍ୟ ଆଖିରେ ବେଶୀ ପଡ଼ିପାରିଲା ।

ଶ୍ରୀଯୁକ୍ତ ଧଳ ବହିଖଣ୍ଡିକ ଲେଖିବା ପାଇଁ ବହୁ ପରିଶ୍ରମ କରିଛନ୍ତି ଓ ଗବେଷଣାରେ ଅନେକ ସମୟ ଅତିପାତ କରିବାରେ ହେଳା ଦେଖାଇ ନାହାନ୍ତି । ଏପରିକି ସାଧାରଣ ପାଠକ ଯେଉଁ ଖବରକାଗଜରେ ଆଖି ବୁଲାଇବା ଦ୍ୱାରା ତାର ମୂଲ୍ୟ ଅସୁଲ କରିନିଅନ୍ତି, ତାର ଶିରୋନାମାଗୁଡ଼ିକ ଲେଖକ ତନ୍ନତନ୍ନ ଆଲୋଚନା କରିଛନ୍ତି । ସେଥିଯୋଗେ ସେ ଦେଖିଛନ୍ତି ଯେ ସେଥିରେ ଇଂରାଜୀ ଭାଷାର ପ୍ରଭାବ ବିଶେଷଭାବରେ ପଡ଼ୁଛି ।

ଓଡ଼ିଶା ରାଜ୍ୟର ଭାଷାଉପରେ କେବଳ ଯେ ଇଂରେଜୀର ପ୍ରଭାବ ପଡ଼ୁଛି, ତା ନୁହେଁ । ଏକେ ତ ତାହା ପ୍ରକୃତ ପଥରେ ସଂସ୍କୃତରୁ ଜନ୍ମିଛି । ତାପରେ ପୁଣି ହିନ୍ଦୀ, ପାରସୀ, ବଙ୍ଗଳା, ତେଲୁଗୁ ଆଦି ନାନା ଭାଷା ଓ ସାନ୍ତାଳ, କୋହ୍ଲ, କୁଇ ପ୍ରଭୃତି ଉପଭାଷାମାନଙ୍କ ପ୍ରଭାବରେ ତାହା ବହୁ ପରିମାଣରେ ପ୍ରଭାବିତ ହୋଇଛି । ଶ୍ରୀଯୁକ୍ତ ଧଳ ହୀରାକୁଦର ଭବିଷ୍ୟତ ଭାଷା ବିଷୟ ଉଲ୍ଲେଖ କରିଛନ୍ତି । କିନ୍ତୁ ବୁଝିବାକୁ ଗଲେ ଓଡ଼ିଆଭାଷାର ଭାଗ୍ୟ ତାଠାରୁ ବିଶେଷ ଭିନ୍ନ ନୁହେଁ । ହୀରାକୁଦର ଅଭ୍ୟୁଦୟ ପୂର୍ବରୁ ଜାମସେଦପୁର, ଖଡ଼ଗପୁର ଆଦିରେ ତାହା ହୋଇ ଯାଇଛି ଓ ଏବେ ରାଉରକେଲାରେ ମଧ୍ୟ ହେବ । ଅଳ୍ପ ଆୟତନବିଶିଷ୍ଟ

ଯେତେ ସ୍ଥାନରେ ନାନା ଭାଷାଭାଷୀ ଲୋକ ରହିବେ, ସେମାନଙ୍କ ଭାଷା ସ୍ୱରାକୁଦ ଭାଗ୍ୟ ପରି ହେବ ।

ଲେଖକ ପୃଥିବୀର ନାନା ଭାଷାରୁ ଉପାଦାନ ଆଣି ସେସବୁର ତୁଳନାତ୍ମକ ଚିତ୍ର ଦେଖାଇଛନ୍ତି । ତାହା ତାଙ୍କ ପାଣ୍ଡିତ୍ୟର ଯେପରି ପରିଚୟ ଦେଉଛି, ତାଙ୍କ ଚିତ୍ରଣ ଶକ୍ତି ମଧ୍ୟ ସେହିପରି ପ୍ରକାଶ କରୁଛି । ସେ ଗୋଟିଏ କଠିନ ବିଷୟର ଆଲୋଚନାରେ ହାତ ଦେଇ ତାକୁ ଭାରି ସହଜ ରୂପେ ବୁଝାଇଛନ୍ତି ଓ ସମସ୍ତଙ୍କ ବୁଝିବା ନିମନ୍ତେ ଚିତ୍ର କାଟି ଜଟିଳ ଭାବକୁ ସରଳ କରିଛନ୍ତି ।

ସେ ଲେଖିଛନ୍ତି ଯେ "ଲିଖିତ ଓ ଉଚ୍ଚାରିତ ଦୁଇ ଭାଷା ଭିତରୁ ମଣିଷ ଅନ୍ୟର ଲିଖିତ ଭାଷାକୁ ଯେତେ ଚଞ୍ଚଳ ଆୟତ୍ତ କରିପାରେ, ଉଚ୍ଚାରିତ ଭାଷାକୁ ସେତେ ଚଞ୍ଚଳ ପାରେନାହିଁ ।" ଏ ମତ ପନ୍ଦର ଅଣା ଠିକ୍; ମାତ୍ର ଷୋଳଅଣା ଠିକ୍ ନୁହେ ବୋଲି ମୋର ମନେ ହୁଏ । ଉଚ୍ଚାରିତ ଭାଷାକୁ ଲୋକେ ହଜାର ହଜାର ବର୍ଷ ଶିଖିବା ପରେ, ଲିଖିତ ଭାଷାର ସୃଷ୍ଟି—ଲିପିର ବ୍ୟବହାର ପରେ । ଏବେ ମଧ୍ୟ ଭାଷା ଶିଖାଇବାରେ ପ୍ରତ୍ୟକ୍ଷ ପ୍ରଣାଳୀର ବ୍ୟବହାର ଅଧିକ । ଆମେ ଓଡ଼ିଆମାନେ ଯେ ଘରପାଖର ଅନ୍ୟାନ୍ୟ ରାଜ୍ୟର ଭାଷା ଅଳ୍ପାଧିକ ହାସଲ କରୁଁ, ତାହା ବହୁ ସ୍ଥଳରେ ଭାଷା ସାହାଯ୍ୟରେ ମାତ୍ର ।

ଉଚ୍ଚାରିତ ଭାଷାର ପ୍ରଭାବ ଆମ ଉପରେ କମ ନୁହେ । ତାହାହିଁ ଭାଷାକୁ ଜୀବନ୍ତ କରି ରଖୁଛି । ତହିଁରୁହିଁ ଭାଷାର ନୂତନ ସୃଷ୍ଟି ଆଣୁଛି । ଗତ ପନ୍ଦର ବର୍ଷ ମଧ୍ୟରେ "ନାହିଁ" ଶବ୍ଦ କ୍ରମେ ଲୋପପାଇବାର ଲକ୍ଷଣ ଦେଖା ଗଲଣି । ଲେଖକମାନେ "ଯିବ ନାହିଁ" ନ ଲେଖି "ଯିବ ନି" ଲେଖିଲେଣି । ଜଣେ ବିଶିଷ୍ଟ ପଣ୍ଡିତ "ଯିବନି"ର ବ୍ୟବହାରରେ ବୋଧହୁଏ ଅସନ୍ତୋଷ ସୂଚାଇ "ଯିବନାଇଁ" ଲେଖୁଛନ୍ତି । "ବୋଧହୁଏ" ଚାରି ଅକ୍ଷରରୁ ଆସି ଦୁଇ ଅକ୍ଷରିଆ "ବୋଧେ"ରେ ରହିଲଣି ।

ଶ୍ରୀଯୁକ୍ତ ଧଳ ବନାନ ବିଭ୍ରାଟ ବିଷୟରେ ଗୋଟିଏ ଅଧ୍ୟାୟ ଲେଖିଛନ୍ତି । ଓଡ଼ିଆ ବନାନ-ପଦ୍ଧତିର ପରିବର୍ତ୍ତନ ଆଡ଼କୁ ଅନେକଙ୍କର ଦୃଷ୍ଟି ଯାଇଛି । ଏପରିକି, ଓଡ଼ିଆଭାଷାର ସମଧିକ ବ୍ୟୁତ୍ପତ୍ତି ଲାଭ ନ କଲେ ସୁଦ୍ଧା ଆଗ୍ରହୀ ବିନୋବା ବାଭେ ସେ ବିଷୟରେ ମତାମତ ବ୍ୟକ୍ତ କରୁଛନ୍ତି । ଆମ ଲିପି ଯେ ବୁଢ଼ା ହୋଇ ଗଲାଣି, ସେଥିରେ ସନ୍ଦେହ ନାହିଁ ; ତାର ଘର ପରିବର୍ତ୍ତନ ଆବଶ୍ୟକ । ଊନବିଂଶ ଶତାବ୍ଦୀର ଗହଣା ଯେପରି ବିଂଶ ଶତାବ୍ଦୀର ମହିଳା ପସନ୍ଦ କରୁନାହାନ୍ତି, ସେହିପରି ଆଧୁନିକ ସମାଜର କାମକୁ ପୁରୁଣା ଲିପି ଆସୁନାହିଁ । ମୋର ମନେ ଅଛି, ୧୯୧୩ ରୁ ମୁଁ ବର୍ଗର ପଞ୍ଚମ ବର୍ଣ୍ଣ ଗୁଡ଼ିକ ଅନୁସ୍ୱାର ଆକାରରେ ରଖିବାକୁ ଚେଷ୍ଟା କରିଥିଲି ଓ ୧୯୨୭ ମସିହାରେ ଅଧ୍ୟାପକ କାଶୀନାଥ ଦାସଙ୍କ ସାହାଯ୍ୟରେ ପାଟଣା ବିଶ୍ୱବିଦ୍ୟାଳୟଦ୍ୱାରା ଗୃହୀତ କରାଇ ଥିଲି । ଲିପିସଂସ୍କାର କାର୍ଯ୍ୟଟା ଅପରିପକ୍ୱ ଲେଖନୀକୁ ନ ଛାଡ଼ି ଶ୍ରୀଯୁକ୍ତ ଧଳଙ୍କ ପରି ଭାଷାବିତ୍ କରିପାରିଲେ ଫଳ ସର୍ବଜନ ଆଦୃତ ହେବ ।

ବ୍ୟାକରଣ ଯେତେ ମଣିଷର ମୁଣ୍ଡବ୍ୟଥା ହେଉ ପଛେ ରହିବ । ତାହା ଭାଷାର ଦର୍ଶନ । ମାତ୍ର ଦର୍ଶନ ବୋଇଲେ ଆମେ ଯାହା ବୁଝୁ, ତାହା ସବୁ ଦେଶରେ ଓ ସବୁ ଯୁଗରେ ସମାନ ନୁହେ । ଗୀତାର ଦର୍ଶନ ଓ ଗାନ୍ଧିଜୀଙ୍କ ଦର୍ଶନ ମଧ୍ୟରେ ପ୍ରଭେଦ ରହିଛି । ସଂସ୍କୃତ ବ୍ୟାକରଣ ଓଡ଼ିଆ ଭାଷାରେ ପୂର୍ଣ୍ଣ ମାତ୍ରାରେ ପ୍ରଯୁଜ୍ୟ ହୋଇ ନ ପାରେ । ଆମର ଯେ "ମୁଁ ଗଲି ଘରକୁ" ଲେଖାଯାଉଛି, ତାହା ଇଂରାଜୀ ବ୍ୟାକରଣକୁ ଟାଣି ଆଣି ଓଡ଼ିଆଭାଷାରେ ପୂରାଇବାର ପରିଣାମ ।

ଆମ ସାହିତ୍ୟ "ମଣିଷର ଭାଷା" ପରି ଚନ୍ଦ୍ରାପୂର୍ଣ୍ଣ ଉଚ୍ଚ ଧରଣର ଗ୍ରନ୍ଥ ଲୋଡ଼ୁଛି । ଶ୍ରୀଯୁକ୍ତ ଧଳ ଓଡ଼ିଆ ସାହିତ୍ୟର ଏ ଯଥାର୍ଥ କ୍ଷୁଧା ନିବାରଣ ଦିଗରେ ଲେଖନୀ ଚାଳନା କରନ୍ତୁ । ମୋର ତାଙ୍କୁ ଏତିକି ଅନୁରୋଧ । ତା ହେଲେ ସେ ଓଡ଼ିଶାର ଲୋକଙ୍କୁ ଗୋଟିଏ ଶୁଦ୍ଧ, ବିଜ୍ଞାନ-ସମ୍ମତ "ମଣିଷର ଭାଷା" ଦେଇପାରିବେ ।

ଶ୍ରୀ ଗୋଦାବରୀଶ ମିଶ୍ର
ନୂଆବର୍ଷ ୧-୪-୫୫
ପଣା ସଂକ୍ରାନ୍ତି

# ପହିଲି କଥା

ଓଡ଼ିଆ ଭାଷାରେ ଭାଷାତତ୍ତ୍ୱ ପୁସ୍ତକ ଅତି କମ୍ । ଆଧୁନିକ ଭାଷାତତ୍ତ୍ୱର ବିଚାର ନାହିଁ କହିଲେ ଚଳେ । ପୂଜ୍ୟ ଅଧ୍ୟାପକ ଶ୍ରୀ ଗିରିଜାଶଙ୍କର ରାୟ ସେ ଦିଗରେ ଯାହା କିଛି କରିଛନ୍ତି, ସେତିକି । ଭଷାତତ୍ତ୍ୱର ଅନେକ ବିଭାଗ ଅଛି :—ଲିଙ୍ଗୁଇଷ୍ଟିକ୍ସ୍, ଫିଲଲଜି, ଫୋନେଟିକ୍ସ୍, ଫୋନେମିକ୍ସ୍ ଓ ସେମାଣ୍ଟିକ୍ସ୍ ପ୍ରଭୃତି । ଏହି ଭାଷାତତ୍ତ୍ୱ କହିଲେ ମୁଁ ଲିଙ୍ଗୁଇଷ୍ଟିକ୍ସ୍ ଅର୍ଥରେ ଗ୍ରହଣ କରିଛି, ଅର୍ଥାତ୍ ଭାଷା ଭିତରେ ଯେଉଁ ସାଧାରଣ ନିୟମମାନ ଅଛି, ସେହିମାନଙ୍କର ବିଚାର । ସେ ଦୃଷ୍ଟିରୁ ଓଡ଼ିଶାରେ ପୁସ୍ତକ ଆଦୌ ଲେଖା ହୋଇନାହିଁ; କିମ୍ବା ଏହି ପୁସ୍ତକ ସେହି ଅଭାବ ପୂରଣ ପାଇଁ ଲେଖା ହୋଇନାହିଁ । ଏହି ଲେଖାର ଉଦ୍ଦେଶ୍ୟ ହେଉଛି, ପାଠକ ସାଧାରଣଙ୍କୁ ଦେଖାଇଦେବା ଯେ ଆମେ ପ୍ରତିଦିନ ଯେଉଁ ଶତ ସହସ୍ର ଶବ୍ଦ ଓ ବାକ୍ୟ ଲେଖୁ, ପଢ଼ୁ ଓ କହୁ ତାର ଭିତରେ ଭାଷାତତ୍ତ୍ୱର ଗମ୍ଭୀର ତଥ୍ୟ ନିହିତ ଅଛି । ଭାଷାତତ୍ତ୍ୱ ଗୋଟିଏ ଅସାମାଜିକ ବିଜ୍ଞାନ ନୁହେଁ । ସାଧାରଣ ଅପାଠୁଆ ଲୋକେ ଓଡ଼ିଆ କହୁ କହୁ କାହିଁକି ଇଂରାଜୀ କହନ୍ତି, ପିଲାମାନେ ଶ୍ରୁତଲିଖନ ଲେଖୁ ଲେଖୁ କାହିଁକି 'ନଦୀ'କୁ ନଦି ବୋଲି ଲେଖନ୍ତି—ଏହିସବୁ ସାଧାରଣ କଥା ଭିତରେ ସମାଜତତ୍ତ୍ୱ ଓ ମନସ୍ତତ୍ତ୍ୱର କାରଣମାନ ନିହିତ ଅଛି । ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମରେ ଭାଷାତତ୍ତ୍ୱ ଯଦିଓ ଏକ ଅବାନ୍ତର ବସ୍ତୁ ନୁହେ, ତଥାପି ଏପର୍ଯ୍ୟନ୍ତ ଭାଷାତତ୍ତ୍ୱକୁ ସାବତମା ବ୍ୟବହାର ମିଳିଛି; ମାତ୍ର ଆସନ୍ତା ଦଶବର୍ଷ ଭିତରେ ଭାଷାତତ୍ତ୍ୱ ବିଶ୍ୱବିଦ୍ୟାଳୟମାନଙ୍କରେ

ସ୍ୱତନ୍ତ୍ର ସ୍ଥାନ ପାଇବ ବୋଲି ଭାଷାତତ୍ତ୍ୱବିତ୍‌ମାନେ ଚେଷ୍ଟା କରୁଛନ୍ତି । ନିଜର ପ୍ରକୃତ ଆସନ ପାଇବା ପାଇଁ ଇଂଲଣ୍ଡ ଆମେରିକାରେ ମଧ୍ୟ ଭାଷାତତ୍ତ୍ୱକୁ ବହୁ ସମୟ ଲାଗିଥିଲା । ମାତ୍ର ଆଧୁନିକ ଭାରତରେ କମ୍ ସମୟ ଯେ ଲାଗିବ, ଏଥିରେ ଆଦୌ ସନ୍ଦେହ ନାହିଁ ।

ଥରେ ଜଣେ ସୁପ୍ରସିଦ୍ଧ ଓଡ଼ିଆ ଲେଖକ ଓ ସାହିତ୍ୟିକ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ସେ ଫିଲଲଜି, ଫୋନେଟିକ୍‌ସ ସବୁ କ'ଣ ?' ମୁଁ ତାଙ୍କଠୁ ବେଶୀ ଆଶ୍ଚର୍ଯ୍ୟ ହେଲି ଯେ ତାଙ୍କ ପରି ଲୋକ କିଛି ଜାଣିନାହାନ୍ତି । ପୁଣି ଶାନ୍ତିନିକେତନରୁ ଜଣେ ଅଜ୍ଞାତ ବନ୍ଧୁ, ବହୁ ଭର୍ତ୍ସନା କରି ମୋତେ ଏକ ପତ୍ର ଲେଖିଲେ, "ଓଡ଼ିଆ ଭାଷାରେ କେତୋଟା dialect ଅଛି, ଏ ବିଷୟର ଉତ୍ତର ନିକଟରେ ଜଣେ ଏମ୍. ଏ. ଗ୍ରାଜୁଏଟଙ୍କଠାରୁ ମିଳିଲା ନାହିଁ । କି ଲଜ୍ଜା ଓ ଦୁଃଖର କଥା ! ଆପଣମାନେ କ'ଣ କରୁଛନ୍ତି ?" ତା ପରେ ବହୁ ଗାଳିଗୁଲଜରେ ସେ ଚିଠି ଭରିଛି । ମୟୂରଭଞ୍ଜ କଲେଜରେ ମୁଁ ଭାଷାତତ୍ତ୍ୱ ସମ୍ପର୍କରେ ଏକ ଭାଷଣ ଦେଇସାରିଲା ପରେ ବହୁ ଉଦ୍‌ଯୋଗୀ ବନ୍ଧୁ କହିଲେ, "ଆଧୁନିକ ଭାଷାତତ୍ତ୍ୱ ଆମ ଦୈନନ୍ଦିନ ଜୀବନ ସହିତ ଏତେ ଘନିଷ୍ଠ-ଭାବରେ ସଂପୃକ୍ତ, ଏତେ ସରସ ଓ ଉପାଦେୟ ! ଆପଣ ଗୋଟିଏ ସରଳ ପୁସ୍ତକ ଲେଖନ୍ତୁ ।" ପୁସ୍ତକବଜାରରେ କୌଣସି ପ୍ରକାଶକ ଭାଷାତତ୍ତ୍ୱ ବହି ଛପାଇବେ ନାହିଁ; ତେଣୁ ମୁଁ ପାଣିରେ ବାଡ଼େଇବାର ବୋକାମି କରନ୍ତି କାହିଁକି ? ସେ ଯାହାହେଉ ବର୍ତ୍ତମାନ ଏହି ପୁସ୍ତକରେ ଯେଉଁ 'ଅୟଂ ଆରମ୍ଭ' ହୋଇଛି, ତାହା ପୂର୍ବୋକ୍ତ ବନ୍ଧୁମାନଙ୍କର ଅନୁସନ୍ଧିତ୍ସା, ଅଭିଯୋଗ ଓ ଅନୁରୋଧର ଫଳ । ସେମାନଙ୍କୁ ବହୁ ଧନ୍ୟବାଦ ।

ଏହି ପୁସ୍ତକରେ ଯେତେ ଉଦାହରଣ ଦିଆଯାଇଛି, ତହିଁରୁ ଅଧିକାଂଶ ଇଂରାଜୀ ଓ ଓଡ଼ିଆ ଭାଷାରୁ ଗୃହୀତ । ଅନ୍ୟ ଭାଷାର ଉଦାହରଣ ଦେଇ ସାଧାରଣ ପାଠକଙ୍କୁ ଆଖିବାଡ଼ରେ ପୂରାଇବାର ଚେଷ୍ଟା ଏଥିରେ କରାଯାଇ ନାହିଁ । ଓଡ଼ିଆ ଉଦାହରଣଗୁଡ଼ିକ ଦୈନନ୍ଦିନ

ଖବରକାଗଜ, ପତ୍ରପତ୍ରିକା ଓ ଲୋକମୁଖରୁ ସଂଗୃହୀତ । ଏକାଦିନରେ ନୁହେଁ, ଏକବର୍ଷ ମଧ୍ୟରେ ବିଭିନ୍ନ ସ୍ଥାନରେ ବିଭିନ୍ନ ଲୋକଙ୍କ-ଠାରୁ ସଂଗୃହୀତ । ସୌଭାଗ୍ୟର କଥା, ଗବେଷଣା କରିବା ପାଇଁ ଭାଷାତତ୍ତ୍ୱବିତ୍‌ଙ୍କୁ କୌଣସି ଲାବ୍ ବା ଗବେଷଣାମନ୍ଦିର ଭିତରେ ବସି ରହିବାକୁ ପଡ଼େନାହିଁ । ଯେ କୌଣସି ମଣିଷ, ମନ୍ତ୍ରୀଠାରୁ ମୂଲିଆ ପର୍ଯ୍ୟନ୍ତ ପାଟି ଫିଟାଇ କଥା କହିଲେଇ ଭାଷାତତ୍ତ୍ୱର ଉପାଦାନ ମିଳିଯାଏ । ରାସ୍ତା ଘାଟ, ହୋଟେଲ ବଜାର, ସ୍କୁଲ କଲେଜ ସବୁଠି ଭାଷାତତ୍ତ୍ୱ ପାଇଁ ଗବେଷଣାକ୍ଷେତ୍ର ଉନ୍ମୁକ୍ତ ରହିଛି । ଶାମୁକାଗର୍ଭରୁ ମୁକ୍ତା କାଢ଼ି ପାରିଲେ ହେଲା ।

ସାଧାରଣ ପାଠକ ଭାଷାତତ୍ତ୍ୱ ସମ୍ପର୍କରେ କିଛି ନ ଜାଣିଥିବା ବେଳେ ଗମ୍ଭୀରତତ୍ତ୍ୱ ଲେଖିବାର ଆବଶ୍ୟକତା ନାହିଁ । କାରଣ ଦେଶରେ କିଛି କାଳ 'ଲିଙ୍ଗୁଇଷ୍ଟିକ୍‌ସ୍' ବିଧିବଦ୍ଧ ଭାବେ ଚର୍ଚ୍ଚା ନ ହେଲା ପର୍ଯ୍ୟନ୍ତ ଶୁଖିଲା ତତ୍ତ୍ୱ ପ୍ରତି କେହି ଆକୃଷ୍ଟ ହେବେ ନାହିଁ । ତେଣୁ ଭାଷାତତ୍ତ୍ୱ ଯେ ଗୋଟିଏ ଜୀବନ୍ତ ବସ୍ତୁ, ସେତିକି ମାତ୍ର ଦେଖାଇବା ପାଇଁ ଏହି କ୍ଷୁଦ୍ର ପୁସ୍ତକର ଅବତାରଣା ।

ଓଡ଼ିଆ ଭାଷାତତ୍ତ୍ୱ ସମ୍ପର୍କରେ ଯେଉଁମାନେ ଗବେଷଣା କରିବା ପାଇଁ ଇଚ୍ଛା କରନ୍ତି, ସେମାନେ ଦେଖିପାରିବେ, ପୁସ୍ତକ-ଲିଖିତ ପ୍ରତ୍ୟେକ ସମସ୍ୟା ସେମାନଙ୍କର ଗବେଷଣାର ବସ୍ତୁ ହୋଇପାରେ । ଏଥିରେ କେବଳ ଆଭାସ ମାତ୍ର ଦିଆଯାଇଛି; ଗହନ ବନରେ ପ୍ରବେଶ କରିବା ପାଇଁ ଗଳି ରାସ୍ତାର ସନ୍ଧାନ ମାତ୍ର ଦିଆଯାଇଛି । କେହି ଇଚ୍ଛିଲେ, ସେହି ରାସ୍ତାକୁ ପରିଷ୍କାର-ପରିଚ୍ଛନ୍ନ କରି ସେହି ରାସ୍ତାରେ ଯାଇ ବହୁ ମୂଲ୍ୟବାନ୍ ବସ୍ତୁ ଆହରଣ କରିପାରିବେ । ପୁସ୍ତକ-ନିହିତ ସମସ୍ୟାମାନଙ୍କ ଉପରେ କେତେକ କଲେଜ ଓ କଟକ ରୋଟାରୀ କ୍ଲବରେ ଯେଉଁ ଭାଷଣ ଦେଇଥିଲି, ତାହାକୁ ମାର୍ଜିତ ପ୍ରବନ୍ଧ ଆକାରରେ ଉପସ୍ଥାପିତ କରିଛି ମାତ୍ର ।

ପୁଣି ଥରେ କହିରଖେ ଯେ ଗମ୍ଭୀରତତ୍ତ୍ୱ ବିଚାର କରିବା ଏହି କ୍ଷୁଦ୍ର ପୁସ୍ତକର ଆଦୌ ଉଦ୍ଦେଶ୍ୟ ନୁହେଁ । କୌଣସି ଅନୁଷ୍ଠାନ ବା ବିଶ୍ୱବିଦ୍ୟାଳୟର ସହାୟତା ବ୍ୟତିରେକେ ତା ସହଜସାଧ୍ୟ ନୁହେଁ । ଦୈନନ୍ଦିନ ଜୀବନରେ ଭାଷାତତ୍ତ୍ୱ କିପରି କାର୍ଯ୍ୟ କରୁଛି, ସରଳଭାବରେ ସେତିକି ସୂଚନା ଦେବାର କଥା । ଆଶାକରେ ସାଧାରଣ ପାଠକ ଏଥିରେ ଭାଷାତତ୍ତ୍ୱ ସମ୍ପର୍କରେ କେତେକ ଧାରଣା ପାଇବେ ଓ ଭାଷାତତ୍ତ୍ୱବିତ୍‌ମାନେ କେତେକ ତଥ୍ୟର ସହଜ ବିକାଶ ଲକ୍ଷ୍ୟ କରି ପାରିବେ । ସେତିକି ହେଲେ ଶ୍ରମ ସାର୍ଥକ ମନେ କରିବି ।

ଏ ପ୍ରକାର ପୁସ୍ତକ ଛପାଇବା ପାଇଁ ଯେଉଁ ପ୍ରକାଶକ ବନ୍ଧୁ ସାହସ କରିଛନ୍ତି, ତାଙ୍କୁ ବିଶେଷ ଧନ୍ୟବାଦ ।

**ଲେଖକ**

ଗଞ୍ଜେଇଡିହି
ଢେଙ୍କାନାଳ, ତା ୧୦ । ୬ । ୫୩

# ତୃତୀୟ ସଂସ୍କରଣର ଟୀପଣୀ

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ତଥା ପଣ୍ଡିତ ଡାକ୍ତର ଗୋଦାବରୀଶ ମିଶ୍ର 'ମଣିଷରଭାଷା' ଦ୍ୱିତୀୟ ସଂସ୍କରଣରେ ନିଜର ମନ୍ତବ୍ୟ ଦ୍ୱାରା ମୋତେ ଯେଉଁଭଳି ଭାବରେ ଉତ୍ସାହିତ କରିଛନ୍ତି, ସେଥିପାଇଁ ମୁଁ ତାଙ୍କ ନିକଟରେ ବିଶେଷ-ଭାବରେ ଋଣୀ । ତାଙ୍କ ପ୍ରତି ମୁଁ ମୋର ସହୃଦୟ କୃତଜ୍ଞତା ଜ୍ଞାପନ କରୁଛି ।

ଆବଶ୍ୟକତା ଦୃଷ୍ଟିରୁ ପ୍ରଥମ ସଂସ୍କରଣ ସମ୍ପର୍କରେ କେତେକ କଥା କହିବାକୁ ବାଧ୍ୟ ହେଉଛି । 'ପ୍ରଥମ ସଂସ୍କରଣ'ର ପହିଲି କଥାରେ ମୁଁ ସ୍ପଷ୍ଟ କହିଥିଲି ଯେ ଏହି ପୁସ୍ତକରେ କୌଣସି ଭାଷାତାତ୍ତ୍ୱିକ ସମସ୍ୟାର ସମାଧାନ ନାହିଁ । ସାମାଜିକ ଜୀବନରେ ମଧ୍ୟ ଭାଷାତତ୍ତ୍ୱର ଆଇନ କେମିତି କାମ କରୁଛି, ତହିଁର ସନ୍ଧାନ ମାତ୍ର ଦେଇଥିଲି । ହୁଏତ କେହି ପାଠକ ଏଥିରେ ଗମ୍ଭୀର ତଥ୍ୟ ଲୋଡ଼ି ହତାଶ ହୋଇଥିବେ । ମାତ୍ର ଗୋଟିଏ କଥା ଏଠି ପରିଷ୍କାର କହି ଦେବାକୁ ଚାହେଁ ଯେ, ଏ ବହିରେ ଗତାନୁଗତିକ ପ୍ରାଚୀନ ଫିଲ-ଲଜିର ବିଶେଷ କିଛି ନାହିଁ । ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ ବା Descriptive Linguisticsର କେତେକ ଜ୍ଞାତବ୍ୟ ତଥ୍ୟ ପରିବେଷଣ କରାଯାଇଛି ।

ସୌଭାଗ୍ୟର କଥା, ପୁନା ଭାଷାତତ୍ତ୍ୱ ସ୍କୁଲ ଏହି ଦେଶରେ ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱର ଏପରି ଏକ ବାୟୁମଣ୍ଡଳ ସୃଷ୍ଟି କରିପାରିଛି, ଯା ଫଳରେ ପୁନା ବିଶ୍ୱବିଦ୍ୟାଳୟରେ ତଥା ଆଗ୍ରା ବିଶ୍ୱବିଦ୍ୟାଳୟରେ ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ ଅଧ୍ୟୟନର ବ୍ୟବସ୍ଥା କରାଯାଉଛି । ଉତ୍କଳ ବିଶ୍ୱବିଦ୍ୟାଳୟରେ ମଧ୍ୟ ଆଧୁନିକ ଭାଷାତତ୍ତ୍ୱର ଆଶୁ ଅଧ୍ୟୟନ ପାଇଁ ଆଶା ପ୍ରକାଶ କରାଯାଉଛି । ଏହି ପ୍ରକାର

ନବୀନ ଆଶାମୟ ବାୟୁମଣ୍ଡଳରେ 'ମଣିଷର ଭାଷା' ଅଧିକ ପାଠକଙ୍କର ଦୃଷ୍ଟି ଆକର୍ଷଣ କରିବ ବୋଲି ବିଶ୍ୱାସ । ଭାଷାତତ୍ତ୍ୱ ଛାତ୍ରମାନଙ୍କ ପାଇଁ ଏଥିରେ ଅନେକ ଜ୍ଞାତବ୍ୟ ବିଷୟ ରହିଛି । ଆଧୁନିକ ଭାଷାତତ୍ତ୍ୱର ଅଗ୍ରଗତିର ସୂଚନା ଦେବାପାଇଁ କେତେକ ଚିତ୍ର ଦିଆଯାଇଛି ।

ଦ୍ୱିତୀୟ ସଂସ୍କରଣରେ କେତେକ ଭାଷାତାତ୍ତ୍ୱିକ ପ୍ରବନ୍ଧ ଯୋଗ କରି ଦିଆଯାଇଛି । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାମାନଙ୍କରେ ଏହି ପ୍ରବନ୍ଧଗୁଡ଼ିକ ପୂର୍ବେ ପ୍ରକାଶିତ ହୋଇଥିଲା । ପ୍ରବନ୍ଧଗୁଡ଼ିକର ସ୍ଥାୟୀ ମୂଲ୍ୟ ଦୃଷ୍ଟିରୁ ସେଗୁଡ଼ିକୁ 'ମଣିଷର ଭାଷା'ରେ ବର୍ତ୍ତମାନ ଯୋଡ଼ିଦିଆଗଲା । ସେଥିପାଇଁ ସଂପୃକ୍ତ ପତ୍ରିକାମାନଙ୍କର ସମ୍ପାଦକମାନଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କରୁଛି ।

ଆଗ୍ରା ବିଶ୍ୱବିଦ୍ୟାଳୟ
ତା ୨୭।୧।୫୭

**ଲେଖକ**

# ସୂଚୀପତ୍ର

# ଭାଷା

"ତାର ଆଖିର ମଉନ ଭାଷା,
ପ୍ରକାଶିଲା କେତେ ଗୋପନ କାହାଣୀ
କେତେ ଯେ ଗୋପନ ଆଶା ।"

ମନୁଷ୍ୟ ସିନା ଜିଭରେ କଥା କହେ; କିନ୍ତୁ ଆଖିରେ କ'ଣ କଥା କହେ ? ଆଶା ଓ ଭାଷା ଉଭୟ ବି ଆଖିରେ ପ୍ରକାଶ କରେ ? ପୁଣି ଖାଲି ଆଶା ନୁହେ, ଗୋପନ ଆଶା ବି ! ସମସ୍ତେ ଜାଣନ୍ତି ଆଶାକୁ ପ୍ରକାଶ କରିବା ପାଇଁ ଭାଷା ତିଆରି । ଅବଶ୍ୟ ଭାଷା ମାନେ ମୁଖନିଃସୃତ ଭାଷା; ଯଥା—ଭ୍ରମରର ଗୁଞ୍ଜନ, ପକ୍ଷୀର କୂଜନ, ଗାଈର ହମ୍ବା ଓ ମଣିଷର ବାଗ୍‌ଯନ୍ତ୍ର-ନିୟନ୍ତ୍ରିତ ଧ୍ୱନି, ଶବ୍ଦ, ବାକ୍ୟ ଯାବତ୍ କିଛି; କିନ୍ତୁ ଭାଷାବିତ୍‌ମାନଙ୍କ ମତରେ ମନକଥା ପ୍ରକାଶ କରିବା ପାଇଁ ଯେ କୌଣସି ଉପାୟ ଅବଲମ୍ବନ କଲେ ତାହା ଭାଷା । ପାଟି ନ ଫିଟାଇ ପାନ ଖଣ୍ଡେ ଦେଇ ଗୁଲିଗଲେ ବି ସେ ଭାଷା । ଆଉ କେତେକ କହନ୍ତି, ଯଦି ଜଣେ ଲୋକ ଅତର ଲଗାଇ ପକେଟରୁ ରୁମାଲ କାଢ଼ି ବୁଲେ ଓ ଅନ୍ୟ ଲୋକ ତହିଁରୁ କିଛି ସଂକେତ ପାଏ, ତେବେ ସେହି ଅତରଲଗା, ସେହି ରୁମାଲଧରା ମଧ୍ୟ ବୈଜ୍ଞାନିକ ଦୃଷ୍ଟିରୁ ଭାଷା ବୋଲି ବିଚାର କରିବାର କଥା । ବିଜ୍ଞାନ ଦୃଷ୍ଟିରୁ ଭାଷା ମାନେ ସଂକେତ, ଯାହା ମନୁଷ୍ୟକୁ କୌଣସି କାର୍ଯ୍ୟ କରିବାପାଇଁ ପ୍ରେରଣା ଦିଏ । ସହଜ ଜୀବନରେ

ସାଂକେତିକ ଭାଷାର ପ୍ରଚଳନ ଖୁବ୍ ବେଶୀ । ବଡ଼ ବଡ଼ ସହର-ମାନଙ୍କରେ ରାସ୍ତାରେ ଯାଉଁ ଯାଉଁ ହଠାତ୍ ମନ୍ଦାରଫୁଲ ପରି ଲାଲବତୀ ଜଳିଉଠେ; ପୁଣି ମିନିଟିଏ ଦୁଇ ମିନିଟ ପରେ କୋମଳ ନୀଳ ଆଲୋକ ଝରିପଡ଼େ । ଲାଲ ଆଲୁଅ ଦେଖି ଗାଡ଼ି ଅଟକିଯାଏ ଓ ନୀଳ ଆଲୁଅ ଦେଖି ଗାଡ଼ି ପୁଣି ଛୁଟିଯାଏ । ଲାଲବତୀର ଅର୍ଥ—'ସମ୍ମୁଖରେ ବିପତ୍ତି ଅଛି, ରହିଯା'; ନୀଳବତୀର ଅର୍ଥ—'ବିପତ୍ତିର ଆଶଙ୍କା ନାହିଁ, ବର୍ତ୍ତମାନ ଆଗେଇ ଯା ।' ସ୍କୁଲରେ ଘଣ୍ଟା ବାଜିଲେ ପିଲା ସ୍କୁଲକୁ ଦୌଡ଼ନ୍ତି, କଳରେ ବଂଶୀ ବାଜିଲେ କୁଲି ମଜୁରିଆ ଜୁଣ୍ଡ ହୁଅନ୍ତି, ପିଲା ଚିହାରି ଉଠିଲେ ମା ଦୌଡ଼ିଯାନ୍ତି । ରାସ୍ତାର ଲାଲବତୀ, ସ୍କୁଲର ଘଣ୍ଟା, କଳର ବଂଶୀ ଏ ସବୁକୁ ଭାଷା ବୋଲି ସ୍ୱୀକାର କରାଯାଏ; କିନ୍ତୁ ମନେ ରଖିବାକୁ ହେବ ବତୀ, ବଂଶୀ, ଘଣ୍ଟା ପ୍ରଭୃତିର ସାଂକେତିକ ଭାଷା ମଣିଷର ମୁଖନିଃସୃତ ଶବ୍ଦ-ବାକ୍ୟସମ୍ବଳିତ ଭାଷାଠାରୁ ଅନେକ ତଫାତ୍ । ମଣିଷ-ଭାଷା ଗୋଟିଏ ଭାବକୁ ନାନାଭାବରେ ପ୍ରକାଶ କରେ; ମାତ୍ର ଲାଲବତୀର ପ୍ରକାଶଭଙ୍ଗୀ ସର୍ବଦା ଏକପ୍ରକାର । ଉଦାହରଣ ସ୍ୱରୂପ, ଲାଲବତୀ ସଂକେତ ଦିଏ, "ସମ୍ମୁଖରେ ବିପତ୍ତି ଅଛି, ରହିଯା ।" ଲାଲବତୀ ବିପତ୍ତି ଅଛି ବୋଲି ସଂକେତ ଦେଇପାରେ; ମାତ୍ର କି ପ୍ରକାର ବିପତ୍ତି ତା ସେ ବିଶ୍ଳେଷଣ କରିପାରେ ନା । ରାସ୍ତାରେ ମଣିଷ ଅଛନ୍ତି, ଘୋଡ଼ା ଅଛନ୍ତି ନା ହାତୀ ଅଛନ୍ତି କିମ୍ବା କାହାର ମଟର ଗାଡ଼ିଟା ଭାଙ୍ଗି ପଡ଼ିଛି, ରାସ୍ତା ମାଡ଼ିବସିଛି, ଏ ପ୍ରକାର ବିଶେଷ କଥା ଲାଲବତୀ କହିପାରେ ନା । କାରଣ ଲାଲବତୀର ଅର୍ଥ ସବୁ ସମୟରେ ଏକ । ମନୁଷ୍ୟ ଭାଷା ବିଶେଷ ବିଶେଷ ଅବସ୍ଥାରେ ଯେମିତି ପରିବର୍ତ୍ତିତ ହୋଇପାରେ, ଲାଲବତୀ ଭାଷାରେ ତାହା ସମ୍ଭବ ନୁହେଁ ।

ଆମେ ଦେଖୁଛୁ ଯେ ମଣିଷ ନିଜର ଭାବପ୍ରକାଶ ପାଇଁ ଠାର ବି ବ୍ୟବହାର କରେ । ଜଡ଼ା ଓ କାଲମାନେ ମଧ୍ୟ ପାଟି ନ ଫିଟାଇ କେବଳ ଠାରଦ୍ୱାରା କାମ ହାସଲ କରନ୍ତି । ସୃଷ୍ଟିର ଆରମ୍ଭରେ ଆଦାମ ଓ ଇଭ୍ ହୁଏତ ପରସ୍ପରକୁ ଠାରିଥିବେ କି ଉଚ୍ଚାରିତ ବାକ୍ୟ ବ୍ୟବହାର କରିଥିବେ, କିଏ ଜାଣେ ? ତେବେ ଠାରଦ୍ୱାରା ଯଦି

ଲୋକେ କାମ ହାସଲ କରୁଛନ୍ତି, ଭାବପ୍ରକାଶ ପାଇଁ ଧ୍ୱନି ( sound ) ବ୍ୟବହାର କରିବାର ଆବଶ୍ୟକତା କ'ଣ ? ମାତ୍ର ଠାର ଅପେକ୍ଷା ଧ୍ୱନି ଅନେକ ଗୁଣରେ ଭଲ । ଅନ୍ଧାର ରାତିରେ ଠାର ସଙ୍କେତରେ ଦେଖାଯାଏ ନାହିଁ କିମ୍ବା ଗୋଟିଏ ଘର ଭିତରେ ବସି ଠାର ଦେଲେ ନିକଟସ୍ଥ ଗୃହକୁ ମଧ୍ୟ ଦେଖାଯାଏ ନାହିଁ । ତା'ଛଡ଼ା ଯେଉଁ ହାତଗୋଡ଼ ସାହାଯ୍ୟରେ ଠାର ଦେବାର କଥା, ସେମାନଙ୍କର କାମ ବହୁତ । ଜୀବନ ଉପାର୍ଜନ ପାଇଁ ପ୍ରତିମୁହୂର୍ତ୍ତ ସେମାନଙ୍କୁ ଖଟାଇବାକୁ ହୁଏ । ମାତ୍ର ଦିନରେ ଦୁଇ ତିନି ଥର ଖାଇବା ଛଡ଼ା କଣ୍ଠ, ଜିହ୍ୱା, ଦନ୍ତ, ଓଷ୍ଠ ପ୍ରଭୃତିଙ୍କର ବିଶେଷ କାମ ନାହିଁ । ସେମାନଙ୍କୁ ଇଚ୍ଛାନୁଯାୟୀ ବ୍ୟବହାର କରି ବିନା କଷ୍ଟରେ ଶୋଇକରି ମଧ୍ୟ ଶବ୍ଦ ସୃଷ୍ଟି କରାଯାଇପାରେ । ଭଗବାନଙ୍କ ଅସୀମ ଦୟାରୁ ମନୁଷ୍ୟ ମୁଖନିଃସୃତ ଶବ୍ଦକୁ ଭାଷାର ମାଧ୍ୟମ ରୂପେ ପାଇପାରିଛି ।

ଭାଷା କାହାକୁ କହନ୍ତି—ଏ ପ୍ରଶ୍ନ ଉଠିଲା ମାତ୍ରେ ଲୋକେ କହନ୍ତି, "ଯାହା ମନର ଭାବକୁ ପ୍ରକାଶ କରେ ।" ମାତ୍ର ଅଷ୍ଟ୍ରିଆର ପ୍ରଧାନ ମନ୍ତ୍ରୀ ମାଟର୍ନିକ୍ ଥରେ କହିଥିଲେ, "ମନର ଭାବକୁ ଲୁଚାଇବା ପାଇଁ ଭାଷାର ଜନ୍ମ ।" ଅନେକାଂଶରେ ମାଟର୍ନିକଙ୍କ କଥା ସତ୍ୟ । ମଣିଷ ମନରେ ଯେତେ ଭାବ, ଯେମିତି ଇତସ୍ତତଃ ଭାବରେ ଜାଗ୍ରତ ହୁଏ, ମଣିଷ ଯଦି ତାହା ପ୍ରକାଶ କରୁଥାନ୍ତା, ତାହା ହେଲେ ସମାଜରେ ତାର ସ୍ଥାନ ବିପନ୍ନ ହୋଇପଡ଼ନ୍ତା । ତାର ଯାହା ପ୍ରକାଶ କରିବାର କଥା, ସେ ଅନେକ ଭାବିଚିନ୍ତି ତାକୁ ଏକ ରୁଚିକର 'ଆବରଣ ଭିତରେ ପ୍ରକାଶ କରେ । ଇଂରେଜୀ ଲୋକ ଅସୁନ୍ଦରୀ ଝିଅଙ୍କୁ ugly girl ନ କହି she is a good sport ବୋଲି କହନ୍ତି; ଜଣକୁ fool ବୋଲି ନ କହି he has wonderful sence of humour ବୋଲି କହନ୍ତି । ମୂର୍ଖ ଲୋକକୁ ବିଦ୍ରୂପ କରି ଆମେ ବି କହୁ, ସେ ଜଣେ 'ଭୁଷପଣ୍ଡିତ' । ସଭା ସମିତିରେ ମନରେ ଜାଗ୍ରତ ସମସ୍ତ ଚିନ୍ତାକୁ ଇଚ୍ଛାନୁଯାୟୀ ପ୍ରକାଶ କରିଦେଲେ ଲୋକେ କେତେ ଘୃଣା କରନ୍ତି, ତାହା ଅଳ୍ପ ବହୁତେ ସମସ୍ତେ ଜାଣନ୍ତି । ସୁତରାଂ ଭାଷାର ପ୍ରକାଶଶକ୍ତି ସମ୍ପର୍କରେ ମାଟର୍ନିକ୍ ଯାହା କହିଥିଲେ, ତା ଅନେକାଂଶରେ ସତ୍ୟ ।

ଯେ କୌଣସି ଭାଷାର ଆମେ ଦୁଇଟି ପାଖ ଦେଖୁ । ଏକ ପକ୍ଷରେ ଲିଖିତ ଭାଷା, ଅନ୍ୟ ପକ୍ଷରେ ଉଚ୍ଚାରିତ ବା ଫୋନେଟିକ୍ ଭାଷା । ଓଡ଼ିଆ ଭାଷା କହିଲେ ଓଡ଼ିଆ ପୁସ୍ତକମାନଙ୍କରେ ଲିଖିତ ଭାଷା ଓ ଓଡ଼ିଆ ଲୋକେ କହୁଥିବା ଉଚ୍ଚାରିତ ଭାଷା ଉଭୟଙ୍କୁ ବୁଝାଏ । ଉଚ୍ଚାରିତ ଭାଷା ଜୀବନ୍ତ; ମାତ୍ର ଲିଖିତ ଭାଷା ନିଃଶବ୍ଦ ସଙ୍କେତମାନଙ୍କର ସମାହାର ( series of dead symbols ) ମାତ୍ର । ପୁସ୍ତକଲିଖିତ ନିଃଶବ୍ଦ ଅକ୍ଷରଗୁଡ଼ିକ ମୃତ । ଉଚ୍ଚାରଣଦ୍ୱାରା ସେମାନଙ୍କୁ ଜୀବନ୍ୟାସ ଦେଲେ ସେମାନେ ଭାଷାରେ ପରିଣତ ହୁଅନ୍ତି । ଉଚ୍ଚାରଣ କରା ନ ଯିବା ପର୍ଯ୍ୟନ୍ତ ଅକ୍ଷରକୁ କେବଳ ଭାଷା ବୋଲି କହି ହେବ ନାହିଁ । ଯଦି କେହି ଅକ୍ଷରକୁ ଭାଷା କହନ୍ତି, ତେବେ ନିମ୍ନୋକ୍ତ ଦୁଇ ପଂକ୍ତି କେଉଁ ଭାଷା ବୋଲି କହିବାକୁ ହେବ, ବିଚାର କରାଯାଉ; ଯଥା—

(१) **से घरकु याउअछि**

(२) Se gharuku jauchhi

ପ୍ରଥମ ପଂକ୍ତି ଦେବନାଗରୀ ଅକ୍ଷରରେ ଓ ଦ୍ୱିତୀୟ ପଂକ୍ତି ଇଂରେଜୀ ଅକ୍ଷରରେ ଲେଖାହୋଇଛି । ତେଣୁ ଆମେ ଏଠି କି ଭାଷା ଲେଖିଛୁଁ ବୋଲି କହିବା ? କାଉ ମୟୂର ବେଶ ପିନ୍ଧି ମୟୂର ହେବାକୁ ଚେଷ୍ଟା କଲେ ବି ସେ କାଉ । ଚିଁ ମେଲି କରିବା ମାତ୍ରେ ସେ ଧରାପଡ଼ିବ । ସେହିପରି ଦେବନାଗରୀ ଓ ଇଂରେଜୀ ପୋଷାକ ପିନ୍ଧି ଓଡ଼ିଆ ଭାଷା ଛଦ୍ମ ବେଶରେ ରହିଲେ ମଧ୍ୟ ଜୀବନ୍ୟାସ ଦେଇ ଉଚ୍ଚାରଣ କଲାମାତ୍ରେ ଓଡ଼ିଆ ବୋଲି ଚିହ୍ନାପଡ଼େ । ତେଣୁ ଉଚ୍ଚାରଣ ହିଁ ଭାଷା । ଅକ୍ଷର କେବଳ ପୋଷାକ ମାତ୍ର । ଏହି ସହଜ କଥାକୁ ବୁଝାଇବା ପାଇଁ ଭାଷାତତ୍ତ୍ୱବିତ୍-ମାନଙ୍କୁ ୧୭୫୦ରୁ ୧୯୦୦ ମସିହା ପର୍ଯ୍ୟନ୍ତ ଦେଢ଼ଶହ ବର୍ଷ ଲାଗିଥିଲା । ଆପି ତ ମନୁଷ୍ୟ ନିଜକୁ ବୁଦ୍ଧିମାନ୍ ମନେକରେ ! ଉଚ୍ଚ ଦର୍ଶନ, ଉଚ୍ଚ ପଦାର୍ଥବିଜ୍ଞାନର ଜଟିଳତତ୍ତ୍ୱ ଯେଉଁ ମନୁଷ୍ୟ ବୁଝେ, ଭାଷାତତ୍ତ୍ୱର ଏହି ସହଜ କଥା ବୁଝିବା ପାଇଁ ସେ ରାଜି ହୁଏ ନାହିଁ, ଏହା ବଡ଼ ଆଶ୍ଚର୍ଯ୍ୟ କଥା ! ଭାଷାତତ୍ତ୍ୱବିତ୍‌ମାନେ ଭାଷାର ଉଚ୍ଚାରଣ ନ ଜାଣି ଅର୍ଥାତ୍ ଜୀବନ୍ତ ଭାଷାକୁ ନ ଚିହ୍ନି ମୃତ ଅକ୍ଷରମାନଙ୍କୁ ଅତି ବିଶ୍ୱାସ କରି କି ପ୍ରକାର

ବିପତ୍ତିରେ ପଡ଼ି ସମୁଦାୟ ଭାଷାତତ୍ତ୍ୱବିଜ୍ଞାନଙ୍କୁ ବିପଥଗାମୀ କରିଥିଲେ, ତା ଭାଷାବିତ୍‌ମାତ୍ରେ ଜାଣନ୍ତି । ଅକ୍ଷର ଭାଷା ଓ ଉଚ୍ଚାରଣ ଭାଷା ନେଇ ଭାଷାରେ କି ବିଭ୍ରାଟ ହୁଏ, ତାର ଗୋଟିଏ ଦୁଇଟି ମାତ୍ର ଉଦାହରଣ ବିଚାର କରାଯାଉ ।

| ଅକ୍ଷର ଭାଷା | ନିକଟତମ ଉଚ୍ଚାରଣ ଭାଷା | ଓଡ଼ିଆ ରୂପ |
| --- | --- | --- |
| report | ରିପୋଟ୍‌ | ରିପୋର୍ଟ |
| order | ଅଡ଼ା | ଅର୍ଡ଼ର |

ଇଂରେଜୀ ଭାଷାର ଏହି ଦୁଇଟି ଶବ୍ଦରେ ଥିବା r ଗୁଡ଼ିକ ଉଚ୍ଚାରିତ ହୁଅନ୍ତି ନାହିଁ । କିନ୍ତୁ ଉଚ୍ଚାରଣ ଭାଷା ନ ଜାଣିଥିବା ଲୋକେ r ଗୁଡ଼ିକୁ ମୂଲ୍ୟ ଦେଉଥିବାରୁ 'ରିପୋର୍ଟ' ଶବ୍ଦରେ ଗୋଟିଏ ରେଫ୍ ଓ 'ଅର୍ଡ଼ର'ରେ ଗୋଟିଏ ରେଫ ଓ ଗୋଟିଏ ର ବ୍ୟବହାର କରନ୍ତି । ଇଂରେଜୀ ବନାନରେ r କୌଣସି ଐତିହାସିକ କାରଣରୁ ସ୍ଥାନ ପାଇ ପାରିଥାଏ; ମାତ୍ର ଜୀବନ୍ତ ଉଚ୍ଚାରଣ ଭାଷାରେ ଯେତେବେଳେ ତାର କୌଣସି ଚିହ୍ନ ନାହିଁ, ତାକୁ ଆମ ଓଡ଼ିଆ ବନାନରେ ସ୍ଥାନ ଦେବାର ଆବଶ୍ୟକତା ନାହିଁ । ଅନ୍ତତଃ ଆମେ ଯଦି ଖାଲି ଇଂରେଜୀ ଭାଷା ଶୁଣିଥାନ୍ତେ, କେବେହେଲେ ତାର ବନାନ ବା ମୁଦ୍ରିତ ଶବ୍ଦ ଦେଖି ନ ଥାନ୍ତେ, ତେବେ ଆମେ 'order' ଶବ୍ଦରେ କେବେ ଓଡ଼ିଆ ଲେଖିବା-ପାଇଁ ର ଯୋଗ କରି ନ ଥାନ୍ତେ । ଏହି ବିପତ୍ତି କେବଳ ଆମର ନୁହେ, ପୃଥିବୀରେ ସବୁ ଜାତିଙ୍କର । ମାତ୍ର ଗୋଟାଏ କାଳିମା ସବୁ ଜାତିର ଅଛି ବୋଲି ତାକୁ ପୃଥିବୀର ଗୌରବ କହିବା ଅସମ୍ଭବ । ଭାଷା ରାଜ୍ୟରେ ଏହି ବିପତ୍ତିର କାରଣ ପ୍ରିଣ୍ଟିଂ ପ୍ରେସ । ୧୫୦୦ ଖ୍ରୀଷ୍ଟାବ୍ଦରୁ ଆଜିପର୍ଯ୍ୟନ୍ତ ପ୍ରିଣ୍ଟିଂ ପ୍ରେସ ଅନବରତ କାର୍ଯ୍ୟ କରି ଲିଖିତଭାଷାକୁ ଏପରି ଦୃଢ଼ୀଭୂତ କରିଦେଇଛି ଯେ ଭାଷା କହିଲେ ଲୋକେ ଅକ୍ଷରକୁ ଜାଣନ୍ତି । କଥିତ ବା ଉଚ୍ଚାରିତ ଭାଷାର ପୁନଃଜନର ପ୍ରାରମ୍ଭ ମାତ୍ର ଏହି ବିଂଶ ଶତାବ୍ଦୀରେ । ଟକିଂ ପ୍ରେସ ବା ରେଡ଼ିଓ ବର୍ତ୍ତମାନ ମଣିଷର ଭାଷାକୁ ନିମିଷକ ଭିତରେ ପୃଥିବୀ ଉପରେ ବିସ୍ତୃତ କରିଦିଏ । ପ୍ରିଣ୍ଟିଂ ପ୍ରେସ ବର୍ତ୍ତମାନ ଟକିଂ ପ୍ରେସର

ପଛରେ । ରେଡ଼ିଓ, ଟେଲିଫୋନ୍, ଟେଲିଭିଜନ୍, ବେତାର ଟାଇପ ରାଇଟର୍, ସର୍ଟହାଣ୍ଡ୍ ସମସ୍ତେ ବର୍ତ୍ତମାନ ଏହି ଉଚ୍ଚାରିତ ଭାଷାର ପରିପୋଷକ । ଲିଖିତ ଓ ଉଚ୍ଚାରିତ ଦୁଇ ପ୍ରକାର ଭାଷା ଭିତରୁ ମଣିଷ ଅନ୍ୟର ଲିଖିତ ଭାଷାକୁ ଯେତେ ଚଞ୍ଚଳ ଆୟତ୍ତ କରିପାରେ, ଉଚ୍ଚାରିତ ଭାଷାକୁ ସେତେ ଚଞ୍ଚଳ ତାହା କରିପାରେ ନାହିଁ । ଭାରତୀୟ ଛାତ୍ରମାନେ ସୁନ୍ଦର ଇଂରେଜୀ ଲେଖିପାରନ୍ତି; ମାତ୍ର ସାହେବୀ ଭଙ୍ଗୀରେ ଇଂରେଜୀ ଉଚ୍ଚାରଣ କରିପାରନ୍ତି ନାହିଁ । କାରଣ ପ୍ରକୃତି ଏଡ଼େ ନିର୍ଦ୍ଦୟ ଯେ ମନୁଷ୍ୟ ନିଜ ଭାଷା ଉଚ୍ଚାରଣ କରିବା ପାଇଁ ଯେତିକି କ୍ଷମତା ହାସଲ କରେ ଏବଂ ଉଚ୍ଚାରଣଯନ୍ତ୍ରର ମାଂସପେଶୀ ତହିଁରେ ଯେତିକି ଅଭ୍ୟସ୍ତ ହୋଇପଡ଼େ, ଅନ୍ୟ ଭାଷା ଉଚ୍ଚାରଣ ପାଇଁ ସେ ସେତିକି ଅକ୍ଷମ ହୁଏ । ଇଣ୍ଡିଆରୁ ଅଷ୍ଟ୍ରେଲିଆ ଉଡ଼ିଯିବା କେତେ ଘଣ୍ଟାର କଥା; ମାତ୍ର ଅଷ୍ଟ୍ରେଲିଆ କିମ୍ବା ଆଫ୍ରିକାର ଆଦିମ ଲୋକମାନଙ୍କର ଭାଷାର ଗୋଟିଏ ମାତ୍ର ଶବ୍ଦ ଉଚ୍ଚାରଣ କରିବା ଗୋଟାଏ ଯୁଗର କଥା । ଇଂଲଣ୍ଡର ସର୍ବପ୍ରଥମ ଫୋନେଟିସିଆନ୍ ହେନରି ସ୍ୱୀଟ୍ ପାରିସର r ଉଚ୍ଚାରଣକୁ ଆୟତ୍ତ କରିବା ପାଇଁ ଜୀବନବ୍ୟାପୀ ସାଧନା କରି ମଧ୍ୟ ବିଶେଷ କୃତକାର୍ଯ୍ୟ ହୋଇ ନ ଥିଲେ । ଆଜି ଦୁନିଆରେ ଲିଖିତ ଭାଷା ଅପେକ୍ଷା ଉଚ୍ଚାରିତ ଭାଷାର ଆବଶ୍ୟକତା ଅନେକ ବେଶୀ । ପୃଥିବୀ ଏଡ଼େ କ୍ଷୁଦ୍ର ହୋଇଗଲାଣି ଯେ ଯେ କୌଣସି ମୁହୂର୍ତ୍ତରେ ଆମେ ମାଲୟଠାରୁ ମେକ୍ସିକୋ ପର୍ଯ୍ୟନ୍ତ ବିଚରଣ କରିପାରୁ । ତା ଛଡ଼ା ରେଡ଼ିଓ ବା ଟେଲିଭିଜନ ଖୋଲିବା-ମାତ୍ରେ ଯାଭାରୁ ଜର୍ମାନୀ ପର୍ଯ୍ୟନ୍ତ ସବୁ ପ୍ରକାର ଭାଷା ଶୁଣୁ । ପ୍ରିଣ୍ଟିଂ ପ୍ରେସର ଦିନ ଯାଇଛି । ବର୍ତ୍ତମାନ ଟକିଂ ପ୍ରେସର ଯୁଗ !

ମଣିଷ ଗୋଟିଏ କଥାକୁହା ଜୀବ । ମଣିଷ ବୋଲି ସେ କଥା କହେ ଏବଂ କଥା କହେ ବୋଲି ସେ ମଣିଷ । ସେଇଥିପାଇଁ ସେ ପଶୁମାନଙ୍କ ଉପରେ ଓ ଦେବତାମାନଙ୍କ ତଳେ । ମଣିଷ ଯେମିତି ସହଜରେ ନିଶ୍ୱାସ ପ୍ରଶ୍ୱାସ ନିଏ, ସେହିପରି କଥା ବି କହେ । ଭାଷା ବ୍ୟତିରେକେ ସାମାଜିକ ଜୀବନ ସମ୍ଭବ ନୁହେ । ଗ୍ରୀକ୍‌ମାନଙ୍କର ନାଟକ, ରୋମାନମାନଙ୍କର ଆଇନକାନୁନ, ଫରାସୀ ବିପ୍ଳବର ରାଜନୈତିକ ଭାଷଣ

ପ୍ରଭୃତି ଏହି ସଭ୍ୟତାର ସମସ୍ତ ଦାନ ମନୁଷ୍ୟ ଭାଷା ସାହାଯ୍ୟରେ ପ୍ରକାଶ କରିପାରିଛି । ଭାଷା ବ୍ୟତିରେକେ ମନୁଷ୍ୟର ଏହି ଅପରିମିତ ଜ୍ଞାନଭଣ୍ଡାର ଅସମ୍ଭବ ହୋଇପଡ଼ନ୍ତା । ମନୁଷ୍ୟ ନିତି ଭାଷା ବ୍ୟବହାର କରେ ଏବଂ ଯୁଗ ଯୁଗ ଧରି ବୋଧହୁଏ ବ୍ୟବହାର କରିବ; ମାତ୍ର ଏହି ଆଶ୍ଚର୍ଯ୍ୟଜନକ ଅସ୍ତ୍ର କିଏ କେବେ ସୃଷ୍ଟି କରି ମଣିଷ ହାତରେ ଧରାଇଦେଲା, ସେ ବିଷୟରେ ସଠିକ ତଥ୍ୟ କେହି ଜାଣେ ନାହିଁ । ବିଜ୍ଞାନ ଯୁଗର କୌତୂହଳୀ ମନ ଭାଷାର ଜନ୍ମ ବିଷୟରେ ବହୁ ଅନୁସନ୍ଧାନ କରି ଏପରି ହତୋତ୍ସାହ ହୋଇପଡ଼ିଛି ଯେ, ଭାଷାର ଜନ୍ମ ସମ୍ପର୍କରେ ଆଉ କେହି ବିଚାର କରିବାକୁ ରାଜି ନୁହନ୍ତି । ତଥାପି ଏପର୍ଯ୍ୟନ୍ତ ଯେଉଁସବୁ ତଥ୍ୟ ଆବିଷ୍କୃତ ହୋଇଛି, ତାର ଏକ ସଂକ୍ଷିପ୍ତ ବିବରଣୀ ଦେଲେ ଅବାନ୍ତର ହେବ ନାହିଁ ।

ଅନେକଙ୍କର ଧାରଣା, ପଶୁ ପକ୍ଷୀଙ୍କ ଧ୍ୱନିରୂପ ଶବ୍ଦରୁ ଭାଷାର ବୋଧହୁଏ ଜନ୍ମ । କାଉର କା କା, କୁକୁରର ଭୋ ଭୋ, ବିରାଡ଼ିର ମ୍ୟାଉଁ ମ୍ୟାଉଁ ପ୍ରଭୃତି ଶବ୍ଦରୁ ଭାଷାର ଉତ୍ପତ୍ତି ହୋଇଥିବା ସମ୍ଭବ; ମାତ୍ର ଏହି ତଥ୍ୟ ଅତି ପୁରାତନ ଏବଂ ଅନେକ ଦିନୁ ବୈଜ୍ଞାନିକମାନେ ଏହା ପରିତ୍ୟାଗ କଲେଣି । କାରଣ ମଣିଷ ଭାଷାରେ ଯେତେ ଶବ୍ଦ ବ୍ୟବହାର କରେ, ତା ତୁଳନାରେ ଏହି ଧ୍ୱନ୍ୟାତ୍ମକ ଶବ୍ଦ ଖୁବ୍ କମ । ତା ଛଡ଼ା ମନୁଷ୍ୟର ଉଚ୍ଚ ଚିନ୍ତା ଅର୍ଥାତ୍ ଉଚ୍ଚ ଦର୍ଶନ, ଉଚ୍ଚ ଗଣିତ, ପଦାର୍ଥ ବିଜ୍ଞାନ ପ୍ରଭୃତି ପ୍ରକାଶ କରିବା ପାଇଁ ମନୁଷ୍ୟର ଦୈନନ୍ଦିନ, ଏପରି କି ସାହିତ୍ୟିକ ଭାଷା ମଧ୍ୟ ଯଥେଷ୍ଟ ନୁହେ ବୋଲି ଗଣିତ ପାଇଁ ସ୍ୱତନ୍ତ୍ର ସାଙ୍କେତିକ ଭାଷା ସୃଷ୍ଟି । ଏପରି ସ୍ଥଳେ ପଶୁ ପକ୍ଷୀ କିମ୍ବା ମନୁଷ୍ୟକୃତ ଧ୍ୱନ୍ୟାତ୍ମକ ଶବ୍ଦଦ୍ୱାରା ମନୁଷ୍ୟର ଉଚ୍ଚ ଚିନ୍ତା ପ୍ରକାଶ କରିବା ଏକାନ୍ତ ଅସମ୍ଭବ ।

ପୁଣି କେତେକଙ୍କ ମତ ଯେ, ଆଦିମ ଜାତିମାନଙ୍କର ଭାଷାରେ ମନୁଷ୍ୟ ଭାଷାର ଜନ୍ମ ଅନୁସନ୍ଧାନ କରାଯାଇପାରେ; ମାତ୍ର ଏପରି ଧାରଣା ମଧ୍ୟ ଭ୍ରାନ୍ତିମୂଳକ । କାରଣ ଆଦିମ ଭାଷାମାନଙ୍କ ମଧ୍ୟରେ ଏପରି

ଅନେକ ଭାଷା ଅଛି, ଯାହା ଆଧୁନିକ ଜଟିଳ ଭାଷାଠାରୁ ଜଟିଳତର, ଅଥଚ ଆଉ କେତେକ ଅଛି ଯାହା ସରଳ ଭାଷାଠାରୁ ସରଳତର । ତେଣୁ ଯଦି ଅସଭ୍ୟ ସଭ୍ୟ ଭାଷାମାନଙ୍କ ତୁଳନାଦ୍ୱାରା ଭାଷାର ଆଦି ନିର୍ଦ୍ଧାରଣ କରାଯାଇ ନ ପାରେ, ତେବେ ଆଦିମ ଭାଷା ତୁଳନାଦ୍ୱାରା ତାହା ହେବାର ସମ୍ଭାବନା ବହୁତ କମ ।

ଆହୁରି ଅନେକେ କହନ୍ତି, ଶିଶୁମାନଙ୍କ ଭାଷାରୁ ଭାଷାର ଜନ୍ମ ଅନୁସନ୍ଧାନ କରାଯାଇପାରେ; ମାତ୍ର ଶିଶୁର ଅବସ୍ଥା ଏବଂ ପ୍ରଥମ ମନୁଷ୍ୟର ଅବସ୍ଥା ଏକା ନୁହେ । ଶିଶୁ ଗୋଟିଏ ସମାଜରେ ଜନ୍ମ ହୁଏ, ଯେଉଁଠି ସମସ୍ତେ ଭାଷାଦ୍ୱାରା ପରସ୍ପର ସହିତ ଭାବ ବିନିମୟ କରୁଥାନ୍ତି । ନିଜ ଚେଷ୍ଟା ଓ ଗୁରୁଜନଙ୍କ ଚେଷ୍ଟାରେ ସେ କେବଳ ସମାଜପ୍ରଚଳିତ ଭାଷାକୁ ଅନୁକରଣ କରିବାକୁ ଚେଷ୍ଟା କରେ । ମାତ୍ର ଯେଉଁ ମଣିଷ ପ୍ରଥମେ କଥା କହିଥିବେ, ତାଙ୍କ ପୂର୍ବରୁ କେଉଁଠି କେହି କଥା କହି ନ ଥିବେ । ଶବ୍ଦକୁ ଅନୁସରଣ କରି କାର୍ଯ୍ୟକାରୀ ହେବା ସେତେବେଳକୁ ମୋଟେ ଆରମ୍ଭ ହୋଇ ନ ଥିବ । ତେଣୁ ପ୍ରଥମ ମଣିଷ ଓ ଶିଶୁର ଅବସ୍ଥାରେ ବହୁ ତଫାତ ଥିବାରୁ ଶିଶୁର କଥାରୁ ଭାଷାର ଜନ୍ମ ବିଚାର କରିବା ଅସମ୍ଭବ ।

ବର୍ତ୍ତମାନ ଆମେରିକାରେ ହେଲେନ୍ କେଲର ନାମକ ଏକ ବିଶ୍ୱବିଖ୍ୟାତ ନାରୀ ଅଛନ୍ତି । ସେ କାଲୁଣୀ, ଅନ୍ଧୁଣୀ, କାଲ୍ଡ଼ୀ । ସେ ଉଚ୍ଚ ଶିକ୍ଷା ଲାଭକରି ଏବେ କେତେକ ପୁସ୍ତକ ପ୍ରଣୟନ କରିଛନ୍ତି । ସେହି ମହୀୟସୀ ନାରୀଙ୍କ ସହିତ ଭାବବିନିମୟ କରିବାର ସୁଯୋଗ ଲେଖକ ଆମେରିକାରେ ପାଇଥିଲା । ପୃଥିବୀର ବହୁ ଆଶ୍ଚର୍ଯ୍ୟମାନଙ୍କ ମଧ୍ୟରେ ସେ ଅନ୍ୟତମ । ତାଙ୍କର ଆଖି ନାହିଁ, କାନ ନାହିଁ, ଜିହ୍ୱା ନାହିଁ, ବାସ୍ତବରେ ଭାଷା ପ୍ରୟୋଗର କୌଣସି ଯନ୍ତ୍ର ନାହିଁ । ତଥାପି ସେ କପରି ଭାଷା ପ୍ରୟୋଗ କରୁଛନ୍ତି, ତା କଳ୍ପନା କରିବା କଠିନ । ଅନେକ ଭାଷାତତ୍ତ୍ୱବିତ୍ ଭାବନ୍ତି, ହେଲେନ୍ କେଲର ପ୍ରଥମେ କୌଣସି ଶବ୍ଦ ଶୁଣି ନ ଥିବେ, କୌଣସି ବସ୍ତୁ ଦେଖି ନ ଥିବେ ବା ଜିହ୍ୱା ବ୍ୟବହାର

କରି ଶିଖି ନ ଥିବେ; ତେଣୁ ଭାଷା ଶିକ୍ଷା ପାଇଁ ସେ ଯେପରି ପରିସ୍ଥିତିର ସମ୍ମୁଖୀନ ହୋଇଥିବେ, ବୋଧହୁଏ ପ୍ରଥମ ମାନବ ସେହି ଅବସ୍ଥାର ସମ୍ମୁଖୀନ ହୋଇଥିବ; ମାତ୍ର ଏ ପ୍ରକାର ଯୁକ୍ତି ସର୍ବଦା ପ୍ରମାଦପୂର୍ଣ୍ଣ । କାରଣ ସାମାଜିକ ମନୁଷ୍ୟ ଏକ ସ୍ୱାଭାବିକ ଜୀବ । ସେ ଇନ୍ଦ୍ରିୟମାନଙ୍କ ଦ୍ୱାରା ଦୁନିଆର ସମସ୍ତ ଜିନିଷ ଦେଖିଥିବ ଓ ପ୍ରକୃତିରୁ ଅନେକ ଶବ୍ଦ ଶୁଣିବାକୁ ପାଇଥିବ । ହୁଏତ ଅନ୍ୟାନ୍ୟ ଜୀବମାନେ ଭାବ ପ୍ରକାଶ କରିବା ପାଇଁ ଯେପରି ଶାରୀରିକ ଚେଷ୍ଟା କରିଥିବେ, ମନୁଷ୍ୟ ସେହିପରି ଚେଷ୍ଟା କରିଥିବ; ମାତ୍ର ହେଲେନ୍ କେଲରଙ୍କ ଅବସ୍ଥା ବଡ଼ ଅପ୍ରାକୃତିକ । ଯେ କୌଣସି ମନୁଷ୍ୟର ପ୍ରାକୃତିକ ଅବସ୍ଥାଠାରୁ ତାଙ୍କ ଅବସ୍ଥା ଭିନ୍ନ, କାରଣ ସେ ଦେଖିପାରନ୍ତି ନାହିଁ ବା ଶୁଣିପାରନ୍ତି ନାହିଁ । ତେଣୁ ଗୋଟାଏ ଅପ୍ରାକୃତିକ ଅବସ୍ଥାରୁ ପ୍ରାକୃତିକ ଅବସ୍ଥାର ଘଟଣା ସ୍ଥିର କରିବା ଯୁକ୍ତିଯୁକ୍ତ ନୁହେଁ ବୋଲି କହିଲେ ଅସମୀଚୀନ ହେବ ନାହିଁ ।

ଇଜିପ୍ଟ ରାଜା ସେମାଟିକସ୍ ଭାଷାର ଜନ୍ମ ସମ୍ପର୍କରେ ଏକ ଅଭିନବ ଅନୁସନ୍ଧାନ ଚଳାଇଥିଲେ । ସେ ଭାବିଲେ ଯେ ପ୍ରଥମ କରି କଥା କହିବା ପୂର୍ବରୁ ମଣିଷ କେବେ ମନୁଷ୍ୟ କଣ୍ଠସ୍ୱର ଶୁଣି ନ ଥିବ । ହୁଏତ ହଠାତ୍ ଦିନେ ସେ କଥା କହିବା ପାଇଁ ଚେଷ୍ଟା କରିଥିବ । ତେଣୁ ଗୋଟିଏ ମଣିଷପିଲାକୁ କାହାର କଥା ଶୁଣିବାକୁ ନ ଦେଇ ଦେଖିବାକୁ ହେବ, ପ୍ରଥମେ ସେ କେଉଁ ଭାଷା କହୁଛି । ସେ ଯେଉଁ ଭାଷା କହିବ, ତାକୁ ପ୍ରଥମ ଭାଷା ବୋଲି ସ୍ୱୀକାର କରିବାକୁ ହେବ । ଏହିପରି ଗୋଟିଏ ଶିଶୁକୁ ଅନେକ ଦିନ ପର୍ଯ୍ୟନ୍ତ ମନୁଷ୍ୟ ଭାଷା ଶୁଣିବାକୁ ଦିଆଗଲା ନାହିଁ । ହଠାତ୍ ଦିନେ ଶିଶୁଟି ଗୋଟିଏ ଶବ୍ଦ ଉଚ୍ଚାରଣ କଲା 'ବେକସ୍'। ବେକସ୍ ଶବ୍ଦର ଅର୍ଥ ଫିଜିୟାନ୍ ଭାଷାରେ 'ରୁଟି' । ତେଣୁ ରାଜା ସେମାଟିକସ୍ ସ୍ଥିର କଲେ ଯେ ତାଙ୍କ ଇଜିପ୍ଟ ଭାଷା ଅପେକ୍ଷା ଫିଜିୟାନ୍ ଭାଷା ଆଦିମତର; ଯେହେତୁ ମଣିଷଶିଶୁ ବିନା ଶିକ୍ଷାରେ ଫିଜିୟାନ୍ ଭାଷାର ଏକ ଶବ୍ଦ ଉଚ୍ଚାରଣ କଲା । ଏହି କୌତୂହଳପୂର୍ଣ୍ଣ ଘଟଣାକୁ ଭାଷାତତ୍ତ୍ୱବିତ୍‌ମାନେ କେତେକାଂଶରେ ବିଶ୍ୱାସ କରନ୍ତି । ଭାଷା ଏକ

ସାମାଜିକ ବସ୍ତୁ । ଭାଷାର ଜନ୍ମ ସମାଜରୁ ଓ ମନୁଷ୍ୟର ସାମାଜିକ ଆଚରଣରୁ । ମନୁଷ୍ୟ ଜୀବନଧାରଣ ପାଇଁ ଏକତ୍ର କାମ କଲାବେଳେ ସମସ୍ତ କଷ୍ଟ ଲାଘବ କରିବା ଲାଗି ହୁଏତ ଅବୋଧ୍ୟ ସଙ୍ଗୀତ ଗାନ କରିଥିବ ; ମାତ୍ର ଏହି ଅବୋଧ ସଙ୍ଗୀତଧାରା କେବେ ଓ କିପରି ଭାବବ୍ୟଞ୍ଜକ ଶବ୍ଦ ଓ ବାକ୍ୟରେ ପରିଣତ ହେଲା, ତାର ସଠିକ ସମ୍ବାଦ କେହି ପାଇ ନାହାନ୍ତି ।

ନୃତତ୍ତ୍ୱବିତ୍‌ମାନଙ୍କର ଧାରଣା, ମନୁଷ୍ୟର ମସ୍ତିଷ୍କବିକାଶ ଧ୍ୱନୁ ଭାଷାର ଜନ୍ମ । କାରଣ ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି, ଭାଷାବିକାଶ ପାଇଁ ମନୁଷ୍ୟର ମସ୍ତିଷ୍କରେ ଗୋଟିଏ ସ୍ୱତନ୍ତ୍ର ବିଭାଗ ଅଛି । ଭାଷାର ଅଭିବୃଦ୍ଧି ସମ୍ପର୍କରେ ଅନେକଙ୍କର ଧାରଣା ଯେ, ମନୁଷ୍ୟର କାର୍ଯ୍ୟର ପରିସର ଯେତିକି ବଢ଼ିଥିବ, ତାହା ଅନ୍ୟ ନିକଟରେ ପ୍ରକାଶ କରିବା ପାଇଁ ସେତିକି ଭାଷା ଆବଶ୍ୟକ ହୋଇଥିବ । ସେଥିପାଇଁ ଭାଷାତତ୍ତ୍ୱବିତ୍‌ମାନେ କହନ୍ତି ଯେ କଥା ଓ କାମ ମିଶି ଏହି ମଣିଷ ମଣିଷ ହୋଇପାରିଛି । (Speech and work together have made us men.)

ବୈଜ୍ଞାନିକମାନଙ୍କ ଅନୁସନ୍ଧାନ ବାହାରେ ପୁରାଣାଦିରେ ଭାଷାର ଜନ୍ମ ସମ୍ପର୍କରେ ବହୁ କୌତୂହଳପୂର୍ଣ୍ଣ ତଥ୍ୟ ଅଛି; ମାତ୍ର ସେମାନଙ୍କ ମଧ୍ୟରୁ କେହି ବିଜ୍ଞାନସମ୍ମତ ନୁହନ୍ତି । ଏପର୍ଯ୍ୟନ୍ତ ଭାଷାତତ୍ତ୍ୱବିତ୍‌ମାନେ ଯାହା ସ୍ଥିର କରିଛନ୍ତି, ତା କେବଳ ଅନ୍ଧାରରେ ବାଡ଼ି ବୁଲାଇବା କଥା । ତେଣୁ ଭାଷାର ଜନ୍ମ ବିଷୟରେ ବର୍ତ୍ତମାନ କେହି ବିଗୃହ କରୁ-ନାହାନ୍ତି ।

ଭାଷା ଏକ ବିଚିତ୍ର ବସ୍ତୁ । ତହିଁରେ ସାମ୍ୟ ଓ ବୈଷମ୍ୟ ଭରି-ରହିଛି । ମନ୍ତ୍ରୀ ଓ ଏମ, ଏଲ, ଏ, ଭାବ ପ୍ରକାଶ କରିବା ପାଇଁ ଯେଉଁ ଧ୍ୱନି (sound) ଓ ଯେଉଁ ବାଗ୍-ଯନ୍ତ୍ର ବ୍ୟବହାର କରନ୍ତି, ମୂଲିଆ ମଜଦୁର ମଧ୍ୟ ଠିକ ସେହି ଧ୍ୱନି, ସେହି ବାକ୍-ଯନ୍ତ୍ର ବ୍ୟବହାର କରନ୍ତି । ଅଥଚ ଭାଷା ଏତେ ଭାବରେ ବିଭକ୍ତ ଯେ, ଲୋକେ ପ୍ରିନା କହନ୍ତି— ଦେଶକେ ବାଙ୍କ, ଭାଷା ପ୍ରକୃତରେ ଜଣ ଜଣକେ ଫାଙ୍କ । ଏକା ଘରକେ

ସ୍ତ୍ରୀ ପୁରୁଷ ବିଭିନ୍ନ ସ୍ଥାନରୁ ଆସିଥିବାରୁ ଗୋଟିଏ କଥାକୁ ଦୁଇ ଭାବରେ ପ୍ରକାଶ କରନ୍ତି । ଜଣେ ଯାହାକୁ 'ପୋଷ୍ଟ' କହନ୍ତି, ଆଉ ଜଣେ ତାକୁ 'ଗାମୁଛା' କହନ୍ତି । ଜଣେ ଧୂଆଇବା, କଟାଇବା, ବଟାଇବା କହିଲେ ଆଉ ଜଣେ ଧୂଆ କରାଇବା, ବଟା କରାଇବା, କଟା କରାଇବା ପ୍ରଭୃତି କହନ୍ତି । ଜଣେ କଥା କହିଲେ ଆଉ ଜଣେ ଆଶ୍ଚର୍ଯ୍ୟ ହୋଇ ହସନ୍ତି । ଅନେକ ସମୟରେ ଏହି ଭାଷା ନେଇ ଘର ଭିତରେ ଯେଉଁ ବ୍ୟଙ୍ଗ ବିଦ୍ରୂପ ହୁଏ, ଜାତି ଜାତି ମଧ୍ୟରେ, ରାଜ୍ୟ ରାଜ୍ୟ ମଧ୍ୟରେ ମଧ୍ୟ ସେହି ବିଦ୍ରୂପ ହୁଏ । ଲଣ୍ଡନର ରେଡ଼ିଓ ଶୁଣି ସ୍କଟଲଣ୍ଡର ଲୋକେ ଯେପରି ନାକ ଟେକନ୍ତି, ବାଲେଶ୍ୱରର ଖାଇଚି, ଯାଇଚି ଓ ସମ୍ବଲପୁରର ଯିମି, ଖାଇମି ଏସବୁ ଶୁଣି କଟକ ଲୋକେ ସେପରି ଅସ୍ୱସ୍ତିବୋଧ କରନ୍ତି । ଗୋଟିଏ ଭାଷା କହୁଥିବା ଲୋକେ ପରସ୍ପରଠାରୁ ବହୁ ଦୂରରେ ରହିଲେ କାଳକ୍ରମେ ସେମାନଙ୍କ ଭାଷାରେ ବହୁ ତଫାତ୍ ଦେଖାପଡ଼େ । ଯେଉଁ ଭାଷାରେ ତଫାତ୍ ବେଶୀ ବଢ଼ିଯାଏ, ସେହି ଭାଷାକୁ ପ୍ରଧାନ ଭାଷାର ଉପଭାଷା ବା dialect ବୋଲି କହନ୍ତି । ଆମେ ଯେଉଁ ଢେଙ୍କାନାଳିଆ, ପୁରୀଆ, ବାଲେଶ୍ୱରୀ, ସମ୍ବଲପୁରୀ ଭାଷା ବୋଲି କହୁ, ଏ ପ୍ରତ୍ୟେକକୁ ଓଡ଼ିଆ ଭାଷାର ଉପଭାଷା କୁହାଯାଇପାରେ ।

ଉପଭାଷା ସୃଷ୍ଟି ପାଇଁ ସର୍ବଦା ଦୂରତାର ଆବଶ୍ୟକତା ନାହିଁ, ଏପରିକି ଗୋଟିଏ ବଡ଼ ନଦୀ କିମ୍ବା ବଡ଼ ପର୍ବତ ସେପାରିର ଲୋକେ ଯଦି ରାସ୍ତାଘାଟ ଅଭାବରୁ ଏପାରିର ଲୋକଙ୍କ ସଙ୍ଗେ ନ ମିଶନ୍ତି, ତେବେ ବି କାଳକ୍ରମେ ସେମାନଙ୍କ ମଧ୍ୟରେ ଉପଭାଷା ସୃଷ୍ଟି ହୋଇପାରେ । ମାତ୍ର ପୁରାତନ ଶତାବ୍ଦୀମାନଙ୍କରେ ଉପଭାଷା ସୃଷ୍ଟି ପାଇଁ ଯେଉଁ ଅନୁକୂଳ ଅବସ୍ଥା ଥିଲା, ରେଡ଼ିଓ, ଟେଲିଭିଜନ୍ ଯୁଗରେ ସେ ଅବସ୍ଥା ନାହିଁ । ଦେଶ ଦେଶ ମଧ୍ୟରେ ବର୍ତ୍ତମାନ ପ୍ରାଚୀର ଭାଙ୍ଗିପଡ଼ୁଛି । ନ୍ୟୁୟର୍କର ଭାଷଣ ନୂଆଦିଲ୍ଲୀ ଓ ନିଉଜିଲଣ୍ଡରେ ଏକା ମୁହୂର୍ତ୍ତରେ ବାଜି ଉଠୁଛି । ଉପଭାଷାର ଦିନ ଯାଉଛି ଓ ସାରା ବିଶ୍ୱ ପାଇଁ ଏକ ରାଷ୍ଟ୍ରଭାଷାର ଶୁଭଦିନ ଆସୁଛି ବୋଲି ଅନେକେ ଆଶା କରୁଛନ୍ତି; କିନ୍ତୁ ଏହା ସଙ୍ଗେ ସଙ୍ଗେ ଆଉ ଗୋଟିଏ କଥା ବିଚାର କରିବାର ଅଛି । ଗଣତନ୍ତ୍ରପ୍ରତିଷ୍ଠା ସଙ୍ଗେ ସଙ୍ଗେ ନୂତନ

ଜାତୀୟ ଚେତନା ଉତ୍କଟ ହୋଇଉଠୁଛି । ତେଣୁ ଉପଭାଷାଭାଷୀ ଏକ ଅଞ୍ଚଳର ଲୋକେ ସ୍ୱାଧୀନତା ନାମରେ ନିଜର ଉପଭାଷାକୁ ବଜାୟ ରଖିବାକୁ ଚେଷ୍ଟାକରି ଭାଷାସୂତ୍ରରେ ଗୋଟିଏ ଷ୍ଟେଟ୍‌କୁ ଖଣ୍ଡ ଖଣ୍ଡ କରିବା ଅସମ୍ଭବ ନୁହେ । ଇଂଲଣ୍ଡ ଭଳି ଗ୍ରେଟ ଦେଶଟିକୁ ସ୍କଟଲଣ୍ଡ ଓ ୱେଲସ୍ ଲୋକେ ଖଣ୍ଡ ଖଣ୍ଡ କରି ସ୍ୱତନ୍ତ୍ର ରାଜ୍ୟ ଗଢ଼ିବାକୁ ଚାହାନ୍ତି । ଭାଷା-ସୂତ୍ରରେ ଝାଡ଼ଖଣ୍ଡ ସୃଷ୍ଟିର କଳ୍ପନା ଅସମ୍ଭବ ନୁହେ । ଦେଶର ସଂସ୍କୃତି ସମାଲୋଚନା ପାଇଁ ଏହି ଉପଭାଷାଗୁଡ଼ିକ ଭାରି ଉପାଦେୟ । ଗୋଟିଏ ଶବ୍ଦ, ଗୋଟିଏ ଢଗ, ପଦେ ଗୀତରେ ସଂସ୍କୃତିର ବହୁ ଇତିହାସ ଲୁଚିକରି ଅଛି । ଆଧୁନିକ ସଭ୍ୟତା ଆଲୋକରେ ଏହି ପୁରାତନ ସଂସ୍କୃତି-ସୂଚକ ଭାଷା ମିଳାଇଯିବା ପୂର୍ବରୁ ତାହା ଲିପିବଦ୍ଧ ହେବା ଉଚିତ । ଆମେରିକାରେ ବର୍ତ୍ତମାନ ଭାଷାତତ୍ତ୍ୱବିତ୍‌ମାନେ ବିଶେଷ ଭାବରେ ଏହି କାର୍ଯ୍ୟରେ ଲାଗିଛନ୍ତି; ଆମର ଆରମ୍ଭ ଏପର୍ଯ୍ୟନ୍ତ ହୋଇ ନାହିଁ । ଆମେରିକାର ରକ୍‌ଫେଲର ଅନୁଷ୍ଠାନ ଭାରତୀୟ ଉପଭାଷାର ଗବେଷଣା ପାଇଁ ବିଚାର କରୁଛନ୍ତି । ଗାଁଗହଳରେ ଆମେରିକାନ୍ ଫ୍ରେଣ୍ଡସ୍ ପୋଷାଇଛି ଗ୍ରାମ୍ୟ ସଭ୍ୟତାକୁ ଉନ୍ନତ କରିବା ପୂର୍ବରୁ ଉପଭାଷାମାନଙ୍କର ସଠିକ ବିବରଣୀ ଭାଷାବିତ୍‌ମାନଙ୍କ ହାତରେ ରହିବା ଉଚିତ । ନଚେତ୍ ପୁରାତନ ସଂସ୍କୃତିର ଅନେକ ମୂଲ୍ୟବାନ ବସ୍ତୁ କାଳଗର୍ଭରେ ଲୁଚିଯିବ ।

ଆଦିମ ସମାଜମାନଙ୍କରେ ସ୍ତ୍ରୀ ପୁରୁଷ ଭାଷା ଭିତରେ ବହୁ ତଫାତ୍ ଦେଖାଯାଏ । ଆଜି ମଧ୍ୟ ଆମ ଦେଶରେ ଏହି ସ୍ତ୍ରୀ ପୁରୁଷଭାଷାର ତଫାତ୍ ସମ୍ପୂର୍ଣ୍ଣ ଲୋପ ପାଇ ନାହିଁ । ଜଣେ ଉଚ୍ଚ ଶିକ୍ଷିତ ନୟାଗଡ଼ ବନ୍ଧୁଙ୍କଠାରୁ ଶୁଣାଯାଏ ଯେ ସେମାନଙ୍କ ପରିବାରରେ ନୂଆବୋହୂମାନେ ଏକ ସମ୍ପୂର୍ଣ୍ଣ ଭିନ୍ନ ସାଙ୍କେତିକ ଭାଷା ବ୍ୟବହାର କରନ୍ତି । ଶାଶୁ ଶଶୁରଙ୍କ ଆଗେ ନୂଆବୋହୂ କଥା କହିବା କୁଳାଚାରବିରୁଦ୍ଧ । ତେଣୁ ପ୍ରଥମ ସନ୍ତାନ ଜନ୍ମ ପର୍ଯ୍ୟନ୍ତ ନୂଆବୋହୂ ସଙ୍କେତ ବ୍ୟବହାର କରିବେ । ଧାନ କୁଟିବାକୁ କହିଲେ ଗୋଡ଼କୁ କୁଟିଲାପରି ଦେଖାଇବେ ଓ ଚାଉଳ ପାଛୋଡ଼ିବାକୁ ହେଲେ କୁଲା ଦେଖାଇବେ । ସବୁ ପ୍ରକାର କାମ କରିବା ପାଇଁ ଏହି ସାଙ୍କେତିକ ଭାଷାକୁ କେମିତି ବ୍ୟବହାର କରାଯାଏ, ତାହାର

ଗବେଷଣା ହେବା ବ୍ୟବସ୍ଥା କରାଯାଇ ପାରିଲେ ମନୁଷ୍ୟମାନେ ଭାଷା ପୂର୍ବ ଅବସ୍ଥାରେ କେମିତ ଚଳୁଥିଲେ, ତାର ଏକ ଧାରଣା ସ୍ପଷ୍ଟ ହୁଅନ୍ତା । ଏହା ଛଡ଼ା ଯେଉଁ ଅଞ୍ଚଳରେ ସାଙ୍କେତକ ଭାଷା ବ୍ୟବହାର କରା ନ ଯାଏ, ସେଠି ସ୍ତ୍ରୀମାନେ ଅନେକ ନୂତନ ଶବ୍ଦ ସୃଷ୍ଟି କରନ୍ତି । କାରଣ ସେମାନେ ଗୁରୁଜନମାନଙ୍କର ନାମ ଉଚ୍ଚାରଣ କରନ୍ତି ନାହିଁ; ଏପରି କି ଜଣଙ୍କର ନାମର ଗୋଟିଏ ଅକ୍ଷର ପର୍ଯ୍ୟନ୍ତ ଅନ୍ୟ ଯେଉଁ ଶବ୍ଦରେ ଥିବ, ତାହା ଉଚ୍ଚାରଣ କରିବା ଗର୍ହିତ । ଉଦାହରଣ ସ୍ୱରୂପ ମାନ୍ୟବ୍ୟକ୍ତିଙ୍କ ନାମ ଯଦି ଚକ୍ରଧର ହୋଇଥାଏ, ତେବେ ଚକଲେଟ କହିବା ଅନୁଚିତ; ଗୋଲୋକ ହୋଇଥିଲେ ଗୋଲ କହିବା ଅନୁଚିତ । ଏହି ଦୃଷ୍ଟିରୁ ବିଗ୍ର କଲେ ଆମ ଦେଶରେ ଶିକ୍ଷିତା ସ୍ତ୍ରୀ ପୁରୁଷର ନାମ ଉଚ୍ଚାରଣ-କଲେ ଗାଁଗହଳରେ ସମାଲୋଚନା ପାଇଁ ବହୁ ଖାଦ୍ୟ ମିଳିଥାଏ ।

ଚୋର, ଡକାୟତ, ବ୍ୟବସାୟୀ, ଗୁଣ୍ଡ, ଶିକ୍ଷକ ଓ ଜୀବନର ଅନ୍ୟାନ୍ୟ ବିଭାଗରେ ବହୁ ବିଭିନ୍ନ ପ୍ରକାର ଅବୋଧ ଭାଷା ପ୍ରଚଳିତ ହୋଇଥାଏ । ଢେଙ୍କାନାଳରେ ତନ୍ତୀ ବ୍ୟବସାୟୀମାନେ କେତେକ ଠାର ଭାଷା ବ୍ୟବହାର କରନ୍ତି । ଲୁଗାପଟା କିଣାବିକାବେଳେ ସେମାନେ ଯେଉଁ ଭାଷା ବ୍ୟବହାର କରନ୍ତି, ତହିଁରୁ ମାତ୍ର କେତୋଟି ଉଦାହରଣ ଦିଆଗଲା । ଯଥା—

| ଶବ୍ଦ | ଅର୍ଥ |
| --- | --- |
| ରାମଚକ୍ର | ଦୁଇ ଟଙ୍କା |
| ପିସେରାମପାହି | ଦଶ ଅଣା ଦୁଇ ପଇସା |
| ପୋଛପଣ | ଛଅ ଅଣା |
| ନେଜପଣ | ତିନି ଅଣା |

କଟକର ବହୁ ପ୍ରଚଳିତ 'ବାବାରେ ଆଲୁଅ' ଏକ ବିଦ୍ରୂପାତ୍ମକ ଠାରରେ ବର୍ତ୍ତମାନ ପରିଣତ ହୋଇଛି । ସ୍କୁଲମାନଙ୍କରେ ପିଲମାନେ ଶଶିଠାର, ମଲ୍ଲିଠାର ପ୍ରଭୃତି ବହୁ ଅବୋଧ ଭାଷା ବ୍ୟବହାର କରିଥାନ୍ତି ।

ମନୁଷ୍ୟ ଜାତି ଏକ; ମାତ୍ର ସେମାନଙ୍କର ଭାଷା ଅନେକ । ମାଳୟରୁ ମେକ୍‌ସିକୋ ପର୍ଯ୍ୟନ୍ତ—ପ୍ରତି ରାଜ୍ୟର ଏକ ଭାଷା—ଉନ୍ନତ ଇଂରେଜୀଠାରୁ ଆଦିମ ଆଲୋଙ୍ଗୋଙ୍କିନ୍ ଓ ଚନୁକ ପର୍ଯ୍ୟନ୍ତ ହଜାର ହଜାର ଭାଷା ମନୁଷ୍ୟ ବ୍ୟବହାର କରେ । ଭାଷାତତ୍ତ୍ୱବିତ୍‌ମାନେ ଜୀବଜନ୍ତୁମାନଙ୍କ ପରି ଭାଷାମାନଙ୍କର ଜାତି, ବଂଶ ଓ ଜନ୍ମ, ମୃତ୍ୟୁ ପ୍ରଭୃତି ବିଚାର କରିଥାନ୍ତି । ଗୋଟିଏ ଗୋଟିଏ ଭାଷା ମଧ୍ୟରେ ଶତାଧିକ ବିଭାଗ ଯଥା—ଭୁଲ ଭାଷା, ଠିକ ଭାଷା, ବ୍ୟାକରଣ ଭାଷା, ଅବ୍ୟାକରଣ ଭାଷା, ବଡ଼ଲୋକଙ୍କ ଭାଷା, ଶ୍ରେଷ୍ଠଲୋକଙ୍କ ଭାଷା, ଦୈନନ୍ଦିନ ଭାଷା, ସାହିତ୍ୟିକ ଭାଷା ପ୍ରଭୃତି ରହିଛି । ତେଣୁ ଯେ କୌଣସି ଭାଷାର ପୂର୍ଣ୍ଣାଙ୍ଗ ବିଚାର ବିଶେଷ ସାଧନାସାପେକ୍ଷ । ମାତ୍ର ଭାଷାବିତ୍‌ମାନଙ୍କର ଗୋଟିଏ ସୁବିଧା ହେଉଛି ଯେ, ସେମାନଙ୍କର ଗବେଷଣାଗାର କୌଣସି ସ୍କୁଲ, କଲେଜ ବା ଅନୁଷ୍ଠାନ ଭିତରେ ଆବଦ୍ଧ ନୁହେଁ । ଯେ କୌଣସି ମଣିଷ ଭାଷାତତ୍ତ୍ୱବିତ୍‌ଙ୍କର ଗବେଷଣାଗାର । ଲୋକ ପାଟି ଫିଟାଇଲାମାତ୍ରେ ଗବେଷଣା ଆରମ୍ଭ ହୁଏ । ତେଣୁ ଭାଷାତତ୍ତ୍ୱବିତ୍‌ମାନେ ଲୋକଙ୍କୁ କହନ୍ତି, "ତମେ ପାଟି ଫିଟା, ଆମେ କହିଦେବୁ ତମେ କିଏ ।" ଅନେକାଂଶରେ ସେମାନଙ୍କ କଥା ସତ ।

# ଓଡ଼ିଆ ଭାଷାରେ ଇଂରାଜୀ ପ୍ରଭାବ

ଓଡ଼ିଶା ଆଇସ୍ ଫାକ୍ଟରୀ

ଉତ୍କଳ ପ୍ରସପେକ୍ଟିଭ୍ ଇଣ୍ଡଷ୍ଟ୍ରି
କଟକ ଟ୍ରେଡ଼ିଂ କମ୍ପାନୀ

ଇଷ୍ଟର୍ଣ୍ଣ ରେଡ଼ିଓ ହାଉସ୍
ଟେଲରିଂ ଓ୍ୱାର୍କସପ୍
କଟକ ନର୍ସରୀ
ଡାଇମଣ୍ଡ ହୋଟେଲ

କଟକର ଲିଲିଧିଳି ଯେତେ ଚଞ୍ଚଳ ଆଖିରେ ନ ଲାଗେ, ତା'ଠୁ ଅଧିକ ଚଞ୍ଚଳ ଆଖିରେ ପଡ଼େ ଏହି ପ୍ରଚ୍ଛିରପଟଗୁଡ଼ିକ । ଓଡ଼ିଆ ଇଂରେଜୀ ମିଶାମିଶି, ପ୍ରାଚ୍ୟ ପାଶ୍ଚାତ୍ୟ ଧରାଧରି । ସବୁଠାରୁ ମଜା ଏହି ରେଖାଙ୍କିତ ଦୀର୍ଘ ଈକାର (ୀ)ଗୁଡ଼ିକ । ପ୍ରଥମତଃ ଓଡ଼ିଆରେ ଦୀର୍ଘସ୍ୱର ନାହିଁ, ଦ୍ୱିତୀୟରେ ଇଂରେଜୀ ଉଚ୍ଚାରଣରେ ଫାକ୍ଟରୀ ଟ୍ରେଡ଼ୀଂ କମ୍ପାନୀ, ନର୍ସରୀ ପ୍ରଭୃତି ଶବ୍ଦର ଶେଷ ସ୍ୱର ହ୍ରସ୍ୱ । ଏସବୁ ସତ୍ତ୍ୱେ କଟକ ସହରରେ ଦୀର୍ଘ ଈର ଏହି ଅଭିନବ ଅଭିଯାନ ବୁଝିହୁଏ ନା । ପରିହାସରେ ଅନେକେ କହନ୍ତି—କଟକରେ ବର୍ତ୍ତମାନ ଦୀର୍ଘ ଈକାରର ରାଜତ୍ୱ ମାତ୍ର ଭାଷାତତ୍ତ୍ୱବିତ୍ ପକ୍ଷରେ ଏହା ଏକ କୌତୂହଳପୂର୍ଣ୍ଣ ସମସ୍ୟା ।

ଭାଷା ଏକ ଭ୍ରାମ୍ୟମାଣ ବସ୍ତୁ । ଏହା କୌଣସି ଜାତିବିଶେଷର ବା ବ୍ୟକ୍ତିବିଶେଷଙ୍କର ନୁହେଁ । ଏକ ଅର୍ଥରେ ଏହା ସମସ୍ତଙ୍କର—ଯେ କହି-ପାରିଲ ତାହାର । ହାଣ୍ଡିକଳା ନିଗ୍ରୋ ପିଲା ବିଲାତରେ ଜନ୍ମ ହେଲେ ସାହେବ ପିଲାଙ୍କ ପରି ଇଂରେଜୀ କହିବ । ଇଂରେଜୀ ପିଲା ଇଟାଲୀରେ

ଜନ୍ମ ହେଲେ ଇଟାଲିଆନ୍ କହିବ । ଏକ ରାଜ୍ୟ ସହିତ ଅନ୍ୟ ରାଜ୍ୟର ଦୀର୍ଘକାଳ ସମ୍ପର୍କ ସ୍ଥାପିତ ହେଲେ ପରସ୍ପର ପରସ୍ପରକୁ ପ୍ରଭାବିତ କରିବେ । ମାତ୍ର ବିଜେତାର ଭାଷା ବିଜିତର ଭାଷାକୁ ଯେତେ ପ୍ରଭାବିତ କରିବ, ବିଜିତର ଭାଷା ବିଜୟୀର ଭାଷାକୁ ସେତେ କରିପାରିବ ନାହିଁ । ଏହାର ପ୍ରକୃଷ୍ଟ ଉଦାହରଣ ଆମ ଦେଶରେ ଇଂରେଜୀ ଭାଷା । ଗ୍ରୀକ୍ ଓ ଲାଟିନ ଭାଷା ଇଂରେଜୀକୁ ପ୍ରଭାବିତ କରିଥିଲେ ମଧ୍ୟ ଫ୍ରେଞ୍ଚ ଭାଷା ସର୍ବାପେକ୍ଷା ଅଧିକ ପ୍ରଭାବିତ କରିଛି । ଭାଷାବିତ୍‌ଙ୍କ ହିସାବ ଅନୁସାରେ ଇଂରେଜୀ ଶବ୍ଦମାନଙ୍କରୁ ଶତକଡ଼ା ୫୩ ଭାଗ ଫ୍ରେଞ୍ଚ ଶବ୍ଦ । ଫ୍ରେଞ୍ଚ ନ ଜାଣିଥିବା ଲୋକ ଯେ କୌଣସି ଫ୍ରେଞ୍ଚ୍ ବହି ଖୋଲି ଦେଖିଲେ ଜାଣିପାରିବେ ଯେ ଅନେକ ଫ୍ରେଞ୍ଚ୍ ଶବ୍ଦ ଇଂରେଜୀ ଶବ୍ଦ ପରି ଦେଖାଯିବ ।

ଭାରତୀୟ ଭାଷାମାନଙ୍କର ଅବସ୍ଥା ଠିକ୍ ସେହିପରି । ମୁସଲମାନ, ମୋଗଲ, ଇଂରେଜ ଯଥାକ୍ରମେ ଏ ଦେଶରେ ଆଧିପତ୍ୟ ବିସ୍ତାର କରି ସେମାନଙ୍କ ଭାଷାର ପ୍ରଭାବ ପକାଇଛନ୍ତି । ଆଲାଉଦ୍ଦିନ, ଜଲାଲ ଉଦ୍ଦିନ, ବାବର, ଆକବର ଆଦି ଇତିହାସର କଥା; ମାତ୍ର ମାଉଣ୍ଟବାଟେନ, ମଣ୍ଟଗୋମାରୀ ଆଦିଙ୍କ କଥା ପ୍ରତ୍ୟକ୍ଷ ଘଟଣା । ସେମାନଙ୍କର ଶାସନ ଶୃଙ୍ଖଳା, ଆଇନକାନୁନ, ପ୍ୟାଣ୍ଟ, କୋଟ, ହାଟ୍, ଟି, କଫି, ଡିନର, ଲଞ୍ଚ ସବୁ ଆଜି ଭାରତୀୟ ଜୀବନକୁ ଭାରାକ୍ରାନ୍ତ କରିପକାଇଛି । ଗାଁଗହଳରେ ଅନନ୍ତା ମା ମୁଢ଼ି ଗୁଡ଼ ଲୋକେ ଅଣ୍ଟରସନ ଗୁ ଖାଉଛନ୍ତି । ଗଫୁର ମିଆଁ ଗୁଣ୍ଡି ଗୁଡ଼ କାପ୍‌ଷ୍ଟାନ (କାପ୍‌ଷ୍ଟାନ) କମ୍ପାନୀ ସିଗାରେଟ୍ ଖାଉଛନ୍ତି । ତେଣୁ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁ ଓ ଶାସନ ସଙ୍ଗେ ଇଂରେଜୀ ଭାଷା ଗାଁଗହଳରେ କହିବକହି ଭରିଯାଇଛି । ତା ଛଡ଼ା ସେଲି, ସେକ୍‌ସପିଅର, ନିଉଟନ, ଆଇନଷ୍ଟାଇନ ଆମ ଦେଶର ଉଚ୍ଚସ୍ତରର ଲୋକଙ୍କୁ ଏତେ ପ୍ରଭାବିତ କରୁଛନ୍ତି ଯେ, ସେମାନେ ନିଜ ଘର ଭିତରେ ବି ଅଧିକାଂଶ ଇଂରେଜୀ ଶବ୍ଦ ବ୍ୟବହାର କରନ୍ତି, ଏମିତି କି ଓଡ଼ିଆ ପିଲାଙ୍କୁ ବେବି, ଡଲି, ମାମି ବୋଲି ନା ଦେଇ ଡାକନ୍ତି । ସବୁଠୁ ମଜାକଥା, ବିଲାତ ଲୋକେ ବମ୍ବେ ବନ୍ଦର ଛାଡ଼ିଲା ପରେ ଭାରତରେ ବିଲାତି ପ୍ରଭାବ ବଢ଼ି ଚାଲିଛି ।

ସଭ୍ୟତାର ବହୁ ଦୂରରେ ଗଡ଼ଜାତର ବଣଜଙ୍ଗଲରେ ସାଧାରଣ ଅପାଠୁଆ ଲୋକେ ଯେଉଁ ଇଂରାଜୀ କହନ୍ତି, ତା'ର କେତୋଟି ମାତ୍ର ନମୂନା ଦିଆଗଲା । ତନ୍ମଧ୍ୟରୁ କେତେକ ସହଜବୋଧ, କେତେକ ବି ଅବୋଧ । ଭାରତର ସ୍ୱାଧୀନତାପ୍ରାପ୍ତି ବିଶେଷତଃ ଗଡ଼ଜାତ ମିଶ୍ରଣ ପରେ ଇଂରାଜୀ ପ୍ରଭାବ ବିଶେଷ ଦେଖାଦେଇଛି । ଉଦାହରଣ—

| ଇଂରାଜୀ ଶବ୍ଦ | | ଓଡ଼ିଆ ସଂସ୍କରଣ |
|---|---|---|
| administrator | ... | ଆଡ଼ମିନିଷ୍ଟର |
| minister | ... | ମିନିଷ୍ଟର |
| socialist | ... | ସୋସାଲିଷ୍ଟ |
| communist | ... | କମିଷ୍ଟି |
| party | ... | ପାର୍ଟି |
| late | ... | ଲେଟ୍ |
| lasting | ... | ଲିଷ୍ଟିଙ୍ଗ |
| spring | ... | ଇସପ୍ରିଙ୍ଗ୍ |
| injection | ... | ଇଞ୍ଜେକ୍‌ସନ |
| policy | ... | ପାଲେସ୍ |
| card | ... | କାର୍ଡ଼ |
| difference | ... | ଡିଫାଠ୍ |
| matriculation | ... | ମାଟିକିଲ୍‌ସ୍ |
| medical | ... | ମେଡ଼ିକଲ |
| capstan | ... | କାଷ୍ଟାନ |
| control | ... | କଣ୍ଟ୍ରୋଲ୍ |
| permit | ... | ପରମିଟି |
| current | ... | କାରଣ୍ଟ୍ |
| export | ... | ଆକାଶଫୁଟ |
| love | ... | ଲଫ୍ |

ନହାତ ମୂର୍ଖଲୋକଙ୍କ ମୁଖରୁ ଯେଉଁ ଅତ୍ୟାଧୁନିକ ଇଂରାଜୀ ଶବ୍ଦ ମୁଁ ନିଜେ ଶୁଣିଛି, ତନ୍ମଧ୍ୟରୁ କେତୋଟି ମାତ୍ର ଦିଆଯାଇଛି; ମାତ୍ର ପୁଲିସ, ପୋଷ୍ଟ ଅଫିସ, ହସପିଟାଲ, ଡାକ୍ତର, ନର୍ସ, ମାଷ୍ଟର, ଓଭରସିଅର, ଇଞ୍ଜିନିୟର, ଟେବୁଲ, ଚେୟାର, ମନିଅର୍ଡର ପ୍ରଭୃତି ଶହ ଶହ ପୁରାତନ ବ୍ୟବହୃତ ଶବ୍ଦକୁ ଏହି ପ୍ରବନ୍ଧରେ ସ୍ଥାନ ଦେବାର ଆବଶ୍ୟକତା ନାହିଁ ।

ମୂର୍ଖଲୋକଙ୍କ ଦୈନନ୍ଦିନ ବ୍ୟବହାରରେ ଇଂରାଜୀ ଶବ୍ଦ ବଢ଼ି-ଚାଲିଛି । ଓଡ଼ିଆ ଗଦ୍ୟ ପଦ୍ୟରେ ଶିକ୍ଷିତ ଲୋକେ ଯେତେ ବେଶୀ ବ୍ୟବହାର କରୁ ନ ଥିଲେ ମଧ୍ୟ ବ୍ୟବହାର ଆରମ୍ଭ ହୋଇଗଲାଣି । କେତୋଟି ମାତ୍ର ଉଦାହରଣ ଦିଆଯାଇପାରେ । ସପିଲ, ମେସମେରିଜମ୍, ଟ୍ରାନ୍‌ସିଟ, ଲନ୍, ଶେୟାର ବଜାର, ସିରିଆମ୍, ଟର୍ମ, ଏକାଡେମିକ୍, ରେବିସ ପ୍ରଭୃତି । ମୂର୍ଖଲୋକଙ୍କର ବେଶୀ ଇଂରେଜୀ କହିବାରେ ମାନସ୍ତାତ୍ତ୍ୱିକ ଓ ସାମାଜିକ କାରଣ ନିହିତ ଅଛି । ନୂତନ ସ୍ୱାଧୀନତା ପରେ ଦଳିତ ଲୋକେ ସମାଜରେ ଉଚ୍ଚ ଆସନ ଦାବି କରୁଛନ୍ତି । ଯେଉଁ ଇଂରାଜୀ ଶିକ୍ଷା ଶିକ୍ଷିତ ଲୋକଙ୍କର ବଡ଼ିମାର ପରିଚାୟକ, ତାହାକୁ ବିନା ଶିକ୍ଷାରେ ଅନୁକରଣ କରି ଆତ୍ମପ୍ରସାଦ ଲଭକରିବା ଚେଷ୍ଟାରେ ଲୋକେ ଇଂରାଜୀ କହିବାକୁ ସର୍ବଦା ଚେଷ୍ଟିତ । ଜଣା ଅଜଣା ଇଂରାଜୀ ଶବ୍ଦକୁ ସ୍ଥାନ ଅସ୍ଥାନ ଯତ୍ରକୁତ୍ରାପି ବ୍ୟବହାର କରି ନିଜର ନ୍ୟୂନଭାବକୁ ଲୁଚାଇବାର ଚେଷ୍ଟା କରୁଛନ୍ତି । ଯେଉଁମାନେ ମୂର୍ଖ ଅଥଚ ଧନ ପ୍ରଭାବରୁ ଲୋକଙ୍କ ଉପରେ ପ୍ରଭାବ ବିସ୍ତାର କରୁଛନ୍ତି, ସେହିମାନଙ୍କର ଏହି ବ୍ୟାଧି ବହୁତ ।

ଇଂରାଜୀ ଶବ୍ଦକୁ ନାନାଭାବରେ ପରିବର୍ତ୍ତିତ କରି ଆମେମାନେ ବ୍ୟବହାର କରିଥାଉଁ । ଏହି ପରିବର୍ତ୍ତନର ପ୍ରକୃତି କିଞ୍ଚିତ୍ ପରିମାଣରେ ବିଚାର କରିବାର କଥା । ଓଡ଼ିଆ ଖବରକାଗଜ ଓ ପତ୍ରପତ୍ରିକାରେ ଇଂରାଜୀ ସ୍ଥାନ ଓ ବ୍ୟକ୍ତି ନାମକୁ କିପରି ବିକୃତ କରାଯାଏ ଦେଖାଯାଉ । ଏଠାରେ କୌଣସି ପତ୍ରିକାର ନାମ ବା ପ୍ରକାଶ ତାରିଖ ଦେବାର ଆବଶ୍ୟକତା ନାହିଁ; ମାତ୍ର ଉଦାହରଣଗୁଡ଼ିକ ଖବରକାଗଜରୁ ସଂଗୃହୀତ ସତ୍ୟ ।

| ଇଂରାଜୀ | ଓଡ଼ିଆ ସଂସ୍କରଣ | ହେବା ଉଚିତ |
|---|---|---|
| Dulles | ଡ୍ୟୁଲେସ | ଡଲେସ୍ |
| Trigvilee | ଟ୍ରିଗ୍‌ଭିଲ୍ଲଇ | ଟ୍ରିଗଭିଲ୍ଲୀ |
| Daisy | ଦାଇସୀ | ଡେଇଜି |
| Brusseles | ବ୍ରୁସେଲସ୍ | ବ୍ରସେଲସ୍ |
| Cardiff | କରଡ଼ିଫ୍ | କାର୍ଡ଼ିଫ୍ |
| Cologne | କଲୋଗାନୀ | କଲୋନ୍ୟ |

ଯାହା ହେବା ଉଚିତ, ତା'ଠାରୁ ଓଡ଼ିଆ ସଂସ୍କରଣ କେତେ ତଫାତ୍ ସହଜରେ ଅନୁମେୟ । ଏହାର କାରଣ ମୌଳିକ ଫୋନେଟିକ୍ ଜ୍ଞାନର ଅଭାବ । ନାମ ସମ୍ପର୍କରେ କେବଳ ଫୋନେଟିକ୍ ଡିକ୍‌ସିନାରୀ ଦେଖିଦେଉଥିଲେ ସତ୍ୟଂଶ ସହଜରେ ପ୍ରତିପନ୍ନ ହୁଅନ୍ତା । ନଚେତ୍ 'ଡେଇଜି' ନାମକ ବାଳିକାକୁ 'ଦାଇସୀ' ନାମରେ କିମ୍ବା 'କଲୋନ୍ୟ' ସହରକୁ 'କଲୋଗାନୀ' ନାମରେ ଖୋଜିଲେ ଅକାରଣ ହାସ୍ୟାସ୍ପଦ ହେବା କଥା ।

ଏହି ଅବସରରେ କୁହାଯାଇପାରେ ଯେ ଦେଶୀୟ ଲିଖିତ ପ୍ରଶ୍ନପତ୍ରରୁ ଶତକଡ଼ା ସତୁରି ଇଂରାଜୀ ଶବ୍ଦସମ୍ବଳିତ । ରେଲ୍‌ୱେ ପ୍ଲାଟ୍‌ଫର୍ମରେ ଲିଖିତ ନାମଗୁଡ଼ିକ ଭାଷାତତ୍ତ୍ୱ ବିତ୍ତର ପାଇଁ ବିଶେଷ କୌତୂହଳପୂର୍ଣ୍ଣ । ଶାଳଗାଁ ଷ୍ଟେସନର ଇଂରାଜୀ ନାମ Salagan କୁ ଓଡ଼ିଆରେ ଶଳାଗାଁ, ଶାଳୀଗାଁ, ଶାଲାଗାଁ, ଶାଲ୍ ଗାଁ, ଷାଲଗାନ୍, ଶଲ୍‌ଗାନ୍ ଏହିପରି ନାନା ଭାବରେ ବିଦେଶୀ ଲୋକେ ପଢ଼ିପାରିବେ । ବିଶୁଦ୍ଧ ପାଠ ପାଇଁ ତନ୍ମଧ୍ୟରେ କୌଣସି ସଙ୍କେତ ନାହିଁ । Bedhapala (ବେଢ଼ାପାଳ) ଓ Laida (ଲଇଡ଼ା)କୁ ଏହିପରି ଅନେକ ଭଙ୍ଗୀରେ ପଢ଼ାଯାଇପାରେ । ନିର୍ଗୁଣ୍ଡି ଷ୍ଟେସନକୁ ଇଉରୋପୀୟମାନେ Nirgundi ନ ଲେଖି କାହିଁକି Nergundi ଲେଖିଛନ୍ତି, ତା ବୁଝିବା ପାଇ ଫୋନେଟିକ୍‌ସ୍ ଦରକାର । ଓଡ଼ିଆଙ୍କ ହ୍ରସ୍ୱଇ ଇଂରାଜୀରେ ହ୍ରସ୍ୱ ଇ ଧ୍ୱନିର ପାଖାପାଖି ଏକ ଧ୍ୱନି । ଇଂରେଜମାନେ ଏହି ଧ୍ୱନିକୁ ଇ ଦ୍ୱାରା ସାଙ୍କେତିକ କରୁଥିବାରୁ ଓଡ଼ିଆ

'ନର୍ଗୁଣ୍ଡି' ଇଂରାଜୀ 'Nergundi' ରୂପ ଧାରଣ କରିଛି, ଯାହାକୁ ଓଡ଼ିଆମାନେ 'ନେର୍ଗୁଣ୍ଡି' ବୋଲି ପଢ଼ିବେ । ଭାରତ ସମ୍ପର୍କରେ କମ୍ ଜାଣିଥିବା ଆମେରିକାନ୍‌ମାନେ Calcutta ଓ Cuttackକୁ ବନାନ ଦେଖି ଯଥାକ୍ରମେ 'କାଲ୍‌କୁଟା' ଓ 'କୁଟକ୍' ବୋଲି ଉଚ୍ଚାରଣ କରିଥାନ୍ତି । ବିଦେଶୀ ଭାଷାରୁ ମାତୃଭାଷାକୁ ନାମମାନଙ୍କର ଭାଷାନ୍ତର କରିବା ସେହି ସେହି ଭାଷାମାନଙ୍କର ଫୋନେଟିକ୍‌ସ୍ ଜ୍ଞାନ ବ୍ୟତିରେକେ ଅତ୍ୟନ୍ତ କଷ୍ଟସାଧ୍ୟ । ଶ' କହନ୍ତି, ଗୃହ ଅକ୍ଷରବିଶିଷ୍ଟ ତାଙ୍କ ନାମକୁ ରୁଷିଆ ଲୋକେ ୩-୫ ଅକ୍ଷରରେ ଲେଖନ୍ତି ।

ବିଦେଶୀ ଶବ୍ଦର ବହୁଳତା ଆମ ମାତୃଭାଷାର ରୂପକୁ ମଧ୍ୟ ପରିବର୍ତ୍ତିତ କରିଦିଏ । କେତେକ ଇଂରାଜୀ ଶବ୍ଦରେ ଅନାବଶ୍ୟକ ଅକ୍ଷର ଅଛି । କୌଣସି ଇଂରାଜୀ ଲୋକ ତାହା ଉଚ୍ଚାରଣ କରନ୍ତି ନାହିଁ । ଉଦାହରଣ ସ୍ୱରୂପ Government ଶବ୍ଦରେ r ଉଚ୍ଚାରିତ ହୁଏ ନାହିଁ; ମାତ୍ର ଓଡ଼ିଆ ଲୋକେ ବନାନଦ୍ୱାରା ପ୍ରଭାବିତ ହୋଇ 'ଗଭର୍ଣ୍ଣମେଣ୍ଟ' ଶବ୍ଦରେ ରେଫ୍ ଦିଅନ୍ତି । ବନାନପ୍ରଭାବିତ ଆଉ କେତେକ ଶବ୍ଦ ନିମ୍ନରେ ପ୍ରଦତ୍ତ ହେଲା ।

| ଇଂରାଜୀ | ଓଡ଼ିଆ ଲେଖା |
|---|---|
| Card | କାର୍ଡ଼ |
| Report | ରିପୋର୍ଟ |
| Order | ଅର୍ଡ଼ର |
| Ford | ଫୋର୍ଡ଼ |
| Mart | ମାର୍ଟ |
| Street | ଷ୍ଟ୍ରୀଟ୍ |

କିନ୍ତୁ ଇଂରାଜୀ ଶବ୍ଦର ପ୍ରକୃତ ଉଚ୍ଚାରଣ ଜଣାଥିଲେ ଅଯଥା ରେଫ୍ ଯୋଗକରି ଓଡ଼ିଆ ପ୍ରିଣ୍ଟରମାନଙ୍କୁ ଅଯଥା ହଇରାଣରେ ପକାଇବାକୁ ହୁଅନ୍ତା ନାହିଁ । କହିବା ବାହୁଲ୍ୟ ଯେ ଓଡ଼ିଆ ମାତ୍ରାଗୁଡ଼ିକ ପ୍ରିଣ୍ଟିଂ ପାଇଁ ବିଶେଷ ଅସୁବିଧାଜନକ ।

ନିଜ ଭାଷା ପାଇଁ ମନୁଷ୍ୟର ଭାବପ୍ରବଣତା ସବୁଠାରୁ ବେଶୀ । ବିଦେଶୀ ଶବ୍ଦକୁ ନିଜ ଭାଷାରେ ସ୍ଥାନ ନ ଦେବା ପାଇଁ ସବୁଠି ଲୋକେ ଅଳ୍ପ ବହୁତେ ଲଢ଼ନ୍ତି । ଅନେକ ସମୟରେ ଜାତି, ଧର୍ମ ଓ ଶାସନ-ବିଦ୍ୱେଷ ଏଥିର କାରଣ ହୋଇଥାଏ । ଏବେ ମଧ୍ୟ ହିନ୍ଦୀଭାଷାର ପୃଷ୍ଠପୋଷକମାନେ ଉର୍ଦ୍ଦୁ ପ୍ରଭାବକୁ ସମ୍ପୂର୍ଣ୍ଣ ନିବାରଣ କରିବାକୁ ଚାହାନ୍ତି । ଆମ ପଣ୍ଡିତମାନେ ସାହିତ୍ୟରେ ଇଂରାଜୀ ପ୍ରଭାବ ଦେଖି ନାକ ଟେକନ୍ତି । ଇଂରାଜୀ ବୈଜ୍ଞାନିକ ଶବ୍ଦ ବ୍ୟବହାର ପାଇଁ ଡକ୍ଟର ସୁନୀତିକୁମାର ଚାଟାର୍ଜି ଓ ଡାକ୍ତର ରଘୁବୀରଙ୍କ ବଚସା ଭାଷାରେ ଭାବପ୍ରବଣତାର ଚରମ ନିଦର୍ଶନ । ଡାକ୍ତର ଚାଟାର୍ଜି ଆନ୍ତର୍ଜାତିକ । ସେ ଆନ୍ତର୍ଜାତିକ ଶବ୍ଦ ରଖିବାକୁ ଚାହାନ୍ତି । ଡାକ୍ତର ରଘୁବୀର କିନ୍ତୁ ଏକାନ୍ତ ଭାରତୀୟ । ଗାଣିତିକ ସୂତ୍ର ପର୍ଯ୍ୟନ୍ତ ବି ହିନ୍ଦୀରେ ହେବା ଉଚିତ ବୋଲି ସେ ମନେକରନ୍ତି । ଭବପ୍ରବଣତା ଯେତେ ଉତ୍କଟ ହେଲେ ମଧ୍ୟ ଇତିହାସର ଧାରାକୁ କେହି ବଦଳାଇ ଦେଇପାରିବେ ନାହିଁ । ପୃଥିବୀ ଯେତିକି କ୍ଷୁଦ୍ର ହୋଇଯାଉଛି, ଭାଷାମିଶ୍ରଣ ସେତିକି ଦ୍ରୁତଗତିରେ ଚାଲିଛି । ନୋହିଲେ ଗାଁଗହଳର ଅପାଠୁଆ ମୂଲିଆ ଆଜି 'ଟିକେ' 'ଡାକ୍ଟର' କୁହନ୍ତା କେମିତି ? ପ୍ରତ୍ୟେକ ନୂତନ ଆବିଷ୍କାର ପାଇଁ କିଏ ବା ନିତି ନୂତନ ଶବ୍ଦ ଗଢୁଛି ଯେ, ସେହି ଆବିଷ୍କାର ଆସିଲାମାତ୍ରେ ତାର ସ୍ୱଦେଶୀ ନାମକରଣ କରିପାରିବ ? ତେଣୁ ବିଦେଶୀ ଶବ୍ଦକୁ ଯେତେ ବାରଣ କଲେ ମଧ୍ୟ ସେ ପ୍ରବେଶ କରିବ । ଯଦି ଶିକ୍ଷିତ ଲୋକମାନଙ୍କ ବଡ଼ ଗେଟ୍ ବାଟେ ଆସି ନ ପାରିବ, ତେବେ ମଲମୁଣ୍ଡି ଆଙ୍କ ତାଟି ଫିଟାଇ ବାଡ଼ପଟେ ଆସିବ । ଶିକ୍ଷିତ ଲୋକେ ମାତୃଭାଷାର ଆତ୍ମପ୍ରତିଷ୍ଠା ପାଇଁ ଯଦି ରେଲକୁ 'ବାଷ୍ପୀୟ ଶକଟ' କହିବା ପାଇଁ ଜବରଦସ୍ତ ଚେଷ୍ଟା କରନ୍ତି, ତଥାପି ଅଶିକ୍ଷିତ ଲୋକେ 'ରେଲଗାଡ଼ି' ବୋଲି କହିବେ । ବିଦେଶୀ ଶବ୍ଦ କାଳକ୍ରମେ ଏମିତି ଆପଣାର ହୋଇ-ପଡ଼ିଲାଣି ଯେ, ଓଡ଼ିଆ ରୀତିରେ ସେମାନଙ୍କର ସନ୍ଧି, ସମାସ ଓ ନବୀକରଣ ମଧ୍ୟ ହୋଇପାରୁଛି । କେତୋଟି ବିଦେଶୀ ନବୀକରଣର ଉଦାହରଣ ନିଆଯାଉ । ଓଡ଼ିଶାର ରେଭିନ୍ୟୁବୋର୍ଡ଼ ଚେୟାରମାନ୍ ଶ୍ରୀଯୁକ୍ତ

ନୀଳମଣି ସେନାପତି ଚଲିକାମାଛ ସମ୍ପର୍କରେ ୧୧।୧୦।୫୬ 'ସମାଜ'ରେ 'କମିଶନିଆ' ଶବ୍ଦ ବ୍ୟବହାର କରିଛନ୍ତି । ଯେ ଗୁଲି ଖାଉଛି, ସେ ଗୁଲିଆ ପରି; ଯେ କମିଶନ ନେଉଛି ବା ଦେଉଛି, ସେ ବୋଧହୁଏ 'କମିଶନିଆ' । ଏହିପରି ମଧ୍ୟ ଲୋକେ କହୁଛନ୍ତି 'ଅଡ଼ନାରିଆ' । ସ୍ୱଦେଶୀ ବିଦେଶୀ ମିଳନର କେତୋଟି ଉଦାହରଣ ନିମ୍ନରେ ନିଆଯାଉ ।

| | |
|---|---|
| ଅର୍ଥ କମିଶନ | (ଓଡ଼ିଆ+ଇଂରାଜୀ) |
| ଶିକ୍ଷାବୋର୍ଡ଼ | ( „+ „ ) |
| ରେଲପଥ | (ଇଂରାଜୀ+ଓଡ଼ିଆ) |
| ଭୋଟାଧିକାର | ( „ + „ ) |
| ନଲମେଚ୍ଛୁ | (ଇରାନିଆନ୍+ସଂସ୍କୃତ) |

ଏହିପରି ଖୋଜିବସିଲେ ଅସଂଖ୍ୟ ଇଂରାଜୀ ଶବ୍ଦ ଓଡ଼ିଆ ସହିତ ହାତ ମିଳାଇ ଓଡ଼ିଆ ହୋଇଗଲେଣି । ଇଂରାଜୀ ଶିକ୍ଷାର ପ୍ରାଦୁର୍ଭାବ କମିଗଲେ ପରେ ସେମାନଙ୍କୁ ଚିହ୍ନିବା ପାଇଁ ଭାଷାତତ୍ତ୍ୱବିତ୍‌ମାନଙ୍କର ମୁଣ୍ଡବ୍ୟଥା ଆରମ୍ଭ ହେବ । ଆଜି ଯେମିତି ଜମି, ନିଲାମ, ଗରିବ ପ୍ରଭୃତି ଶବ୍ଦକୁ ବିଦେଶୀ ବୋଲି ଚିହ୍ନି ହେଉନି, ସେମିତି ବହୁକାଳ ପରେ ନିତ୍ୟ-ବ୍ୟବହୃତ ଇଂରାଜୀ ଶବ୍ଦକୁ ବି ବିଦେଶୀ ବୋଲି ଚିହ୍ନି ହେବ ନାହିଁ ।

ଇଂରାଜୀ ଶବ୍ଦମାନଙ୍କର ଓଡ଼ିଆ ଭାଷା ଉପରେ ଯେଉଁ ପ୍ରଭାବ, ତାହା ସର୍ବତ୍ର ସମାନ ନୁହେଁ । ସ୍ଥାନୀୟ ଉଚ୍ଚାରଣ ପଦ୍ଧତିରେ ପ୍ରଭାବିତ ହୋଇ ଇଂରାଜୀ ଶବ୍ଦଗୁଡ଼ିକ ବିଭିନ୍ନ ସ୍ଥାନରେ ବିଭିନ୍ନ ରୂପ ଧାରଣ କରିଥାନ୍ତି । ଇଂରାଜୀ **bus** ଶବ୍ଦ କଟକର 'ବସ', ମୟୂର-ଭଞ୍ଜର 'ବାସ' ଓ ଗଞ୍ଜାମ ଅଞ୍ଚଳର 'ବାସ୍ସୁ'ରେ ପରିଣତ ହୁଏ । କଟକ ଓ ମୟୂରଭଞ୍ଜର ଲ (**law**) ଗଞ୍ଜାମ ଅଞ୍ଚଳର 'ଲ୍'ରେ ପରିଣତ ହୁଏ । କଏଠିକ, କିଏ ଭୁଲ, ସେ ତ ସ୍ୱତନ୍ତ୍ର କଥା; ମାତ୍ର ଶବ୍ଦଗୁଡ଼ିକ ଯେ ସ୍ଥାନୀୟ ପ୍ରଭାବରେ ପ୍ରଭାବିତ, ଏଥିରେ କୌଣସି ସନ୍ଦେହ ନାହିଁ । ମୟୂରଭଞ୍ଜ

ବଙ୍ଗପ୍ରଭାବିତ । କଲିକତା ଲୋକେ ବାସ୍ କହନ୍ତି ବୋଲି ମୟୂରଭଞ୍ଜରେ ବ 'ବାସ୍' କହନ୍ତି । ସୌଭାଗ୍ୟକୁ ଇଂରାଜୀ ଫୋନେଟିକସ୍ ଅନୁସାରେ 'ବାସ' ହିଁ ଠିକ୍ । ଓଡ଼ିଶାର ଅନ୍ୟ ଏକ ପ୍ରାନ୍ତ ସମ୍ବଲପୁର କଥା ବିଚାର କରାଯାଉ । କେତେକ ପରୀକ୍ଷାଖାତାରୁ ସଂଗୃହୀତ ଦୁଇ ତିନୋଟି ଉଦାହରଣ ମାତ୍ର ଦିଆଯାଉ ।

| ଇଂରାଜୀ | ଓଡ଼ିଆ |
|---|---|
| madam | ମେଡ଼େମ |
| platform | ପ୍ଲେଟଫର୍ମ |
| land | ଲେଣ୍ଡ୍ (ସମ୍ପୂର୍ଣ୍ଣ ଏକାର ନୁହେଁ, ତତ୍ସମୀପବର୍ତ୍ତୀ ଏକ ଧ୍ୱନି) |

ଜଣେ ସମ୍ବଲପୁରୀ ଅଧ୍ୟାପକ ବନ୍ଧୁଙ୍କଠାରେ ଫୋନେଟିକସ୍ ଆଲୋଚନା ଅବସରରେ ଏହି 'ଏ' ପ୍ରଭାବ ଦେଖିଛୁ । ଏହି ପ୍ରଭାବର ଗୋଟିଏ ସରଳ ପ୍ରମାଣ ଦିଆଯାଇପାରେ ।




ଉପରେ ଚିତ୍ରିତ ସ୍ୱରଧ୍ୱନି (vowel sound) କ୍ଷେତ୍ରରେ e (ଏ) ଓ a (ଆ) ର ପରିସର ପରସ୍ପରକୁ ଛେଦନ କରୁଛନ୍ତି । ଦୁଇ କ୍ଷେତ୍ର ମଧ୍ୟରେ ଏକ ସାଧାରଣ ସ୍ଥଳ ଅଛି, ଯେଉଁଠି e a ପରସ୍ପର ସହିତ ମିଶିଯାଆନ୍ତି । ମାତ୍ର ଯେଉଁମାନେ e କ୍ଷେତ୍ରର ବେଶୀ ବ୍ୟବହାର କରନ୍ତି, ସେମାନେ a ନ କହି e କହନ୍ତି । କିନ୍ତୁ ଯେଉଁମାନେ a କ୍ଷେତ୍ରର ବେଶୀ ବ୍ୟବହାର କରନ୍ତି, ସେମାନଙ୍କ ଅବସ୍ଥା ସମ୍ବଲପୁରରେ କଟକୀ ଶିକ୍ଷକଙ୍କ ପରି ହୁଏ ।

କଟକ ଉଚ୍ଚାରଣ

| | |
|---|---|
| madam | ମାଡ଼ାମ୍ |
| platform | ପ୍ଲାଟଫର୍ମ |
| land | ଲଣ୍ଡ୍ |

କଟକ ଲୋକଙ୍କର a ଉଚ୍ଚାରଣ e ଅଭ୍ୟସ୍ତ ସମ୍ବଲପୁରୀ କାନକୁ ଅତିରଞ୍ଜିତ ଆ ଅର୍ଥାତ୍ ୟା ପରି ଶୁଣାଯାଏ । ତେଣୁ କଟକୀ ଲୋକଙ୍କର Cat, rat, hat ସେମାନଙ୍କୁ ଯଥାକ୍ରମେ କ୍ୟାଟ, ର୍ୟାଟ, ହ୍ୟାଟ୍ ପରି ଶୁଣାଯାଏ ବୋଲି ସମ୍ବଲପୁରର କେତେକ ଅଞ୍ଚଳରେ କଟକୀ ଶିକ୍ଷକମାନଙ୍କୁ 'କ୍ୟାଟ' 'ର୍ୟାଟ' 'ହ୍ୟାଟ୍' ନା ଦେଇ ଚିଡ଼ାନ୍ତି । ଅନ୍ୟ ଯାହା କିଛି ହେଉ, ଏ ଓ ଆ ର ବୈଜ୍ଞାନିକ ସତ୍ୟଟି ଉପରୋକ୍ତ ଚିଡ଼ାରୁ ସହଜରେ ଧରାପଡ଼ିବ । ସବୁ ଦେଶରେ ସବୁ କାଳରେ ଏମିତି କି ସବୁ ଗାଁରେ ମଧ୍ୟ ଭାଷାଗତ ଉପହାସ୍ୟ ରହିଛି । ଇଂରାଜମାନେ ଆମେରିକାନ-ମାନଙ୍କର ଅଯଥା ଦୀର୍ଘ ସ୍ୱରକୁ (drawling) ଯେମିତି ଉପହାସ୍ୟ କରନ୍ତି, ଫ୍ରେଞ୍ଚ ଲୋକେ ଇଂରାଜମାନଙ୍କର ଅଧାଗିଲା ଦାନ୍ତଚପା କଥାକୁ ସେମିତି ରହସ୍ୟ କରନ୍ତି । କହିଲେ ସିନା ବାଙ୍କେ, ଭାଷା ସମ୍ପର୍କରେ କଣ କଣକେ ଫାଙ୍କେ । ତେଣୁ ଇଂରାଜୀ ପ୍ରଭାବ ବିଚାର କଲାବେଳେ ପ୍ରତ୍ୟେକ ଅଞ୍ଚଳର ସ୍ୱତନ୍ତ୍ର ଗବେଷଣା ଆବଶ୍ୟକ ।

ଶବ୍ଦମାନଙ୍କର ଫୋନେଟିକ୍ ବା ଉଚ୍ଚାରଣ ପରିବର୍ତ୍ତନ ଯେତେ ବିସ୍ମୟକର ନୁହେଁ, ତାଠୁ ବେଶୀ ଆଶ୍ଚର୍ଯ୍ୟଜନକ ଅର୍ଥର ପରିବର୍ତ୍ତନ । ଉଚ୍ଚାରଣ ଶବ୍ଦର ବାହ୍ୟ ଆବରଣ, ଅର୍ଥ ହିଁ ତାର ଆତ୍ମା । ଶବ୍ଦ ରାଜ୍ୟରେ ଏହି ଆତ୍ମା ପରିବର୍ତ୍ତନ ବଡ଼ ଧୀର ମନ୍ଥର ଗତିରେ ଚାଲେ । ବୈଦିକ 'ଅହି' (ମେଘ) ଶବ୍ଦ ଆଜି ସର୍ପ ଅର୍ଥରେ ବ୍ୟବହୃତ ହେଉଛି । ପୁରାତନ marshal (ଅଶ୍ୱପାଳକ) ଶବ୍ଦ ଆଜି ସୈନ୍ୟଚାଳକ ସେନାପତି ଅର୍ଥରେ ବ୍ୟବହୃତ ହେଉଛି । ମାତ୍ର ଅଳ୍ପ ଲୋକମାନଙ୍କ ବହୁଳ ଓ ଅସ୍ଥାନ ପ୍ରୟୋଗଦ୍ୱାରା ଇଂରାଜୀ ଶବ୍ଦମାନଙ୍କର ଅର୍ଥ ପରିବର୍ତ୍ତନ ବଡ଼ ଚଞ୍ଚଳ ହୋଇଯାଉଛି । ବହୁ ଲୋକଙ୍କର ଇଂରାଜୀ ବ୍ୟବହାରକୁ ଦୀର୍ଘକାଳ

ଅନୁସରଣ ନ କଲେ ଅର୍ଥ ପରିବର୍ତ୍ତନ ଧରିପାରିବା ବଡ଼ କଠିନ । ଅସ୍ଥାନ ପ୍ରୟୋଗ ଯୋଗୁଁ ଶବ୍ଦର ଅର୍ଥ କେମିତି ପରିବର୍ତ୍ତିତ ହେଉଛି, ତାର ଗୋଟିଏ ଦୁଇଟି ମାତ୍ର ଉଦାହରଣ ଦିଆଗଲା । ଗୋଟିଏ ଗାଁର ପଞ୍ଚାୟତମାନେ କେତେକ ସ୍ୱେଚ୍ଛାସେବକ ବାଛି ସେମାନଙ୍କୁ ଜଣକେ ତତ୍ତ୍ୱାବଧାନରେ ରଖିଛନ୍ତି । ତତ୍ତ୍ୱାବଧାରକ ଜଣେ ନିରକ୍ଷର ମୂର୍ଖ ଶ୍ରେଣୀସ୍ଥ ଲୋକ; ମାତ୍ର ତାଙ୍କର ଏହି ଗ୍ରାମ୍ୟ ପଦୋନ୍ନତି ଯୋଗୁଁ ସେ ବହୁ ଅଜଣା ଇଂରାଜୀ ଶବ୍ଦ ବ୍ୟବହାର କରନ୍ତି । ନିଜକୁ ସେ ନେତା ମନେକରି ସେହି ନେତା ଅର୍ଥରେ ଆପଣାକୁ headquarter ବୋଲି ପରିଚିତ ଦିଅନ୍ତି । ଇଂରାଜୀ ପାଠକମାନେ ଏହି ଅର୍ଥ ପରିବର୍ତ୍ତନ ଲକ୍ଷ୍ୟ କରିବାର କଥା ।

ବହୁଳ ପ୍ରଚଳିତ ଅନ୍ୟ ଏକ ଶବ୍ଦ system, ଲୋକେ ତାକୁ ବୁନିଆଦ, ପ୍ରକୃତି, ଚଳାଚଳ ପ୍ରଭୃତି ବିଭିନ୍ନ ଅର୍ଥରେ ବ୍ୟବହାର କରୁଛନ୍ତି । ଉଦାହରଣ—"ତାଙ୍କ କଥା କ'ଣ କହୁଛ, ତାଙ୍କ ସିଷ୍ଟମ ଖୋଲିବସିଲେ କେତେ କଥା ଏଇନେ ବାହାରିବ ।" Family ଶବ୍ଦକୁ ଟିକିଏ ବିକୃତ ଉଚ୍ଚାରଣ କରି ସ୍ତ୍ରୀ ଅର୍ଥରେ ଅନେକେ ବ୍ୟବହାର କରୁଛନ୍ତି । ଉଦାହରଣ—"ବାବୁ ବମ୍ବେ ଯାଇଥିଲ, ତମ 'ଫେମିଲିଙ୍କ ପାଇଁ ଶାଢ଼ୀ ଆଣିଛ ?" ଏହିପରି ଅନୁସନ୍ଧାନ କଲେ ପରିବର୍ତ୍ତିତାର୍ଥ ବହୁ ଇଂରାଜୀ ଶବ୍ଦ ଓଡ଼ିଆ ଭାଷାରେ ମିଳିବ । ସେଥିପାଇଁ ସ୍ୱତନ୍ତ୍ର ଗବେଷଣା ଆବଶ୍ୟକ ।

ବର୍ତ୍ତମାନ ବିଚାର କରିବାର କଥା, ଅର୍ଥ ଓ ଉଚ୍ଚାରଣ ଛଡ଼ା ଇଂରାଜୀ ଭାଷା ଓଡ଼ିଆ ପ୍ରକାଶଭଙ୍ଗୀକୁ କେଉଁ ପରିମାଣରେ ପ୍ରଭାବିତ କରୁଛି । ଏ ସମ୍ପର୍କରେ ଅଶିକ୍ଷିତ ଲୋକଙ୍କଠାରୁ ବିଶେଷ ଉପାଦାନ ମିଳିପାରିବ ନାହିଁ । କାରଣ ଅଶିକ୍ଷିତ ଲୋକଙ୍କ ଉପରେ ଇଂରାଜୀ ବାକ୍ୟ ବା ବନ୍ଧର ପ୍ରଭାବ ନାହିଁ । କେବଳ ଇତସ୍ତତଃ ବିକ୍ଷିପ୍ତ ଶବ୍ଦ ସେମାନେ ବ୍ୟବହାର କରିଥାନ୍ତି; ମାତ୍ର ଉଚ୍ଚଶିକ୍ଷିତ ଲୋକେ ଆଜୀବନ ଇଂରାଜୀ ଭାଷା ଓ ଚିନ୍ତାଦ୍ୱାରା ପ୍ରଭାବିତ ହୋଇଥିବାରୁ ଏବଂ କେବଳ

ଆବଶ୍ୟକତାର ତାଡ଼ନାରେ ମାତୃଭାଷା ଲେଖୁଥିବାରୁ ତାହାଁରେ ଅନେକ ସମୟରେ ଅତର୍କିତ ଭାବରେ ବିଦେଶୀ ବାକ୍ୟର ତର୍ଜମା କରି-ପକାନ୍ତି ।

ପ୍ରଥମେ କେତେକ ବାକ୍ୟାଂଶର ବିଚାର କରାଯାଉ ।

| | |
|---|---|
| benefit of doubt | ସନ୍ଦେହର ସୁଯୋଗରେ |
| recent past | ଅଦୂର ଅତୀତ |
| huge necessity | ପ୍ରକାଣ୍ଡ ପ୍ରୟୋଜନ |
| helpless | ଉପାୟଶୂନ୍ୟ |

ଯଦି ଅନୁବାଦଦ୍ୱାରା ପ୍ରଭାବିତ ନ ହୋଇ ଲେଖକ ସ୍ୱାଧୀନ ଭାବରେ ଚିନ୍ତା କରିଆନ୍ତେ, ତେବେ helpless କୁ ହୁଏତ ନିରୁପାୟ ବୋଲି ଅନୁବାଦ କରିଆନ୍ତେ; ମାତ୍ର help ଓ less ଦୁଇଟି ସ୍ୱତନ୍ତ୍ର ଶବ୍ଦ ଓ ପ୍ରତ୍ୟେକର ଓଡ଼ିଆ ପ୍ରତିଶବ୍ଦ ଥିବାରୁ ଏବଂ ନୂତନ ନିର୍ମିତ 'ଉପାୟଶୂନ୍ୟ' ଶବ୍ଦ ଯଥାର୍ଥ ଅର୍ଥ ବୁଝାଉଥିବାରୁ ଲେଖକ 'ନିରୁପାୟ' ଶବ୍ଦକୁ ଖୋଜିବା ପାଇଁ କଷ୍ଟ କରନ୍ତି ନାହିଁ । ଏହି ସମ୍ପର୍କରେ ଓଡ଼ିଆ ଭାଷାରେ ପ୍ରକାଶିତ ପତ୍ରପତ୍ରିକାମାନଙ୍କରେ ଅନୂଦିତ କ୍ଷୁଦ୍ର ଗଳ୍ପ ଦେଖିଲେ ଖାପଛଡ଼ା ଅନେକ ଓଡ଼ିଆ ବାକ୍ୟାଂଶ ମିଳିବ । ଉଚ୍ଚ ଶିକ୍ଷିତ-ମାନଙ୍କଠାରୁ ଗୋଟିଏ ଗୋଟିଏ ଦୀର୍ଘ ବାକ୍ୟର ଅନୁବାଦ ମଧ୍ୟ ମିଳି-ପାରିବ । ଇଂରାଜୀ ପ୍ରଭାବିତ ଏପରି କି ବିକୃତ କେତେକ ଓଡ଼ିଆ ବାକ୍ୟ ଦେଖନ୍ତୁ ।

"ମୁଁ ନାମ କରିବି ସୂର୍ଯ୍ୟ ଦେବଙ୍କର, ନାମ କରିବି ଆମ ବିଶାଳ ଦେଶର ଅନନ୍ତ ଜମି ।"

"ତୁମେମାନେ ହେଉଛ ବିଂଶ ଶତାବ୍ଦୀର କାର୍ଯ୍ୟ ଦ୍ୟବସ୍ଥାରିକ ଖଣ୍ଡର ତରୁଣ ତରୁଣୀ ।"

"ବର୍ଷ ଶେଷକୁ ସେ ହୁଏତ ଦେଖିବ ଯେ ସେ ବଡ଼ଲୋକ ହୋଇଯାଇଛି ଏହା ଉପରକୁ ଖାଲି ବେଶୀ ବୃଷ୍ଟି ହେଲେ ମଧ୍ୟ ଚଳିବ ନାହିଁ ।" ('ଆମ ଭାରତବର୍ଷ'ରୁ ଉଦ୍ଧୃତ)

ଉପରୋକ୍ତ ବାକ୍ୟଗୁଡ଼ିକ କ୍ଷୀତସାରରେ Our India ଇଂରାଜୀ ବହିରୁ ଅନୂଦିତ । ତେଣୁ ଲେଖକଙ୍କ ଉପରେ ଇଂରାଜୀର ପ୍ରଭାବ ପ୍ରତ୍ୟକ୍ଷ ଭାବରେ ପଡ଼ିବା ସ୍ୱାଭାବିକ । ମାତ୍ର ଏପରି ଅନେକ ବାକ୍ୟ ଅଛି, ଯାହା ପ୍ରକୃତରେ ଇଂରାଜୀରୁ ଅନୁବାଦ ନୁହେଁ; କିନ୍ତୁ ଇଂରାଜୀ ପ୍ରଭାବିତ ମନର ସ୍ପଷ୍ଟ ପ୍ରତୀକ ।

ଉଦାହରଣ—"ଭାରତର ଇତିହାସ ଓ ସଂସ୍କୃତିର ପଶ୍ଚାତ୍ ଭୂମିକାରେ ଏବର ଗୃହକେରିଆ ଶିକ୍ଷକ ଏକ ଅବାନ୍ତର, ଅଶୋଭନୀୟ, ଅନିଷ୍ଟକାରୀ ଘଟଣା ।"

ଡା: ମାନସିଂ । ୧୮ । ୫ । ୫୨ 'ପ୍ରଜାତନ୍ତ୍ର'

ଇଂରାଜୀ ଭାଷାର ପ୍ରଭାବ ଉପରୋକ୍ତ ପଂକ୍ତିରେ ପ୍ରେତଗ୍ରସ୍ତ ପରି ଦୂର ବୁଲୁଛି । ସଞ୍ଜୀବନୀ ମନ୍ତ୍ର ପାଇଲେ ଚକ୍ରମାଂସ ଧରି କିମ୍ଭ ପ୍ରକାରେ ଉଭା ହୋଇପାରେ ।

On the background of the historical and cultural past of India, the teacher of to-day stands as an unbecoming, irrelevant and harmful phenomenon.

---

# ଅର୍ଥ ମାନେ କ'ଣ ?

Cat ମାନେ ବିଲେଇ ।
Rat ମାନେ ମୂଷା ।

He is a skilled Cat ମାନେ କ'ଣ ? ମଣିଷ କ'ଣ ବିଲେଇ ?

ମୁଁ ଖାଉଛୁ ।
ସେ ଖାଉଛୁ ।

ମନେ ମନେ ସେ ପାନ ଖାଉଛୁ, ମାନେ କ'ଣ ? ସତରେ କ'ଣ ଖାଇବା ଅର୍ଥରେ ପାନ ଖାଉଛୁ ? କଥାଟା ଯେତକ ସହଜ, ସେତକ ଭଡ଼ । କୌଣସି ଶବ୍ଦ ବୁଝ୍ହା ନ ଗଲେ ଆମେ ପଗ୍ଵରୁ ତା ମାନେ କ'ଣ ? ସାହାଯ୍ୟ ପାଇଁ ଅଭିଧାନ ଦେଖୁ । ଶବ୍ଦ ପାଖକୁ ଶବ୍ଦ ଧାଡ଼ି ହୋଇ ଲେଖା ହୋଇଥାଏ । କେଉଁଠି ଗୋଟିଏ ଶବ୍ଦ ପାଇଁ ଗୋଟିଏ ଶବ୍ଦରେ ଅର୍ଥ ଲେଖାଥାଏ, କେଉଁଠି ଅବା ଚାରି କଥା ହୋଇଥାଏ । କେଉଁଠି ଉଭୟର ଅଭାବରେ ଶବ୍ଦର କାର୍ଯ୍ୟକାରିତା କୋଟେଟି ବାକ୍ୟରେ ଲେଖାଥାଏ; ତେଣୁ ସାଧାରଣ ଶୁଦ୍ଧ ଅର୍ଥ ପାଇଁ ଅଭିଧାନ ଖୋଜେ । ଆମର ଧାରଣା ରଜାଟିକୁ ରାଣୀଟିଏ ଓ କଣାଟିକୁ କାଣୀଟିଏ ପରି ଭାଷାରେ ବ୍ୟବହୃତ ପ୍ରତ୍ୟେକ ଶବ୍ଦର ଗୋଟିଏ ସାର୍ଥକ କିମ୍ବା ଅଭିଧାନଗତ ଅର୍ଥ ଅଛି । ସାଧାରଣ ଲୋକର ଆଉ ଗୋଟିଏ ଧାରଣା ଯେ, ଶବ୍ଦର ଅର୍ଥ ସବୁକାଳେ ସମାନ; ମାତ୍ର ଶବ୍ଦର ଉଚ୍ଚାରଣ କାଳକ୍ରମେ ବଦଳୁଛି; ଯଥା— ପୁରାତନ ପଣ୍ଡିତମାନଙ୍କ ପରି 'ଶ୍ୟାଗ' ନ କହି ଆଜି ଶିକ୍ଷିତ ଲୋକେ 'ଶାଗ' କହୁଛନ୍ତି । ଉଚ୍ଚାରଣ ପରିବର୍ତ୍ତନ ଯେମିତି ସତ୍ୟ ଓ ଫୋନେଟି-ସିଆନ୍‌ମାନଙ୍କର ବର୍ଗ୍ୟ, ଅର୍ଥ ପରିବର୍ତ୍ତନ ସେହିପରି ଏକ ନୂତନ ବିଜ୍ଞାନର

ଆଧାର । ତାହା ସେମାଣ୍ଟିକ୍ ନାମରେ ପରିଚିତ । ଏହି ନୂତନ ବିଜ୍ଞାନ ଅଧୁନା ଆମେରିକାରେ ବିଶେଷ ଚହଳ ସୃଷ୍ଟି କରିଛି । ସେମାଣ୍ଟିଷ୍ଟ ବା ଅର୍ଥବିତ୍‌ମାନଙ୍କର ଧାରଣା ଯେ, ଏହି ବିଜ୍ଞାନ ଉନ୍ନତ ଅବସ୍ଥାକୁ ଆସିଗଲେ ଦୈନନ୍ଦିନ କଥାବାର୍ତ୍ତା, ରାଜନୀତି, ଓକିଲାତି ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଲୋକମାନେ ଆପଣା ଆପଣାର କଥା ସ୍ପଷ୍ଟ ବୁଝି-ପାରିବେ, ମଣିଷ ମଣିଷ ଭିତରେ ବିଦ୍ୱେଷ ଓ ସନ୍ଦେହ ସହଜରେ ଅପସରିଯିବ । କଥାବାର୍ତ୍ତା ପାଇଁ ସବୁବେଳେ ଦୁଇ ଜଣ ଲୋକ ଆବଶ୍ୟକ—ଜଣେ ବକ୍ତା, ଜଣେ ଶ୍ରୋତା । ବକ୍ତା ଯେଉଁ ଶବ୍ଦ ଉଚ୍ଚାରଣ କରନ୍ତି ଓ ତାହାର ଅର୍ଥ ସେ ମନେ ମନେ ଯାହା ଜାଣନ୍ତି, ଶ୍ରୋତା ଯଦି ଠିକ୍ ସେହି ଅର୍ଥ ନ ଜାଣନ୍ତି, ତେବେ ପରସ୍ପରକୁ ଭୁଲ ବୁଝିବା ସ୍ୱାଭାବିକ । ଯେ କୌଣସି ଗୋଟିଏ ଶବ୍ଦ ନେଇ ବିଚାର କରାଯାଉ ଓ ଦେଖାଯାଉ, ଶ୍ରୋତା ବକ୍ତା ପରସ୍ପରକୁ କେତେଦୂର ବୁଝୁଛନ୍ତି ଓ ଉଭୟଙ୍କ ପାଇଁ ସେ ଶବ୍ଦର ଅର୍ଥ କ'ଣ ?

ସାଧାରଣତଃ ରାଜନୀତିକ୍ଷେତ୍ରରେ ଆମମାନଙ୍କର ମତଭେଦ ଖୁବ୍ ବେଶୀ । କଥା କଥାକେ ଆମ୍ଭେମାନେ ଭାବପ୍ରବଣ ହୋଇଉଠୁ; ତେଣୁ ଏକ ରାଜନୀତିକ ଶବ୍ଦ ଉଦାହରଣ ସ୍ୱରୂପ ନିଆଯାଉ । କମ୍ୟୁନିଷ୍ଟ କହି-ଦେଲା ମାତ୍ରେ କେତେକଙ୍କର ଯେତିକି ଆନନ୍ଦ, ଆଉ କେତେକଙ୍କର ସେତିକି ହୃତ୍‌କମ୍ପ । ସୁତରାଂ ଉଭୟ ପକ୍ଷ କମ୍ୟୁନିଷ୍ଟ କହିଲେ କଣ ବୁଝିଛନ୍ତି ଓ ସେମାନଙ୍କ ଚିନ୍ତାଧାରାରେ କେତେ ସାମ୍ୟ ଓ ବୈଷମ୍ୟ ଅଛି ଦେଖାଯାଉ । ଆମେରିକାର ଜଣେ ସାମ୍ବାଦିକଙ୍କ ଭୋଜନ ଟେବୁଲ ଉପରେ ଜଣେ ଭାରତୀୟ 'କମ୍ୟୁନିଷ୍ଟ' ଶବ୍ଦ ଉଚ୍ଚାରଣ କଲା ମାତ୍ରେ ଜଣେ ଚେକ୍ (ଚେକୋସ୍ଲୋଭାକିଆରୁ ପଳାୟିତା) ନାରୀ ଏତେ ବିବ୍ରତ ହୋଇ-ପଡ଼ିଲେ ଯେ ତାଙ୍କର ପ୍ରତ୍ୟେକ ଭଙ୍ଗୀରେ ରାଗ, ବିଦ୍ୱେଷ, ଘୃଣା ଫୁଟି ଉଠୁଥିଲା । ଏହି ଘଟଣାରେ ବକ୍ତା ଭାରତୀୟ, ଶ୍ରୋତା ଚେକ୍, ବ୍ୟବହୃତ ଶବ୍ଦ 'କମ୍ୟୁନିଷ୍ଟ' । 'କମ୍ୟୁନିଷ୍ଟ' କହିଲେ ଉଭୟଙ୍କର କ'ଣ ଧାରଣା, ବିଶ୍ଳେଷଣ କରାଯାଉ ।

| ଭାରତୀୟ | ଚେକ୍ |
| --- | --- |
| ୧। ରାଜତନ୍ତ୍ରର ବିଲୋପ | ୧। ରାଜତନ୍ତ୍ରର ବିଲୋପ |
| ୨। କୃଷୀ ମଜଦୁର ଶାସନ ପ୍ରତିଷ୍ଠା | ୨। କୃଷୀ ମଜଦୁର ଶାସନ ପ୍ରତିଷ୍ଠା |
| ୩। ଧନୀ ଦରିଦ୍ର ସମସ୍ତେ ସମାନ | ୩। ବଡ଼ଲୋକଙ୍କ ଅତ୍ୟାଚାର ଏବେ ବି ଅଛି। |
| ୪। ଦୁଧ ଦହିରେ ଦେଶ ଭାସୁଛି | ୪। ଦାରିଦ୍ର୍ୟରୁ ଦେଶ ମୁକ୍ତି ପାଇ ନାହିଁ। |
| ୫। ଦେଶ ପାଇଁ ଜାତିର ଜୀବନ ସ୍ୱତଃ ଉତ୍ସର୍ଗୀକୃତ | ୫। ଦରିଦ୍ରକୁ ବାଧ୍ୟତାମୂଳକ ବେଠିରେ ଖଟାଯାଉଛି। |
| ୬। ... ... | ୬। ସୀମାନ୍ତ ପ୍ରଦେଶରେ ରୁଷିଆନ-ମାନଙ୍କର ଶୋଷଣ ଅତ୍ୟାଚାର। |
| ୭। ... ... | ୭। ... ... |
| ୮। ... ... | ୮। ... ... |

ଦୁଇ ବିଭିନ୍ନ ଜାତୀୟ ବକ୍ତା ଓ ଶ୍ରୋତାଙ୍କର 'କମ୍ୟୁନିଷ୍ଟ' ଶବ୍ଦର ଅର୍ଥକୁ ଦୁଇ ବର୍ଗକ୍ଷେତ୍ରଦ୍ୱାରା ସାଂକେତିକ କରି ବିଚାର କରାଯାଉ।




ଅଙ୍କିତ ଚିତ୍ରରୁ ଦେଖାଯାଉଛି ଯେ 'କମ୍ୟୁନିଷ୍ଟ' ସମ୍ପର୍କରେ ଶ୍ରୋତା ବକ୍ତାଙ୍କର ଚିନ୍ତାର ୧-୨ ଅଂଶ ସମାନ। ଏହି ମାତ୍ର ସେମାନଙ୍କର ମିଳନସ୍ଥଳ। ତାହା ତିର୍ଯ୍ୟକ୍ ରେଖାଦ୍ୱାରା ସାଂକେତିତ କରାଯାଇଛି।

ବର୍ଗକ୍ଷେତ୍ର ଦ୍ଵୟର ଖାଲି ଅଂଶଗୁଡ଼ିକ ପ୍ରତ୍ୟେକଙ୍କ ମନର ବୈଷମ୍ୟ । 'କମ୍ୟୁନିଷ୍ଟ' ସମ୍ପର୍କରେ ଭାରତୀୟ ମନରେ ୩।୪।୫ ଭଲ ଧାରଣା ଓ ଚେକ୍ ମନରେ ୩।୪।୫।୬ ମନ୍ଦ ଧାରଣା ଥିବାରୁ ଉଭୟଙ୍କର ମତାମତର ଅମେଳ; ତେଣୁ 'କମ୍ୟୁନିଷ୍ଟ' କହିଲେ ଭାରତୀୟ ଆଗାମୀ ସୌଭାଗ୍ୟର ସ୍ଵପ୍ନରେ ଯେତିକି ବିଭୋର, ଚେକ୍‌ବାସୀ ନିଜର ବ୍ୟକ୍ତିଗତ ଅନୁଭୂତି ଯୋଗୁଁ ଭବିଷ୍ୟତର ଭୟଙ୍କର କଳ୍ପନାରେ ଶଙ୍କିତ । ତେଣୁ ଅଭିଧାନରେ ଗୋଟିଏ ଶବ୍ଦର ଅର୍ଥ ଯାହା ଦିଆଯାଇଥାଉ ପଛେ ପାରିପାର୍ଶ୍ଵିକ ଅବସ୍ଥା, ବ୍ୟକ୍ତିଗତ ଅନୁଭୂତି ଓ ଅଧ୍ୟୟନ ଯୋଗୁଁ ଏକ ଶବ୍ଦର ଅର୍ଥ ବ୍ୟକ୍ତିଭେଦରେ ଭିନ୍ନ । ରଜା, ଗଡ଼ଜାତ, ବାଘ ପ୍ରଭୃତି ଶବ୍ଦ ଉଚ୍ଚାରଣ କଲାମାତ୍ରେ ଗଡ଼ଜାତଲୋକଙ୍କ ମନରେ ଯେଉଁ ଚିତ୍ର ଜାଗ୍ରତ ହୁଏ, ଇଂରାଜ ଶାସକମାନଙ୍କ ମନରେ ସେ ଧାରଣା ଜାଗ୍ରତ ହୁଏ ନାହିଁ । ତେଣୁ ଗଡ଼ଜାତ, ପ୍ରଜା ଓ ଇଂରାଜ ଶାସକମାନଙ୍କ ଭିତରେ ମତଭେଦ, ଓ ଶେଷରେ ବିପ୍ଳବ । ଆମେ ଯେତେବେଳେ ଜଣକୁ କୌଣସି କଥା କହୁ ଓ ଆମ ମନରେ ଯଦି କୌଣସି ବିଶେଷ କଥା ଥାଏ, ଯାହା ତାଙ୍କର ବୁଝିବା ଉଚିତ, ମାତ୍ର କୌଣସି କାରଣରୁ ସେ ତାହା ବୁଝିପାରୁ ନାହାନ୍ତି, ତେବେ ଆମେ ତାଙ୍କୁ ପଚାରୁ, "ଆପଣ ମୋ କଥା ବୁଝୁଛନ୍ତି ତ ? କିମ୍ବା Do you understand what I mean ?" ଜଣେ ଜଣକୁ ସମ୍ପୂର୍ଣ୍ଣରୂପେ ବୁଝିବା ଅର୍ଥ ଜଣକ ମନରେ ଚିହ୍ନିତ ଅର୍ଥକ୍ଷେତ୍ର ଅନ୍ୟ ମନର ଅର୍ଥକ୍ଷେତ୍ର ସହିତ ସର୍ବତୋଭାବେ ସମାନ ହେବା ଦରକାର ।

ଏହି ସମ୍ପର୍କରେ ଆଉ ଗୋଟିଏ କଥା ବିଚାର କରାଯାଇପାରେ । ପୂର୍ବେ କୁହାଯାଇଛି, ଗୋଟିଏ ଶବ୍ଦର ଅନେକ ଅର୍ଥ ହୋଇପାରେ । ଉଦାହରଣ ସ୍ଵରୂପ ନିଆଯାଉ 'ଘୋଡ଼ା' । ଏହାର ଅର୍ଥ ହୋଇପାରେ—

| | | |
|---|---|---|
| ୧ । ଡିଟ୍ ଘୋଡ଼ା | ୨ । ଦଳଖିଆ ଘୋଡ଼ା | ୩ । ପାଗ। ଘୋଡ଼ା |
| ୪ । କାମୁଡ଼ା ଘୋଡ଼ା | ୫ । ବଗିଘୋଡ଼ା | ୬ । ରାଜାଙ୍କ ଘୋଡ଼ା |
| ୭ । ... | ୮ । ... | ୯ । ... |

ଗୋଟିଏ ଶବ୍ଦର ଅନେକ ଅର୍ଥ ଥିଲେ ମଧ୍ୟ ବକ୍ତା ଶ୍ରୋତାଙ୍କ କଥାବାର୍ତ୍ତାବେଳେ ସେମାନଙ୍କ ମନରେ କେବଳ ଗୋଟିଏ ଅର୍ଥ ଅଙ୍କୁରିତ ହୁଏ ଓ ଅନ୍ୟଗୁଡ଼ିକ ସୁପ୍ତ ଅବସ୍ଥାରେ ରହିଥାନ୍ତି । ଏହି ଅବସ୍ଥାକୁ ଚିତ୍ରଦ୍ୱାରା ସାଂକେତିତ କଲେ ଏହିପରି ହେବ ।




କ୍ଷେତ୍ର ମଧ୍ୟରେ ଘୋଡ଼ା ଶବ୍ଦର ସମସ୍ତ ଅର୍ଥ ଅଛି; ମାତ୍ର ବଗିଘୋଡ଼ା କହିବାମାତ୍ରେ ଅର୍ଥକ୍ଷେତ୍ରର ଗୋଟିଏ ଅଂଶ ଉଭୟଙ୍କ ମନରେ ଆଲୋକିତ ହୋଇଉଠୁଛି, ଯେମିତି କାମେରା ଭିତରେ ଦଶ ବାରୋଟି ଚିତ୍ର ପାଇଁ ଫିଲ୍ମ ଥିଲେ ମଧ୍ୟ ଯେଉଁ ଗୋଟିକରେ ଚିତ୍ର ଉଠାଇବା କଥା, ସେହି ଗୋଟିକ କେବଳ ଆଲୋକିତ କରାଯାଇଥାଏ ।

ଏହି ସମସ୍ତ ଆଲୋଚନାରୁ ଏତିକ ବୁଝିବା ଉଚିତ ଯେ, କୌଣସି ଶବ୍ଦର ଅର୍ଥ ଗାଣିତିକ ଅର୍ଥରେ ଅର୍ଥାତ୍ $୨ \times ୨ = ୪$ ପରି ସର୍ବଦା ସ୍ଥିର ନୁହେ । ଏହାର ଆକୁଞ୍ଚନ, ପ୍ରସାରଣ, ପରିବର୍ତ୍ତନ, ପରିବର୍ଦ୍ଧନ ବରାବର ଲାଗିରହିଛି । ଶବ୍ଦର ଅର୍ଥ ସବୁ ଦିନେ ସମାନ ନୁହେ । ନିମ୍ନଲିଖିତ ଉଦାହରଣରୁ ତାହା ସ୍ପଷ୍ଟ ପ୍ରତୀତ ହେବ ।

| ଶବ୍ଦ | ପୁରାତନ ଅର୍ଥ | ବର୍ତ୍ତମାନ ଅର୍ଥ |
|---|---|---|
| ଅହି | ମେଘ | ସାପ |
| ବିପ୍ର | ବୁଦ୍ଧିମାନ୍ | ବ୍ରାହ୍ମଣ |
| ବନ୍ୟା | ବନସମୂହ | ପ୍ଲାବନ |
| marshal | ଘୋଡ଼ା ସଇସ | ସେନାପତି |
| garage | ଗୋଦାମ | ମଟର ରଖିବାର ସ୍ଥାନ |
| silly | ନିର୍ବାହ | ବୋକା |

କେବଳ ଯେ ସମୟଭେଦରେ ଅପ୍ରତ୍ୟକ୍ଷଭାବରେ ଅର୍ଥର ପରିବର୍ତ୍ତନ ହୋଇଯାଏ ତାହା ନୁହେଁ, ସ୍ଥାନଭେଦରେ ମଧ୍ୟ ଗୋଟିଏ ଶବ୍ଦ ଏକ ସମୟରେ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହୃତ ହୁଏ । ଗୋଟିଏ ଶବ୍ଦକୁ ଆମେରିକାରେ ଯେଉଁ ଅର୍ଥରେ ବ୍ୟବହୃତ କରାଯାଏ, ଇଂଲଣ୍ଡରେ ସେହି ଅର୍ଥରେ ବ୍ୟବହାର କରାଯାଏ ନାହିଁ । ସମ୍ବଲପୁରରେ କେତେକ ଶବ୍ଦ ଯେଉଁ ଅର୍ଥରେ ବ୍ୟବହୃତ ହୁଏ, କଟକରେ ତା ଭିନ୍ନ ଅର୍ଥରେ ବ୍ୟବହୃତ ହୁଏ । ଆମେରିକାର ନୂତନ ଅର୍ଥ ବ୍ୟବହାରରେ ସର୍ବଦା ନୂତନ ପକ୍ଷପାତୀ ମନର ପରିଚୟ ମିଳେ—ନୂତନ ସୃଷ୍ଟି କରିବା ଓ ଅନ୍ୟମାନଙ୍କଠାରୁ ଭିନ୍ନ ଦେଖାଯିବା ବୋଧହୁଏ ଆମେରିକା ଜୀବନର ଦର୍ଶନ । ଏକ ସମୟରେ ଦୁଇ ସ୍ଥାନରେ ବ୍ୟବହୃତ ଅଥଚ ଅର୍ଥରେ ତଫାତ ଏହିପରି କେତୋଟି ଉଦାହରଣ ନିଆଯାଉ—

| ଶବ୍ଦ | ଆମେରିକାନ୍ ଅର୍ଥ | ଇଂରାଜୀ ଅର୍ଥ | ଆମ ଅର୍ଥ |
|---|---|---|---|
| Corn | ମକା | ଶସ୍ୟ | ଶସ୍ୟ |
| date | ଅଭିସାର ଦିନ | ତାରିଖ | ତାରିଖ |
| kidding | ଥଟ୍ଟା କରିବା | ଛେଳିଛୁଆ ଜନ୍ମ କରିବା | |

| | ସମ୍ବଲପୁରୀ | କଟକୀ |
|---|---|---|
| ଛେନା | ଗଡ଼ି | ଛେନା |
| ଧୋକା | ପବନ | ଦାଉ |
| ଗୃହଦେବା | କାମୁଡ଼ିଦେବା | ତାଲି ପକାଇବା |
| ଗେଜେଟ | ଖବରକାଗଜ | ସରକାର ପ୍ରକାଶିତ ଗେଜେଟ |

ଆମେରିକା ଇଂଲଣ୍ଡରୁ ସାଢ଼େ ତିନ ହଜାର ମାଇଲ; ମାତ୍ର ସମ୍ବଲପୁର କଟକରୁ ଦୁଇଶ ମାଇଲର କଥା । ତଥାପି ନାନା ଭୌଗୋଳିକ କାରଣରୁ ସମ୍ବଲପୁର ଭାଷା ଏକ ସ୍ୱତନ୍ତ୍ର ବଳିଷ୍ଠ ଉପଭାଷାରେ ପରିଣତ ହୋଇଛି, ଯା ଫଳରେ ଏତେ ଅଳ୍ପ ଦୂରରେ ଅର୍ଥ ପରିବର୍ତ୍ତନ ସହଜରେ ଘଟୁଛି ।

ସାମାଜିକ ପରିବର୍ତ୍ତନ ସଙ୍ଗେ ଶବ୍ଦମାନଙ୍କର ଉନ୍ନତ ଅବନତ ବରାବର ଚାଲିଛି । ଭାରତୀୟ ସ୍ୱାଧୀନତା ପର୍ଯ୍ୟନ୍ତ ମନୁଷ୍ୟସମାଜରେ ସବୁଠାରୁ ବଡ଼ ଆସନ ଥିଲା ରଜାଙ୍କର । ତେଣୁ ମନ୍ତ୍ରୀ କହିଲେ ରଜାଙ୍କର ତଳପାହିଆ କୌଣସି କର୍ମଚାରୀଙ୍କୁ ବୁଝାଉଥିଲା; କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ରାଜତନ୍ତ୍ର ଲୋପ ପରେ ଜନନାୟକ ଓ ଜାତିର କର୍ଣ୍ଣଧାର ହେଲେ ମନ୍ତ୍ରୀ । ପଦମର୍ଯ୍ୟାଦା ବଜାୟ ରଖିବା ପାଇଁ ରଜାମାନେ ଏବେ ହେଉଛନ୍ତି ମନ୍ତ୍ରୀ । ମନ୍ତ୍ରୀ ଶବ୍ଦର ଅର୍ଥଗତ ମୂଲ୍ୟ ବର୍ତ୍ତମାନ ଅଧିକ । ରାଜତନ୍ତ୍ର ଅଳ୍ପ ଦିନ ହେଲା ଲୋପ ହୋଇଛି ବୋଲି 'ରଜା' 'ମନ୍ତ୍ରୀ' ଦୁଇ ଶବ୍ଦର ଆପେକ୍ଷିକ ମୂଲ୍ୟ ଏପର୍ଯ୍ୟନ୍ତ ସ୍ପଷ୍ଟ ହୋଇନି । ମାତ୍ର ଆଜିଠୁଁ କେତେ ବର୍ଷ ଭିତରେ ରାଜତନ୍ତ୍ରର ମାହାତ୍ମ୍ୟ ଲୋକେ ଯେତେବେଳେ ସମ୍ପୂର୍ଣ୍ଣ ଭୁଲିଯିବେ, ସେତେବେଳେ 'ମନ୍ତ୍ରୀ' ଶବ୍ଦ ଅର୍ଥଗତ ଉନ୍ନତିର ଚରମ ସୀମାରେ ପହଞ୍ଚିବ । ହୁଏତ ଆଜି 'ଜମିଦାର' କହିଲେ ଯେମିତି ଏକ କ୍ଲେଦଜ ଅକଳଙ୍କିତ ଶବ୍ଦକୁ ବୁଝାଯାଉଛି, 'ରଜା' ଶବ୍ଦ ସେହି ସ୍ତରକୁ ଖସିଆସିବ । ସମାଜବିତ୍‌ମାନେ ଏହି ଶବ୍ଦମାନଙ୍କ ଜରିଆରେ ସାମାଜିକ ଅବସ୍ଥା ନିର୍ଣ୍ଣୟ କରିବେ । ଏହି ପରିବର୍ତ୍ତିତ ପରିସ୍ଥିତିରେ 'ରାଜା' ଶବ୍ଦର ଅବନତି ସଙ୍ଗେ ସେହି ବର୍ଗୀୟ 'ଧନିକ' 'ମାଲିକ' ଶବ୍ଦର କାବ୍ୟିକବତା ଓ ଗଳ୍ପରେ ଘୃଣାବ୍ୟଞ୍ଜକ ଶବ୍ଦ ରୂପେ ବ୍ୟବହୃତ ହେଉଛି । ଶତାବ୍ଦୀର ସନ୍ଧି କାଳରେ ଚିରଲାଞ୍ଛିତ ଦଳିତ ଲୋକଙ୍କର ଜାଗରଣରେ ଧନିକ ଓ ମାଲିକମାନଙ୍କର ଅପମାନ କରାଯାଉଛି । ଏହା ସ୍ୱାଭାବିକ କଥା । ଏହି ଦୃଷ୍ଟିରୁ 'ପଣ୍ଡିତ' ଶବ୍ଦର ବିଚାର କରାଯାଇପାରେ । ପୂର୍ବେ ସଂସ୍କୃତଜ୍ଞ ପ୍ରଜ୍ଞାଶାଳୀ ବ୍ୟକ୍ତିମାନଙ୍କୁ 'ପଣ୍ଡିତ' ଉପାଧିରେ ଭୂଷିତ କରାଯାଉଥିଲା; ମାତ୍ର କାଳକ୍ରମେ ଯେଉଁମାନେ ସଂସ୍କୃତ ବିଦ୍ୟା ହାସଲ କଲେ, ସେମାନେ ପାଶ୍ଚାତ୍ୟ ସଭ୍ୟତାର ନୂତନ ଆଲୋକରୁ ବଞ୍ଚିତ ହୋଇ ଆଧୁନିକତା ସହିତ ପାଦ ପକାଇ ଚାଲି ନ ପାରି ସମାଜରେ ପଛରେ ପଡ଼ିଗଲେ । ତେଣୁ ଆଜି ପଣ୍ଡିତ କହିଲେ ଦେଶକାଳଜ୍ଞାନରହିତ ଏକ କିମ୍ଭୂତକିମାକାର ଜୀବଙ୍କୁ ବୁଝାଏ । ଏହି ଶବ୍ଦର ପତନ ଏତେଦୂର ହୋଇଯାଇଛି ଯେ ଭାରତର

ପ୍ରଧାନମନ୍ତ୍ରୀ ପଣ୍ଡିତ ଉପାଧିଭୂଷିତ ହେଲେ ମଧ୍ୟ 'ପଣ୍ଡିତ' ଶବ୍ଦ ପୁନରୁଜ୍ଜୀବିତ ହୋଇପାରୁ ନାହିଁ ।

କେତେକ ଶବ୍ଦ ଓ ବାକ୍ୟାଂଶର ଅନେକ ଅର୍ଥ ହୋଇପାରେ; ମାତ୍ର ବ୍ୟବହାର ଫଳରେ ସେମାନଙ୍କର ଅର୍ଥ କେବଳ ଗୋଟିଏ ଦୁଇଟି ପଦାର୍ଥକୁ ବୁଝାଏ; ଯଥା—ଅନ୍ନ । ଅଦ୍ ଧାତୁରୁ ନିଷ୍ପନ୍ନ ଏହି ଶବ୍ଦ ଯେ କୌଣସି ଭୋଜନ ଦ୍ରବ୍ୟକୁ ବୁଝାଇବାର କଥା । ମାତ୍ର ଆମ ଭୋଜନପ୍ରଣାଳୀରେ ଭାତର ପ୍ରାଧାନ୍ୟ ସବୁଠୁଁ ବେଶୀ ବୋଲି ବୋଧହୁଏ ଆମ ପାଇଁ ଅନ୍ନର ଅର୍ଥ ଭାତ । 'ଅଭିଷେକ'ର ଅର୍ଥ ସ୍ନାନ; ମାତ୍ର ଯେ କୌଣସି ଲୋକ ଯେ କୌଣସି ସ୍ଥାନରେ ସ୍ନାନ କଲେ ତାକୁ ଅଭିଷେକ କୁହାଯାଏ ନାହିଁ । ରାଜପୁତ୍ରଙ୍କର ସିଂହାସନ ଆରୋହଣପୂର୍ବ ମନ୍ତ୍ରପୂତ ସ୍ନାନକୁ 'ଅଭିଷେକ' କୁହାଯାଏ । କାଳିଦାସ ଏହିପରି 'ସମୁଦ୍ରନେମି', 'ବୈଦେହୀବନ୍ଧୁ' ପ୍ରଭୃତି ଯଥାକ୍ରମେ 'ପୃଥିବୀ' ଓ 'ରାମଚନ୍ଦ୍ର'ଙ୍କ ଅର୍ଥରେ ବ୍ୟବହୃତ କରିଛନ୍ତି, ଯଦିଓ ସୀତାଙ୍କର ଯେ କୌଣସି ବନ୍ଧୁ ମଧ୍ୟ ବୈଦେହୀବନ୍ଧୁ ହୋଇପାରିଥାନ୍ତେ । ଯେ କୌଣସି ଭାଷାରେ ଏ ପ୍ରକାର ରୂଢ଼ି ପ୍ରୟୋଗ ପ୍ରଚଳିତ ହୁଏ । ଏହି ପ୍ରକାର ଆହୁରି ଅନେକ ଓଡ଼ିଆ ଶବ୍ଦର ଉଦାହରଣ ଦିଆଯାଇପାରେ । ଯଥା :—ଜଳଜ, ଜଳଦ, କଣ୍ଟା, କେଶରୀ ଏହିପରି ଅନେକ । ଜଳଜ ଅର୍ଥ ଚିଙ୍ଗୁଡ଼ିଆ ଦଳ ବା ଗେଣ୍ଡା ନ ହୋଇ ପଦ୍ମ ହୋଇଛି କାହିଁକି ? ରୂଢ଼ି ପ୍ରୟୋଗ ପାଇଁ ।

ଯେତେବେଳେ ଗୋଟିଏ ଶବ୍ଦ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ପଦାର୍ଥକୁ ନ ବୁଝାଇ ଗୋଟିଏ ଶ୍ରେଣୀକୁ ବୁଝାଏ, ସେତେବେଳେ ସେହି ଶବ୍ଦର ଅର୍ଥ ସଂପ୍ରସାରିତ ହୁଏ । ଇଂରେଜୀ **box** ଶବ୍ଦର ମୌଳିକ ଅର୍ଥ **boxwood**ରେ ତିଆରି ଏକପ୍ରକାର ଆଧାର; କିନ୍ତୁ କାଳକ୍ରମେ ଲୁହା, ଚମଡ଼ା, କାଗଜ ସବୁ ପ୍ରକାର ତିଆରି ପାତ୍ରକୁ ମଧ୍ୟ **box** କୁହାଯାଉଛି । ଓଡ଼ିଆ ଭାଷାରେ ମଧ୍ୟ ଲୁହା ବାକ୍ସ, କାଠ ବାକ୍ସ,

କାଗଜ ବାକ୍ସ ପ୍ରଭୃତି ଶବ୍ଦର ବ୍ୟବହାର ଅଛି । ସଂସ୍କୃତ 'ଗୋଷ୍ଠ' ଶବ୍ଦର ଅର୍ଥ (ଗାବଃ ତିଷ୍ଠନ୍ତି ଅତ୍ର) ଗାଈଗୋଠ । ଗୋଷ୍ଠରୁ ଆସିଥିବା ଗୋଠ ଶବ୍ଦ କାଳକ୍ରମେ ଛେଳିଗୋଠ, ମଇଁଷିଗୋଠ, ଗୋଠମଣିଷ (ଦଳେ ମଣିଷ) ପ୍ରଭୃତି ଶବ୍ଦରେ ଦଳ ଅର୍ଥରେ ବ୍ୟବହୃତ ହେଉଛି । ସମ୍ବଲପୁର ଅଞ୍ଚଳରେ ଏହିପରି ଏକ କୌତୂହଳପୂର୍ଣ୍ଣ ଶବ୍ଦର ବ୍ୟବହାର ଅଛି; ଯଥା—ଗୋରସ । ଗୋରସର ଆକ୍ଷରିକ ଅର୍ଥ ଗାଈଦୁଧ; କିନ୍ତୁ କାଳକ୍ରମେ ତାହା କେବଳ ଦୁଧକୁ ବୁଝାଉଥିବାରୁ, ଲୋକେ ଛେଳିଦୁଧକୁ ଛେଳି ଗୋରସ ବୋଲି କହୁଛନ୍ତି । ସମ୍ବଲପୁର ଛଡ଼ା ବାହାର ଲୋକଙ୍କ ପାଇଁ ତାର ଅର୍ଥ ହୁଅନ୍ତା 'ଛେଳିଗାଈଦୁଧ' । ମଫସଲରେ ଲୋକେ ସ୍କୁଲକୁ ପାଠପଢ଼ିବା ସ୍ଥାନ ରୂପେ ଗ୍ରହଣ କରିଛନ୍ତି । ତେଣୁ ପାଠପଢ଼ାର ବଡ଼ କେନ୍ଦ୍ର ହିସାବରେ ସେମାନେ କଲେଜକୁ କଲେଜସ୍କୁଲ (ଅର୍ଥାତ୍ କଲେଜ ପାଠଶାଳା) ବୋଲି କହୁଛନ୍ତି । ଏହା ଫଳରେ 'ସ୍କୁଲ୍' ଶବ୍ଦର ଅର୍ଥ-ସଂପ୍ରସାରଣ ଘଟିଅଛି । ଅର୍ଥ-ସଂପ୍ରସାରଣ ପାଇଁ ପ୍ରଧାନ ତଥା ସହଜ ଉପାୟ ଶବ୍ଦର ଆଲଙ୍କାରିକ ପ୍ରୟୋଗ । ମନୁଷ୍ୟ ଭାଷାର ଅଧିକାରୀ ହେଲା ଦିନୁ ଆଜିପର୍ଯ୍ୟନ୍ତ ଏହି ସହଜ ଉପାୟ ବରାବର ବ୍ୟବହାର କରିଆସିଛି । ମନୁଷ୍ୟର ଅଙ୍ଗପ୍ରତ୍ୟଙ୍ଗ, ବୃକ୍ଷଲତା, ପଶୁପକ୍ଷୀବାଚକ ସମସ୍ତ ଶବ୍ଦ ପ୍ରାୟ ଆଲଙ୍କାରିକ ଅର୍ଥରେ ସଂପ୍ରସାରିତ ହୁଏ । ଆଳୁର ଆଖି, ଘରର ମୁହଁ, ବେଞ୍ଚର ଗୋଡ଼, ହାଣ୍ଡିର ପେଟ ପ୍ରଭୃତି ବାକ୍ୟାଂଶରେ ଆଖି, ମୁହଁ, ଗୋଡ଼, ପେଟ ଆଲଙ୍କାରିକ ଅର୍ଥରେ ବ୍ୟବହୃତ ହୋଇଛି । କାରଣ ଏଠି ଆଖିର ଦର୍ଶନଶକ୍ତି, ମୁହଁର ବଚନଶକ୍ତି, ଗୋଡ଼ର ଚଳନ ବା ପେଟର ଜୀର୍ଣ୍ଣଶକ୍ତି କୌଣସିଟି ହେଲେ କାହାରି ନାହିଁ । କେବଳ ବାହ୍ୟ ସାଦୃଶ୍ୟ ଯୋଗୁଁ ସେଗୁଡ଼ିକ ପ୍ରଯୁକ୍ତ ହୋଇଛନ୍ତି । ବୃକ୍ଷଲତାମାନଙ୍କର ବିଭିନ୍ନ ଅଙ୍ଗବାଚକ ଶବ୍ଦକୁ ମଧ୍ୟ ଏହିପରି ବ୍ୟବହାର କରାଯାଇଥାଏ; ଯଥା—କଳହର ମୂଳ, କଥାର ଅଗ, ଗଳ୍ପର ପାଖୁଡ଼ା । ଅନେକ ସମୟରେ ଆଲଙ୍କାରିକ ଅର୍ଥରେ କ୍ରିୟାମାନଙ୍କର ଅର୍ଥକୁ ବିଶେଷ ଭାବରେ ସଂପ୍ରସାରିତ କରାଯାଇଥାଏ; ଯଥା—"ହାଣ ଅମଙ୍ଗଳ" ।

"କେତେ ଯେ ଅମୀର ଜାର ବାଦସାହ କାଳସ୍ରୋତେ ଫୁଟି"

ଫୁଟିବାର ସାଧାରଣ ଅର୍ଥ କୌଣସି ଦୃଶ୍ୟମାନ, ସ୍ପୃଶ୍ୟମାନ ବସ୍ତୁକୁ ଅସ୍ତ୍ରଦ୍ୱାରା ବିଭାଗ କରିବା; ମାତ୍ର ଏଠି ଅମଙ୍ଗଳ ପରି ଗୋଟିଏ ନୈର୍ବସ୍ତୁକ ( abstract ) ଧାରଣାକୁ ଫୁଟିବା କଥା କୁହାଯାଇଛି । ସେହିପରି ଫୁଟିବା ଫୁଲର ଧର୍ମ । ଏଠି ବାଦସାହଙ୍କର ଜନ୍ମ, ମରଣ ଓ ଅବସ୍ଥାନକୁ ଆଳଙ୍କାରିକ ଅର୍ଥରେ ଫୁଟିବା କହି ଫୁଟି ଶବ୍ଦର ଅର୍ଥ—ସଂପ୍ରସାରଣ କରାଯାଇଛି । କାବ୍ୟ କବିତାରେ ଏହି ସଂପ୍ରସାରଣ ସୌନ୍ଦର୍ଯ୍ୟର ଉପାଦାନ ଯୋଗାଏ ।

ସଂପ୍ରସାରଣ ପରି ଆକୁଞ୍ଚନ ମଧ୍ୟ ପଦାର୍ଥ ପରିବର୍ତ୍ତିରେ ଆଉ ଏକ ପନ୍ଥା । ଏହା ଠିକ୍ ସଂପ୍ରସାରଣର ଓଲଟା । ଏହି ମତରେ ଯେଉଁ ଶବ୍ଦ ପ୍ରଥମ ଯେ ଗୋଟିଏ ଶ୍ରେଣୀକୁ ବୁଝାଉଥାଏ, ତାହା କାଳକ୍ରମେ ସଂକ୍ଷିପ୍ତ ହୋଇ ଗୋଟିଏ ବସ୍ତୁ ବା ବ୍ୟକ୍ତିକୁ ବୁଝାଏ । ଫରାସୀ ଭାଷାରୁ ଇଂରେଜୀକୁ ଆସିଥିବା garage ଶବ୍ଦର ଅର୍ଥ ଥିଲା ଗୋଦାମ, ଯେଉଁଠି ଯେ କୌଣସି ପଦାର୍ଥ ଗଦା କରି ରଖାଯାଇପାରେ; ମାତ୍ର ଏବେ garage କହିଲେ କେବଳ ମଟର ରହିବା ସ୍ଥାନକୁ ବୁଝାଏ । 'ଦ୍ୱିପ୍ରହର' କହିଲେ ରାତି ବା ଦିନ ଯେ କୌଣସି ଦୁଇପ୍ରହର ସମୟକୁ ବୁଝାଇବା କଥା; ମାତ୍ର ସଙ୍କୁଚିତ ଅର୍ଥରେ ବର୍ତ୍ତମାନ ଏହା କେବଳ ଦିନ ଦ୍ୱିପ୍ରହରକୁ ବୁଝାଏ । ଲାଟିନ୍ fructus ଶବ୍ଦର ଅର୍ଥ ହେଉଛି ଉପଭୋଗ କରିବା । Fructus ଶବ୍ଦରୁ ଜାତ ଇଂରେଜୀ fruit ଶବ୍ଦ ଉପଭୋଗର ନିର୍ଦ୍ଦିଷ୍ଟ ସାମଗ୍ରୀ ଫଳକୁ ବୁଝାଏ । Fructus ରେ ଉପଭୋଗର ଯେଉଁ ଅର୍ଥ ପ୍ରସୃତ ଅଛି, fruits ରେ ତାହା ସଙ୍କୁଚିତ ବା ସୀମାବଦ୍ଧ ହୋଇପଡ଼ିଛି ।

ଗୋଟିଏ ଭାଷାରେ ବ୍ୟବହୃତ ଶବ୍ଦ ବହୁକାଳ ଅବ୍ୟବହୃତ ରହି ପୁଣି ବ୍ୟବହୃତ ହେଲେ ଶବ୍ଦର ଅର୍ଥ ପରିବର୍ତ୍ତିତ ହୋଇଯାଏ ଏବଂ ଏକ ଭାଷାରୁ ଅନ୍ୟ ଭାଷାକୁ ଗଲାବେଳେ ଶବ୍ଦର ଅର୍ଥ

କେତେବେଳେ ସମ୍ପୂର୍ଣ୍ଣ ବିପରୀତ ହୋଇଯାଏ । ଫରାସୀ Buget (ମୁଣି) ଶବ୍ଦ ଇଂଲଣ୍ଡକୁ ଆସି 'ବଜେଟ'ରେ ପରିଣତ ହେଲା । ପୁଣି କିଛିକାଳ ପରେ 'ବଜେଟ' ଶବ୍ଦ ଇଂଲଣ୍ଡରୁ ଫେରିଯାଇ ଫ୍ରାନ୍ସରେ ଇଂରେଜୀ ବଜେଟ ଅର୍ଥରେ ବ୍ୟବହୃତ ହେଲା । ସଂସ୍କୃତ 'ତନ୍ଦ୍ରା' ଶବ୍ଦର ଅର୍ଥ ଘୁମ । ଘୁମ ସର୍ବଦା ଆଳସ୍ୟସୂଚକ; ମାତ୍ର ଏହି ଆଳସ୍ୟ-ସୂଚକ ଶବ୍ଦ ଓଡ଼ିଶାର ଅପରପ୍ରାନ୍ତ ସମ୍ବଲପୁରରେ ତରତର ବା ଚଞ୍ଚଳ ଅର୍ଥରେ ବ୍ୟବହୃତ ହୁଏ । ଉଦାହରଣ; ଯଥା—ବାବୁ ମୁଁ ତ କରିଦେବି; ତମେ ଏମିତି ତନ୍ଦ୍ରା ହେଲେ ହେବ ନାହିଁ । ଫ୍ରେଞ୍ଚ ଶବ୍ଦ Chemise (ସେମିଜ୍)ର ଅର୍ଥ ପୁରୁଷ ପିନ୍ଧା କାମିଜ୍ । ଫ୍ରେଞ୍ଚ ଶବ୍ଦକୁ ସେମିଜ୍ ନ କହି ଆମେ କାମିଜ୍ ବୋଲି ଉଚ୍ଚାରଣ କରୁ । ଫ୍ରେଞ୍ଚ ସେମିଜର ଅର୍ଥ ପୁରୁଷ ପିନ୍ଧା କାମିଜ୍; ମାତ୍ର ଆମ ଦେଶରେ 'ସେମିଜ୍'ର ମାନେ ହେଉଛି ସ୍ତ୍ରୀମାନଙ୍କର ବ୍ୟବହୃତ ପୋଷାକ ।

ଅନେକ ସମୟରେ ଗୋଟିଏ ଭାଷାରୁ ଆଗତ ଶବ୍ଦ ଓ ବ୍ୟାକରଣ ଅନ୍ୟ ଏକ ଭାଷାରେ ପ୍ରଚଳିତ ହୋଇ ତାର ଗୁରୁତ୍ୱ ହରାଏ । ଏପରି କି ମୌଳିକ ଅର୍ଥ ପର୍ଯ୍ୟନ୍ତ ଲୋପ ପାଇଯାଏ । ଓଡ଼ିଶାରେ ଗାଳି 'ଶଳା' ବିହାରରେ 'ଶଶୁର' । ଖୁବ୍ ଗର୍ହିତ ଭାବରେ ଗାଳିଦେଲେ ବିହାରରେ 'ତେରୀ ବେଟୀ' କରି ଗାଳିଦିଅନ୍ତି । ମାତ୍ର ଓଡ଼ିଶାରେ ମଫସଲରେ ବି 'ତେରୀ ବେଟୀ' ବାକ୍ୟାଂଶ ବ୍ୟବହୃତ ହୁଏ; କିନ୍ତୁ ବିହାରରେ 'ତେରୀ ବେଟୀ'ର ଯେ ଗୁରୁତ୍ୱ, ଓଡ଼ିଶାରେ ତାହା ନାହିଁ । କେତେକ ଅଞ୍ଚଳରେ 'ତେରୀ ବେଟୀ'କୁ ଯାହା ଇଚ୍ଛା ତାହା ଅର୍ଥରେ ଗ୍ରହଣ କରାଯାଏ । ଉଦାହରଣ, ଯଥା—ଭାଇ, ମୋତେ ସେଇଁ 'ତେରୀ ବେଟୀ' କରି ଗାଳିଦେଲା, କ'ଣ କହିବ ?

ପୂର୍ବୋକ୍ତ ଓଡ଼ିଆ ଶଳା ଶବ୍ଦ ସମ୍ପର୍କରେ ପଦେ ଅଧେ କହେ । ମନୁଷ୍ୟର ସମ୍ପର୍କ ଅନେକ—ଭାଇ, ଭଉଣୀ, ମାମୁଁ, ମାଉଁ । ମାତ୍ର କୌଣସି ଗୋଟିଏ ହେଲେ ସମ୍ବନ୍ଧସୂଚକ ଶବ୍ଦ ତ ଗାଳି ଉଦ୍ଦେଶ୍ୟରେ ବ୍ୟବହୃତ ହୁଏ ନାହିଁ । ଶଳା ସମ୍ପର୍କ ଅତି ମଧୁର, ଶଶୁର ସମ୍ପର୍କ

ଗୌରବପୂର୍ଣ୍ଣ । କିନ୍ତୁ ଏହି ଦୁଇ ସମ୍ବନ୍ଧସୂଚକ ଶବ୍ଦ ନ୍ୟୂନ ଅର୍ଥରେ କାହିଁକି ଓଡ଼ିଆ ଭାଷାରେ ବ୍ୟବହାର କରାଯାଏ, ତାହା ସମାଜତତ୍ତ୍ୱବିଦ୍‌ମାନଙ୍କର ଅନୁସନ୍ଧାନ କରିବାର କଥା । ଏପରି କି 'ଶଳା' ଓ 'ଶଶୁରପୁଅ' ଉଭୟ ଏକାର୍ଥ ହେଲେ ମଧ୍ୟ ଦ୍ୱିତୀୟ ଅପେକ୍ଷା ପ୍ରଥମଟି ଅଧିକ ତୀବ୍ର । ବୋଧହୁଏ ଭାରତୀୟ ସଂସ୍କାରରେ ପୁରୁଷ ନିକଟରେ ନାରୀର ସ୍ଥାନ ନ୍ୟୂନ ବା ଗୌଣ । ତେଣୁ ତତ୍‌ସମ୍ପର୍କୀୟ ଲୋକମାନେ ନ୍ୟୂନ ବୋଲି ଭାରତରେ ସର୍ବତ୍ର ଶାଳକ ଓ ଶ୍ୱଶୁରଙ୍କୁ ନେଇ ତାଚ୍ଛଲ୍ୟ ଭାବବ୍ୟଞ୍ଜକ ଗାଳିର ପ୍ରଚଳନ ଅଛି । ପୃଥିବୀର ଏକ ସଭ୍ୟତମ ଦେଶ ଫ୍ରାନ୍‌ସର କଥା ଧରାଯାଉ । ସେଠି ନାରୀର ସ୍ଥାନ ବହୁ ଉଚ୍ଚରେ । ନାରୀ ସମ୍ପର୍କରେ ଯେଉଁ ଶବ୍ଦ ବ୍ୟବହାର କରାଯାଇଛି, ତହିଁରୁ ଗୋଟିଏ ଦୁଇଟି ଦେଖିଲେ ସେହି ସମାଜରେ ନାରୀର ସ୍ଥାନ ସହଜରେ ଜଣାପଡ଼ିବ । ଫ୍ରାନ୍‌ସରେ ଗୃହକର୍ତ୍ରୀଙ୍କୁ କହନ୍ତି bonne; କିନ୍ତୁ bonne ର ପ୍ରକୃତ ଅର୍ଥ ସୁନ୍ଦରୀ । ଫରାସୀ ସମାଜରେ ବୋଧହୁଏ ଶଳାର ସ୍ଥାନ ଉଚ୍ଚରେ । ତେଣୁ ଫ୍ରେଞ୍ଚ ଭାଷାରେ ଶଳାକୁ କହନ୍ତି beau frere ଅର୍ଥାତ୍ ସୁନ୍ଦର ଭାଇ । ଏହିପରି ବିଭିନ୍ନ ଭାଷାର ଶବ୍ଦଭଣ୍ଡାରର ଅର୍ଥ ଅନ୍ୱେଷଣ କଲେ ସାମାଜିକ ସଂସ୍କାର ଇତିହାସ ମିଳିପାରିବ ।

ମନୁଷ୍ୟ ଅନେକ ସାର୍ଥକ କାର୍ଯ୍ୟ କଲାବେଳେ କେତେକ ନିରର୍ଥକ କାର୍ଯ୍ୟ ମଧ୍ୟ କରିବାକୁ ବାଧ୍ୟ ହୁଏ । ଅନେକ ସମୟରେ ସୌନ୍ଦର୍ଯ୍ୟର ଅଭିବୃଦ୍ଧି ବା ଶୂନ୍ୟସ୍ଥାନ ପୂରଣ ପାଇଁ ଅଧିକା କାମ କରାଯାଇଥାଏ । ଭାଷାରେ ମଧ୍ୟ ସେହିପରି ଅଭ୍ୟାସ ଦୋଷରୁ ହେଉ ବା ଅନୁକରଣ ଦୋଷରୁ ହେଉ କିମ୍ବା ଶୂନ୍ୟସ୍ଥାନ ପୂରଣ କରିବାକୁ ହେଉ, କେତେକ ବ୍ୟବହାର କରାଯାଇଥାଏ, ଯାହାର କୌଣସି ସଠିକ ଅର୍ଥ ନାହିଁ । ଇଂରାଜୀରେ there are many trees in the fieldକୁ ଅନ୍ୟ କଥାରେ many trees are in the field ବି କୁହାଯାଇପାରେ । ତେଣୁ there ର କୌଣସି ଅର୍ଥଗତ ଆବଶ୍ୟକତା ଅଛି ବୋଲି

ମନେହୁଏ ନାହିଁ; ମାତ୍ର ଯୁଗ ଯୁଗ ଧରି ଏହି ବ୍ୟବହାରଗତ ଅଭ୍ୟାସ ଚାଲିଆସିଛି । ସଂସ୍କୃତରେ ଏହିପରି 'ଏବଂ, ଚ, କିଲ' ନିରର୍ଥକ ବାକ୍ୟାଂଶ ଅନେକ ଦେଖାଯାଏ । ଓଡ଼ିଆରେ ଆମେ ବି ଅନେକ ସମୟରେ ଏଥା ବ୍ୟବହାର କରୁ; ଯଥା—ମାଛ ଫାଛ ମୁଁ ଖାଏ ନାହିଁ ।

କେତେକ ଶବ୍ଦ ଏକା ଏକା ଯେଉଁ ଅର୍ଥ ପ୍ରକାଶ କରନ୍ତି, କୌଣସି ବାକ୍ୟାଂଶରେ ଅନ୍ତର୍ଗତ ହେଲେ ତାଠୁ ସ୍ୱତନ୍ତ୍ର ଅର୍ଥ ପ୍ରକାଶ କରନ୍ତି । ଅନ୍ୟର ସମ୍ପର୍କରୁ ସେମାନେ ଅର୍ଥମୂଲ୍ୟ ଗ୍ରହଣ କରନ୍ତି; ଯଥା— 'ଷ'ର କୌଣସି ବିଶିଷ୍ଟ ଅର୍ଥ ନାହିଁ । କିନ୍ତୁ ବାକ୍ୟାଂଶର ଅନ୍ତର୍ଗତ ହେଲେ 'ଷ'ର ଅର୍ଥ ହୁଏ; ଯଥା—"ହି ନା ଷ" । ସେହିପରି ଅନ୍ୟାନ୍ୟ ବାକ୍ୟାଂଶ 'ଯା ନା ନଣନ୍ଦ', 'ହୁଁ ନା କୁଁ' ଇତ୍ୟାଦି ଇଂରାଜୀରେ hold your tongue ର କୌଣସି ଆକ୍ଷରିକ ଅର୍ଥ ହୋଇପାରେ ନା; କିନ୍ତୁ ସମସ୍ତ ବାକ୍ୟାଂଶର ଅର୍ଥ 'ଚୁପରହ' ।

ପୂର୍ବେ କୁହାଯାଇଛି, ପ୍ରତ୍ୟେକ ଶବ୍ଦର ଆକ୍ଷରିକ ଅର୍ଥ ଆମେ ବ୍ୟବହାର କରୁ ନାହିଁ । ଅଭିଧାନପ୍ରଦତ୍ତ ଅର୍ଥ ଚୂଡ଼ାନ୍ତ ବା ଶେଷ ଅର୍ଥ ନୁହେ । ଅର୍ଥର ପରିବର୍ତ୍ତନ, ଆକୁଞ୍ଚନ, ସମ୍ପ୍ରସାରଣ ପ୍ରବୃତ୍ତି ଆମେମାନେ ଦେଖିପାରିଛେ । ଭାଷାତତ୍ତ୍ୱବିତ୍‌ମାନଙ୍କର ଆଧୁନିକ ମତ ଯେ ସବୁପ୍ରକାର ଅର୍ଥ ବିଚାର Context of situation ବା ପାରିପାର୍ଶ୍ୱିକ ଅବସ୍ଥା ଉପରେ ନିର୍ଭର କରେ । Context of situation କହିଲେ ନିମ୍ନଲିଖିତ ବିଷୟଗୁଡ଼ିକ ବିଚାର କରିବାର କଥା ।

(କ) କିଏ କହୁଛି ଓ କାହାକୁ ?

(ଖ) କେଉଁ ଦେଶ, କେଉଁ କାଳ ଓ କେଉଁ ଘଟଣାରେ କୁହାଯାଉଛି ?

(ଗ) ଅଭିବ୍ୟକ୍ତି ପାଇଁ କି ପ୍ରକାର ଉପାୟ ଅବଲମ୍ବନ କରାଯାଇଛି ? କଥିତ ଭାଷା, ଲିଖିତ ଭାଷା, ମୁଦ୍ରା, ଠାର ବା ଅନ୍ୟ କିଛି ?

ଗୋଟିଏ ନିତାନ୍ତ ସାଧାରଣ ଶବ୍ଦର ଅର୍ଥ ବିଚାର କରାଯାଉ; ଯଥା—ଖାଉଛି । ଅଭିଧାନ ଆଡ଼େଇଲେ ଦନ୍ତ, ଜିହ୍ୱା, ଓଷ୍ଠ ପ୍ରଭୃତି

ଶ୍ରବଣଦ୍ୱାରା ଚର୍ବଣ ଓ ଗଳାଧଃକରଣ କାର୍ଯ୍ୟର ସୂଚନା ମିଳିବ; ମାତ୍ର ନିମ୍ନଲିଖିତ ଉଦାହରଣମାନଙ୍କରେ ଏହି ଅଭିଧାନ ଅର୍ଥ କାର୍ଯ୍ୟକାରୀ ହୋଇପାରିବ ନାହିଁ, ଏହା ସହଜେ ପ୍ରତିପନ୍ନ ହେବ ।

## ଉଦାହରଣ

(କ) ସେ ମନେ ମନେ ପାନ ଖାଉଛି ।

(ଖ) ଏହି ଥର ପୁଅ ଖାଇବ ଯେ !

(ଗ) ସେ ଭିତର ଆଦର ଖାଉଛି । ଏହି ଉଦାହରଣମାନଙ୍କରେ 'ଖାଇବା'ର ଅର୍ଥ ସ୍ୱତନ୍ତ୍ର । ତେଣୁ କିଏ କାହାକୁ କେଉଁ ଅବସ୍ଥାରେ କହୁଛି ବିଚାରକରି ପ୍ରୟୋଗ କଲେ ଅର୍ଥ ସହଜେ ପ୍ରତିପନ୍ନ ହେବ ।

'କାଗେଜି' ଗୋଟିଏ ଶବ୍ଦ ନିଆଯାଉ ।

(କ) ସେ ଭଲ କାଗେଜି, (ଖ) ତାର ଭଲ କାଗେଜି—କେବଳ ପାରିପାର୍ଶ୍ୱିକ ଘଟଣା ବିଚାରରୁ ଜଣାଯିବ । (କ) 'କାଗେଜି'ର ଅର୍ଥ ସେ ଭଲ କାଗଜପତ୍ର ଜାଣେ, (ଖ) କାଗେଜିର ଅର୍ଥ କାଗେଜି ଲେମ୍ବୁ ।

ଗୋଟିଏ ଇଂରାଜୀ ବାକ୍ୟର ଅର୍ଥ ବିଚାର କରାଯାଉ—

He went to dance.

(କ) ଓଡ଼ିଶାରେ ଜଣେ ଜଣକୁ ଏକଥା କହୁଛନ୍ତି ।

(ଖ) ଲଣ୍ଡନ ସହରରେ ଜଣେ ଜଣକୁ ସନ୍ଧ୍ୟା ସମୟରେ ଏକଥା କହୁଛନ୍ତି ।

(କ) ର ଅର୍ଥ ହୋଇପାରେ ଜଣେ ନାଚ ଦେଖି ଯାଇଛନ୍ତି କିମ୍ବା କୌଣସି ନାଚ ପାର୍ଟିରେ ଯୋଗଦେଇ ନୃତ୍ୟ ଦେଖାଇବାକୁ ଯାଇଛନ୍ତି; ମାତ୍ର (ଖ)ର ଅର୍ଥ କେବଳ ହୋଇପାରେ ନାଚ କରିବାକୁ ଯାଇଛନ୍ତି । ଖୁବ୍ ସମ୍ଭବତଃ ବଲ୍‌ଡାନ୍‌ସ, ଯେଉଁଠି ପୁଅ ଝିଅ ଧରାଧରି ହୋଇ ନାଚନ୍ତି । ଏଭଳି ଅର୍ଥର କାରଣ ହେଉଛି ପାରିପାର୍ଶ୍ୱିକ ଅବସ୍ଥାର ବିଚାର । ଆମ ଦେଶରେ ଝିଅ ପୁଅକୁ ଧରି ବଲ୍‌ଡାନ୍‌ସ କରିବାର ବ୍ୟବସ୍ଥା ନାହିଁ । ମାତ୍ର ଲଣ୍ଡନ ସଂସ୍କୃତିରେ ସାନ୍ଧ୍ୟ ବଲ୍‌ଡାନ୍‌ସ

ଗୋଟାଏ ସାମାଜିକ ସାନ୍ଧ୍ୟ ଉପଭୋଗ, ଲଣ୍ଡନ ଜୀବନର ନିରବଚ୍ଛିନ୍ନ ଅଙ୍ଗ । ତେଣୁ 'He went to dance'ର ଅର୍ଥ ପାରିପାର୍ଶ୍ୱିକ ଅବସ୍ଥା ଭେଦରେ ବିଭିନ୍ନଭାବରେ ବୁଝାଯାଏ । ଭାଷାରାଜ୍ୟରେ ସମୋଚ୍ଚାରଣ-ବାଚକ ଶବ୍ଦ (veriphones) ଅନେକ, ବିଶେଷତଃ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ତାହା ତ ଭରିରହିଛି; ଯଥା ଗୋଟିଏ ଶବ୍ଦ ହରି ବା ନଳିନୀ ବହୁ ଅର୍ଥରେ ବ୍ୟବହୃତ ହୁଏ । କେବଳ Context of situation ବା ପାରିପାର୍ଶ୍ୱିକ ଅବସ୍ଥା ବିଗୁରରୁ ସେପରି ଶବ୍ଦମାନଙ୍କର ଅର୍ଥ ପ୍ରତିପନ୍ନ ହୋଇଥାଏ । ଇଂରାଜୀରେ ଅନେକଗୁଡ଼ିଏ ଶବ୍ଦ ସମାନ ଉଚ୍ଚାରଣ-ବାଚକ; ଯଥା—right, rite, write, wright । ଏମାନଙ୍କର ଅର୍ଥ ବୁଝିବାକୁ ହେଲେ ବିଭିନ୍ନ ପାରିପାର୍ଶ୍ୱିକ ଅବସ୍ଥାରେ ସେମାନଙ୍କର ବିଗୁର କରିବାକୁ ହେବ । ଯେ କୌଣସି ମନ୍ଦ ବାକ୍ୟ ବା ବାକ୍ୟାଂଶର ସମ୍ପୂର୍ଣ୍ଣ ଅର୍ଥ ଗ୍ରହଣ କରିବା ପାଇଁ Context of situation ପ୍ରଣାଳୀ ପ୍ରଶସ୍ତ ଅଟେ । ଆଉ ଗୋଟିଏ ଉଦାହରଣ ନିଆଯାଉ, ଯହିଁରେ ପୂର୍ବାପର ସମ୍ପର୍କ ବିଗୁର ନ କରି ତାକୁ ବୁଝିବାକୁ ଚେଷ୍ଟାକଲେ କି ପ୍ରକାର ବିପତ୍ତିର ସମ୍ମୁଖୀନ ହେବାକୁ ହେବ ଦେଖିପାରିବା ।

ପ୍ରିୟ ପ୍ରଜାବୃନ୍ଦ,

ତୁମ୍ଭେମାନେ ରାଜ୍ୟଶାସନର ପ୍ରକୃତ ଉଦ୍ଦେଶ୍ୟ ଏବଂ ଗତି ବୁଝି ନ ପାରି ଅଯଥା ସନ୍ଦେହ ଓ ଭୟ କରି କେତେକ ଗଣ୍ଡଗୋଳିଆ ଲୋକଙ୍କ କଥାରେ ଅପଥରେ ଗୃଲୁଅଛ । ଏହାଦ୍ୱାରା ରାଜା ପ୍ରଜା ମଧ୍ୟରେ ସାକ୍ଷାତ ସମ୍ବନ୍ଧ ରହୁ ନ ଥିବାରୁ ପ୍ରଜାମାନେ ତାଙ୍କର ଆନ୍ତରିକ ବାସନା ସବୁ ଜଣାଇ ପାରୁନାହାନ୍ତି ଏବଂ ଶାସନ ସମ୍ପର୍କରେ ଯେତେ ସୁବିଧା ଦିଆଗଲେ ସୁଦ୍ଧା ତାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । ଏଣୁ ଆମ୍ଭେ ତୁମ୍ଭମାନଙ୍କୁ ଜଣାଇ ଦେଉଅଛୁ କି ଆସନ୍ତା ତା ୧୬ । ୧୦ । ୩୮ ବୁଧବାର ଦିନ ତୁମ୍ଭେମାନେ ପ୍ରତ୍ୟେକ ଗ୍ରାମରୁ ଦୁଇ ଜଣ ଲେଖାଏ ପ୍ରବୀଣ ଏବଂ ବିଜ୍ଞ ପ୍ରତିନିଧି ପଠାଇବ, ଯେଉଁମାନଙ୍କୁ ନେଇ ଆମ୍ଭେ ତୁମ୍ଭ-ମାନଙ୍କର ଅନ୍ୟାନ୍ୟ ଯାହା ଆପତ୍ତି ଓ ଅସୁବିଧା ଥିବ ସେ ବିଷୟରେ

ସଙ୍ଗେ ସଙ୍ଗେ ସୁବିଚାର କରି ସମସ୍ତ ସୁବିଧା କରିଦେବୁ । ଏହି ବିଷୟଟି ମଧ୍ୟରେ ପ୍ରଜାମାନେ କୌଣସି ଗଣ୍ଡଗୋଳ କରିବା ପାଇଁ ଚେଷ୍ଟା କରିବେ ନାହିଁ । ଯେଉଁ ପ୍ରଜାମାନେ ଭ୍ରମରେ ପଡ଼ି ଏପର୍ଯ୍ୟନ୍ତ ଆନ୍ଦୋଳନରେ ଯୋଗ ଦେଇଛନ୍ତି, ସେମାନେ ଯେବେ ବର୍ତ୍ତମାନଠାରୁ ଆଉ କିଛି ନ କରନ୍ତି, ସେମାନଙ୍କୁ ପୁତ୍ର ଦୃଷ୍ଟିରେ ପୂର୍ଣ୍ଣ କ୍ଷମା ଦିଆଯିବ ।

୬ । ୧୦ । ୩୮ }

ଉପରଲିଖିତ ଚିଠିର ବିଶ୍ଳେଷଣ—
ସ୍ଥାନ—ଏକ ଗଡ଼ଜାତ ।
ସମୟ ଓ ଅବସ୍ଥା—୧୯୩୮, ଦେଶବ୍ୟାପୀ ଆନ୍ଦୋଳନର ଇଙ୍ଗିତ। ଶୋଷଣ, ନିଷ୍ପେଷଣର ଚରମ ପରିଣତି—ପ୍ରଜା ଆନ୍ଦୋଳନ ।
ରାଜା-ପ୍ରଜା ସମ୍ପର୍କ ଭୀଷଣ ଭାବରେ ତିକ୍ତ ।
ସ୍ଥାନୀୟ ନେତାମାନଙ୍କ ନିର୍ଦ୍ଦେଶରେ ପରିଚାଳିତ ପ୍ରଜା ଆନ୍ଦୋଳନ ।
ପ୍ରଜାଙ୍କୁ ହାତ କରିବା ପାଇଁ କର୍ତ୍ତୃପକ୍ଷଙ୍କ ଚେଷ୍ଟା ।
ଲେଖକ—କର୍ତ୍ତୃପକ୍ଷ ।
ଯାହା ପାଇଁ ଲିଖିତ—ପ୍ରଜାବୃନ୍ଦ ।
ଲକ୍ଷ୍ୟ କରିବା ପାଇଁ ସ୍ୱତନ୍ତ୍ର ଶବ୍ଦ— ଗଣ୍ଡଗୋଳିଆ
ଅପଥ
ସାକ୍ଷାତ ସମ୍ବନ୍ଧ
ସୁବିଚାର କରି
ପୁତ୍ର ଦୃଷ୍ଟିରେ

ଯଦି ଉପରୋକ୍ତ ପତ୍ରକୁ କେହି ଗଣତନ୍ତ୍ରପ୍ରେମୀ ବିଦେଶୀ ପଢ଼ନ୍ତି ଓ ଉପରୋକ୍ତ ବିଶିଷ୍ଟ ଅର୍ଥ ନ ଜାଣିଥାନ୍ତି, ତେବେ କର୍ତ୍ତୃପକ୍ଷଙ୍କୁ ସେ ଯେତିକି ସମର୍ଥନ କରିବେ, ପ୍ରଜାମାନଙ୍କୁ ସେତିକି ଅସମର୍ଥନ କରିବେ । ଉପରୋକ୍ତ 'ଗଣ୍ଡଗୋଳିଆ', 'ଅପଥ' ପ୍ରଭୃତି ସ୍ୱତନ୍ତ୍ର ଅର୍ଥବିଶିଷ୍ଟ ଶବ୍ଦକୁ ସେ ପ୍ରଚଳିତ ଅର୍ଥରେ ଗ୍ରହଣ କରିବେ; ମାତ୍ର ଗଡ଼ଜାତର

କୌଣସି ନିର୍ଯ୍ୟାତିତ ଲୋକ ପକ୍ଷରେ ପଦଟି ସମ୍ପୂର୍ଣ୍ଣ ହାସ୍ୟୋଦ୍ଦୀପକ । ପ୍ରଜାମାନଙ୍କ ପକ୍ଷରେ 'ଗଣ୍ଡଗୋଳିଆ' ଅର୍ଥ ପ୍ରକୃତ ପଥପ୍ରଦର୍ଶକ, 'ଅପଥ' ଅର୍ଥ ସୁପଥ ଏବଂ 'ପୁନଦୃଷ୍ଟିରେ' ଏକ ନିରର୍ଥକ ହାସ୍ୟୋଦ୍ଦୀପକ ବାକ୍ୟାଂଶ । ହୁଏତ ଏ ପ୍ରକାର ପତ୍ର ପଢ଼ି ପଢ଼ି ଭୁକ୍ତଭୋଗୀ ପ୍ରଜାର ରକ୍ତ ଗରମ ହୋଇପାରେ । ମିଥ୍ୟା ଆବରଣ ତଳେ ସ୍ନେହମମତାର ଯେଉଁ ସୂଚନା ଦିଆଯାଇଛି, ତା ଆଖିରେ ଧୂଳି ପକାଇବା ଛଡ଼ା ଅନ୍ୟ କିଛି ନୁହେ । ସୁତରାଂ ଏଥିରୁ ସ୍ପଷ୍ଟ ବୁଝାଯିବ ଯେ ପାରିପାର୍ଶ୍ୱିକ ଅବସ୍ଥା ନ ଜାଣି କୌଣସି ପ୍ରକୃତ ଅର୍ଥ ଜାଣିବା ବଡ଼ କଠିନ । ଦେଶକାଳପାତ୍ରଭେଦରେ ଦୁଇ ଭିନ୍ନ ପାଠକଙ୍କ ପାଇଁ ଅର୍ଥରେ ତାଳ-ଢଳ ପ୍ରଭେଦ ହୋଇପାରେ ।

ଅର୍ଥ ସମ୍ବନ୍ଧିତ ଅନୁବାଦ ବିଶେଷ ଭାବରେ ସମ୍ପୃକ୍ତ । ଆମ ଦେଶରେ ବର୍ତ୍ତମାନ ଅନୁବାଦ ସାହିତ୍ୟର ଆବଶ୍ୟକତା ଖୁବ ବେଶୀ । କୌଣସି ବିଦେଶୀ ଭାଷାରୁ ନିଜ ଭାଷାକୁ ଅନୁବାଦ କଲାବେଳେ କେବଳ ଅଭିଧାନ ଅର୍ଥ ଉପରେ ଆଖି ରଖି କାର୍ଯ୍ୟ କଲେ ଅନୁବାଦ ଅସମ୍ଭବ ହୋଇ-ପଡ଼ିବ । ପ୍ରକୃତ ଅନୁବାଦ କରିବା ପାଇଁ ଶବ୍ଦର ପ୍ରୟୋଗଜନିତ ପ୍ରକୃତ ଅର୍ଥ ଜାଣିବା ନିତାନ୍ତ ଆବଶ୍ୟକ । ସେଥିପାଇଁ ସେମାଣ୍ଟିକ୍ ସାଇନ୍ସ ଅର୍ଥାତ୍ ଅର୍ଥବିଜ୍ଞାନ ପ୍ରଧାନ ସହାୟ ।

---

# ବନାନ ବିଭ୍ରାଟ

ଅନପାଳ

ତା ୮-୮-୬୩

ଜୋସ୍ନା ।

ତୋ ସାସୁ ଯେଉଁ ସାଗ ପଠାଇ ଥିଲେ ସତରେ ଭରି ସୁଆଦ । ସେ ଜଦି କାଲି ଆସନ୍ତି, ତେବେ ମୁଁ ତାଙ୍କ ସାଥିରେ ତୋ ଘରକୁ ଯିବ । ଏତକ୍କବେଳେ ଗଲେ ତମ ପୋଖରୀରୁ ବଡ଼ିଆ ମାଛ ମିଳନ୍ତା । ଜଦୁ ଓ ଜାମିନି ଜଦି ଯିବାକୁ ଗୃହାନ୍ତି ତେବେ ସେମାନଙ୍କୁ ବି ଶାଙ୍ଗରେ ନେଇଯିବ । ସୁଶମା ତ ନିଶ୍ଚୟ ଯିବ । ଟିକିଏ ଲକ୍ଷ୍ୟ ରଖିଥିବୁ, ହୁଏତ ପାଞ୍ଚଟା ବେଳେ କାଲି ଆମେ ପହଞ୍ଚିପାରୁଁ । ତୋର ସେ ଯେଉଁ କଟକ· · ·ସେ କେମିତି ଅଛନ୍ତି ? ଆଉ ଆଉ ସବୁ ସାକ୍ଷାତରେ ।

ତୋର ରାଣୀ

ଆଠରୁ ଆରମ୍ଭ କରି ଅଠର ବର୍ଷ ପର୍ଯ୍ୟନ୍ତ, ନିମ୍ନ ପ୍ରାଥମିକରୁ ଆରମ୍ଭ କରି ନବମ ଶ୍ରେଣୀ ପର୍ଯ୍ୟନ୍ତ ଛ’ଜଣ ଛାତ୍ରୀଙ୍କୁ ଶ୍ରୁତଲିଖନ ପରୀକ୍ଷା ପାଇଁ ଉପରୋକ୍ତ ପଦ୍ଧତି ଦେଇ ଦେଖାଗଲା, ମାତ୍ର ଷୋଳଟି ଭୁଲ୍ ହୋଇଛି । ଏହି ହେଲା ବନାନ ବିଭ୍ରାଟ, ଏହି ହେଲା ବିଷମ ସମସ୍ୟା । ଚିଠିଟି ଏତେ ସରଳ । ଶାଗ ମାଛ ନେଇ ଲେଖା ! ଅଥଚ ଏହି ସାମାନ୍ୟ କଥାକୁ ଲେଖିବାକୁ ଯାଇ ମାଟ୍ରିକୁ୍ୟଲେସନ ଛାତ୍ରୀ ଷୋଳଟି ବନାଶୁଦ୍ଧି କରିଛନ୍ତି । ସାହିତ୍ୟପତ୍ର ପରୀକ୍ଷା ଦେଇ ବି. ଏ. ଛାତ୍ରୀ ବିଶାଶହେଟି ଭୁଲ୍ କରିବାରେ ବୈଚିତ୍ର୍ୟ କ’ଣ ? (ଜଣେ ବି. ଏ. ପରୀକ୍ଷକ ସହକର୍ମୀଙ୍କଠାରୁ ଏ ସମ୍ବାଦ ପ୍ରାପ୍ତ) । ଏହି ବିଭ୍ରାଟ, ଏହି ଦୁର୍ଯୋଗ କ’ଣ କେବଳ ଓଡ଼ିଆ ଜାତିର ନା, ଆଉ କାର ଅଛି ! ସୌଭାଗ୍ୟର କଥା, ଏ ବିପତ୍ତି କେବଳ ଆମର କାହିଁକି ସମସ୍ତ ଭାରତୀୟ ଭାଷାରେ କମ୍ । ଏହି ବିପତ୍ତି ଦୃଷ୍ଟିରୁ ବିଚାର କଲେ ବିଶ୍ୱର ବିଶିଷ୍ଟ ଭାଷାଗୁଡ଼ିକ ବିଶେଷଭାବରେ ଅଭିଶପ୍ତ ।-

ଉଦାହରଣ ସ୍ୱରୂପ ଫ୍ରେଞ୍ଚ ଓ ଇଂରେଜୀ ନିଆଯାଇପାରେ । ବାର୍ନାର୍ଡ ଶ ମଲାବେଳେ ତାଙ୍କ ଧନ ସମ୍ପତ୍ତି ଦେଇ ଯାଇ ନାହାନ୍ତି କୌଣସି ଉତ୍ତରାଧିକାରୀଙ୍କୁ, ପେନସିଲନ୍ କମ୍ପାନୀ ଆବେକ ଗବେଷଣା ଅନୁଷ୍ଠାନକୁ; ମାତ୍ର ଯେଉଁ ସତ୍ୟର ଅନୁସନ୍ଧାନ ପାଇଁ ସେ ଜୀବନ ସାରା ଭାବିଛନ୍ତି, ଯାହାର ଅଭାବରେ ନିଜକୁ ଓ ଜାତିକୁ ନିର୍ଯ୍ୟାତିତ ମନେ କରିଛନ୍ତି, ସେହି ଅଭିଶାପର ଅବସାନ ପାଇଁ ସେ ଦାନ କରିଛନ୍ତି ତାଙ୍କର ଯଥାସର୍ବସ୍ୱ । ସେହି ଅଭିଶାପ ହେଉଛି ଇଂରେଜୀ ଭାଷାରେ ବନାନ ବିଭ୍ରାଟ ।

ଇଂଲଣ୍ଡର ପ୍ରଥମ ଫୋନେଟିସ ଆନ୍ ହେନେରି ସ୍ୱିଟ୍‌ଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଇଂଲଣ୍ଡରେ 'ସରଳ ବନାନ ସଂସ୍କାର' ପାଇଁ ଚେଷ୍ଟା ଚାଲିଛି । ମାତ୍ର ତା ବିଶେଷ ସଫଳ ହୋଇ ପାରିନି । ଓଡ଼ିଆ ବନାନକୁ ବୈଜ୍ଞାନିକ ଦୃଷ୍ଟିରୁ ସଜାଡ଼ିବା ପାଇଁ କାଁ ଭାଁ କେଉଁଠି କେମିତି ଅନୁକୂଳ ମତ ମିଳିଛି । ମାତ୍ର କିଛି ହୋଇ ପାରିନି, କାହିଁକି ? କାରଣ ମନୁଷ୍ୟହିଁ ପ୍ରଥମେ ମନୁଷ୍ୟ । ମନୁଷ୍ୟ ଭାବପ୍ରବଣ । ମନୁଷ୍ୟ ଅଭ୍ୟାସର ଦାସ ଓ ପରିବର୍ତ୍ତନ-ପରାଙ୍ମୁଖ । ୧୫ଶହ ଖ୍ରୀଷ୍ଟାବ୍ଦରୁ ଆଜିପର୍ଯ୍ୟନ୍ତ ମନୁଷ୍ୟ ସଭ୍ୟତାକୁ ଛାପାଖାନା ବା ପ୍ରିଣ୍ଟିଂ ପ୍ରେସ ନିୟନ୍ତ୍ରିତ କରି ଆସୁଛି । କଥାକଳ ରେଡ଼ିଓ ବା ଟକିଂ ପ୍ରେସ ଏହି ବିଂଶ ଶତାବ୍ଦୀର ଶିଶୁମାତ୍ର । ତେଣୁ ତାର ପ୍ରଭାବ ଏତେ କ୍ଷୀଣ । ପାଞ୍ଚଶ ବର୍ଷ ହେଲା ମନୁଷ୍ୟ ଏକାପ୍ରକାର ଲିଖିତ ବନାନ ଦେଖି ଦେଖି ଏମିତି ପ୍ରଭାବିତ ହୋଇ ପଡ଼ିଛି ଯେ ମିଥ୍ୟାକୁ ସତ୍ୟ ବୋଲି ନିର୍ବିବାଦରେ ଗ୍ରହଣ କରି ନେଇଛି । ଦୁଇଟି ଶବ୍ଦ ଉଦାହରଣସ୍ୱରୂପ ନିଆଯାଉ । ଇଂରେଜୀ **tough** ଓ **cough** ଶବ୍ଦକୁ ଯଦି ଆମେ ବୈଜ୍ଞାନିକ ଦୃଷ୍ଟିରୁ **taf** ଓ **kaf** ବୋଲି ଲେଖୁ, ଶହ ଶହ ବର୍ଷର ଅନ୍ୟଥା ଅଭ୍ୟସ୍ତ ଆଖି ତାହା ଗ୍ରହଣ କରିବା ପାଇଁ ରାଜି ହେବ ନାହିଁ । ମଣିଷର ଆଖି ଓ ମନ ଉଭୟ ସଂସ୍କାରବଦ୍ଧ । ତା ଛଡ଼ା ଯେ କୌଣସି ନୂତନ ଆବିଷ୍କାର ଗ୍ରହଣ କରିବା ପାଇଁ ମନୁଷ୍ୟ ସର୍ବଦା ପରାଙ୍ମୁଖ । ସମାଜର ଯେ କୌଣସି ବିଭାଗରେ ଏହାର ଉଦାହରଣର ଅଭାବ ନାହିଁ ।

ଇଂଲଣ୍ଡରେ ଏପର୍ଯ୍ୟନ୍ତ ଲୋକ ଅଛନ୍ତି ଯେ ଇଲେକ୍ଟ୍ରି ଆଲୋକ ନେବାକୁ ନାରାଜ । ରାଜତନ୍ତ୍ର ରକ୍ଷା କରିବା ପାଇଁ ତ ଏ ଦେଶରେ କମ୍ ଲୋକ ଚେଷ୍ଟା କରି ନାହାନ୍ତି । କାରଣ ଅନ୍ୟ କିଛି ନୁହେଁ; କେବଳ ଅନାଗତର ଅନିଶ୍ଚିତତାଜନିତ ଭୟ । ଇଂଲଣ୍ଡର ଲୋକେ ବେଶୀ ରକ୍ଷଣଶୀଳ ବୋଲି ଯେଉଁ ସାଧାରଣ ଶବ୍ଦର ବନାନ ପରିବର୍ତ୍ତନ କରି ପାରୁନାହାନ୍ତି, ଉଦ୍‌ବେଳଯୌବନ ଆବିଷ୍କାରପ୍ରଣୟୀ ଆମେରିକାନ୍ ଜାତି ତା ସହଜରେ କରିପାରୁଛି । ଦୁଇ ତିନୋଟି ଆମେରିକାନ୍ ବନାନ ପରିବର୍ତ୍ତନର ନମୂନା ନିଆଯାଉ; ଯଥା honor (honour), thru (through), antic (antique) । ତେଣୁ ଯେଉଁ ଜାତି ଯେତେ ନୂତନ, ଯାହାର ଶିକ୍ଷା, ସଂସ୍କୃତି ଯେତେ ଅଦୂରପ୍ରସାରୀ, ନୂତନ ସଂସ୍କାର ଗ୍ରହଣ କରିବା ତା ପକ୍ଷରେ ସେତେ ସହଜ । ତରୁଣ ତୁର୍କୀ ପାଇଁ ଯାହା ସହଜ, ପ୍ରାଚୀନ ଭାରତ ପାଇଁ ତାହା କଷ୍ଟସାଧ୍ୟ । ରକ୍ଷଣଶୀଳ ଇଂରେଜ ଯୁକ୍ତି କରନ୍ତି ଯେ ପ୍ରାଚୀନ ବନାନ ଭିତରେ ତାଙ୍କ ଭାଷାର ଇତିହାସ ଲୁକ୍‌କାୟିତ ଅଛି । ନୂତନ ବନାନ ଗ୍ରହଣ କଲେ ସେହି ଇତିହାସର ଅବସାନ ହେବାର ଆଶଙ୍କା । ଇଂରାଜ ଶିଶୁକୁ debt (ଋଣ) ଶବ୍ଦ ଲେଖିବାକୁ କହିଲେ ସେ d-e-t ଲେଖିବା ସ୍ୱାଭାବିକ । କିନ୍ତୁ ଜୁଲିଅ ସିଜର ଲାଟିନ debitum ଶବ୍ଦରେ ଏକ b ଯୋଗ କରିଥିଲେ ବୋଲି ଆଜି ଇଂରାଜ ଶିଶୁକୁ 'debt'ରେ b ଯୋଗ କରିବାକୁ ବାଧ୍ୟ କରାଯାଉଛି; କିନ୍ତୁ ଇତିହାସ ବିଜ୍ଞାନ ନୁହେ । ଏତିକ ଭୁଲିଗଲେ ପ୍ରମାଦରେ ପଡ଼ିବାକୁ ହେବ । ଫ୍ରେଞ୍ଚ ବନାନର ଅବସ୍ଥା ଆଧୁନିକ ଫ୍ରାନ୍ସ ପରି ଆତୁର କରୁଣ । ଉଚ୍ଚାରଣ ସହିତ ଲିଖନର କୌଣସି ସମ୍ପର୍କ ଥିଲା ପରି ମନେ ହୁଏ ନାହିଁ । ନିମ୍ନଲିଖିତ ଦୁଇ-ଗୋଟିଏ ଉଦାହରଣରୁ ତାହା ସହଜେ ପ୍ରତିପନ୍ନ ହେବ ।

| ଲିଖନ | | ଉଚ୍ଚାରଣ |
|---|---|---|
| Vingt | (୨୦) | ଭେଁ |
| Vaincs | (ମୁଁ ଜୟକରେ) | ଭେଁ |
| tailleur | (ଦରଜି)···ତାୟ୍ୟୋର | |
| Vais | (ଯାଏ)···ଭେ | |

ଏକଦା ପୃଥିବୀର ସଭ୍ୟତମ ଦେଶ ଫ୍ରାନ୍‌ସର ଫ୍ରେଞ୍ଚ୍ ବନାନ ପ୍ରଣାଳୀରେ ବର୍ଣ୍ଣୀୟଭବ ଦେଖି ବିସ୍ମିତ ହେବାକୁ ହୁଏ । ଇଂଲଣ୍ଡ ଲୋକେ ପ୍ରାଣାନ୍ତ ଲଢ଼ାଇ କରୁଥିବା ବେଳେ ପାରସ ଗ୍ରଣୀଙ୍କର ସ୍ୱପ୍ନଭଙ୍ଗ ବି ନାହିଁ ।

ବନାନ ସଂସ୍କାର ଦ୍ୱାରା କି ପ୍ରକାର ବାସ୍ତବ ଲାଭ ହୋଇପାରିବ ଲୋକସାଧାରଣ ତାହା ହୃଦୟଙ୍ଗମ କରିପାରି ନ ଥିବାରୁ ଏହି ସଂସ୍କାର ଜନପ୍ରିୟ ହୋଇ ପାରୁନାହିଁ । ବାର୍ନାର୍ଡ଼ ଶ ହିସାବ କତାବ ଦେଇ ବନାନ ସଂସ୍କାର ସପକ୍ଷରେ ଏକ ଆର୍ଥନୈତିକ ନିଶାପ ବାଢ଼ିଛନ୍ତି । ଶ କହନ୍ତି, ତାଙ୍କ ଲେଖା ଭିତରେ ସେ though, should, enough ପ୍ରାୟ ଏକଲକ୍ଷ ବାର ବ୍ୟବହାର କରିଛନ୍ତି । ସେଥିପାଇଁ ସେ ଅଠରଟି ଅକ୍ଷର ବ୍ୟବହାର କରନ୍ତି; କିନ୍ତୁ ଫୋନେଟିକ୍ ବନାନ ପ୍ରଣାଳୀରେ ତହିଁରେ ନଅଟି ମାତ୍ର ଅକ୍ଷର ବ୍ୟବହାର କରିବାକୁ ପଡ଼ିଥାନ୍ତା । ଯଦି ଅଠର ଜାଗାରେ ନଅଟି ଅକ୍ଷର ବ୍ୟବହାର କରାଯାଇଥାନ୍ତା ତାହେଲେ ଲେଖକ, ତାଙ୍କ ଟାଇପିଷ୍ଟ ଓ ଛାପାଖାନାର ଅଧା ଶ୍ରମ ରକ୍ଷା ପାଇ ପାରିଥାନ୍ତା । ତା ଛଡ଼ା କାଗଜ, କାଳି ଓ ମେସିନ୍‌ର ଭଙ୍ଗାରୁଜା କଥା ତ ଅଛି । ଇଂରାଜୀ ବନାନ ପ୍ରଣାଳୀ ଯଦି ଉଚ୍ଚାରଣସମ୍ମତ ବା ଫୋନେ-ଟିକ୍ ହୋଇଥାନ୍ତା ତାହେଲେ ସେ ଯେତିକି ଲେଖିଛନ୍ତି ବୋଧହୁଏ ତାର ଦୁଇଗୁଣ ଲେଖି ପାରିଥାନ୍ତେ । ଏ ଗଲା ଜଣେ ଲେଖକଙ୍କର ହିସାବ । ଏହିପରି କୋଟି କୋଟି ଲୋକଙ୍କର ଲକ୍ଷ ଲକ୍ଷ ବହି ଓ ଖବର କାଗଜରେ କେତେ ଶ୍ରମ ବୃଥା ବ୍ୟୟିତ ହେଉଛି ତାହା ଲୋକସାଧାରଣ ହୃଦୟଙ୍ଗମ କରିପାରିଲେ ଇଂରାଜୀ ଭାଷାର ଅଗ୍ରଗତି ବଢ଼ିଯାନ୍ତା ଓ ବିଦେଶୀମାନଙ୍କର ଆପତ୍ତି ଅନେକ କମିଯାନ୍ତା । ଇଂରାଜୀ ଲୋକଙ୍କର ଐତିହାସିକ ବନାନ ପ୍ରଣାଳୀ ତାଙ୍କ ନିଜର ପ୍ରିୟ ହୋଇପାରେ; ତାଙ୍କ ଗୀର୍ଜା କିମ୍ବା ଜାମ୍ବାସ୍ତୁ ସ୍ତମ୍ଭ ପରି ତାଙ୍କ ପାଇଁ ମୂଲ୍ୟବାନ୍ ହୋଇପାରେ, ମାତ୍ର ପୃଥିବୀର କୋଟି କୋଟି ବିଦେଶୀ ଲୋକଙ୍କ ଉପରେ ତାହା ଯଥେଚ୍ଛା ଲଦି ଦେବାରେ କୌଣସି ଯୁକ୍ତି ନାହିଁ । ଅନ୍ତତଃ ଇଂରାଜୀ ଭାଷାର ଭବିଷ୍ୟତ ଦୃଷ୍ଟିରୁ ଏ ପ୍ରକାର ବିଚାର ନିତାନ୍ତ ପ୍ରୟୋଜନ ।

ଆଉ ଗୋଟିଏ ବିଗ୍ରହ କରିବାର କଥା, ଶିଶୁର ସ୍ମରଣଶକ୍ତି। ଶିଶୁ ଯେତେବେଳେ ଲେଖାପଢ଼ା ଆରମ୍ଭ କରେ, ସେତେବେଳେ ସେ ପ୍ରଥମେ କାନ ଉପରେ ବେଶୀ ନିର୍ଭର କରେ। ଯାହା ଶୁଣେ, ତାକୁ ଅକ୍ଷରଦ୍ୱାରା ପ୍ରକାଶ କରିବାକୁ ଚେଷ୍ଟା କରେ। ତେଣୁ tongue ବା through କହିଲେ ସେ tong, thru ଲେଖେ। ଫଳତଃ ଶିକ୍ଷକଙ୍କଠାରୁ ବେତ୍ରାଘାତ ପାଏ। ତେଣୁ ସେ କ୍ୱିନାଇନ୍ ବଟିକା ପରି ଶହ ଶହ ଶବ୍ଦର ଅବୈଜ୍ଞାନିକ ମାତ୍ର ଐତିହାସିକ ବନାନକୁ କଣ୍ଠସ୍ଥ କରିବାକୁ ବାଧ୍ୟ ହୁଏ। ଏହି ଇତିହାସପ୍ରୀତି ପାଇଁ ଇଂରେଜ ଜାତିକୁ ବହୁତ ଦାମ୍ ଦେବାକୁ ପଡ଼େ ଅର୍ଥାତ୍ ଇଂରେଜ ପିଲା ଦଶ ବର୍ଷରେ ଯେତିକି ମାତୃଭାଷା ଶିଖେ, ସ୍ପାନିସ୍ ପିଲା ପାଞ୍ଚ ବର୍ଷରେ ତା କରିପାରେ; କାରଣ ସ୍ପାନିସ୍ ବନାନପ୍ରଣାଳୀ ଉଚ୍ଚାରଣସମ୍ମତ ବା ଫୋନେଟିକ୍। ସୌଭାଗ୍ୟକୁ ସେ ଦୃଷ୍ଟିରୁ ଆମ ଭାରତୀୟ ଲିଖନପ୍ରଣାଳୀ ବିଶେଷ ଭାବରେ ଫୋନେଟିକ୍। ବର୍ତ୍ତମାନ ଶହେ ଦେଢ଼ ଶହ ବର୍ଷ ଭିତରେ ଯେତିକି ପ୍ରମାଦ ବା ସ୍ଖଳନ ଆମର ଘଟିଯାଇଛି, ସେତିକି ସଜାଡ଼ିନେଲେ ଆମମାନଙ୍କର ଭାଷା ଫୋନେଟିକ୍ ଦିଗରେ ଚରମ ଆଦର୍ଶ ହୋଇପାରିବ।

ବର୍ତ୍ତମାନ ଓଡ଼ିଆ ଭାଷାର ବନାନପ୍ରଣାଳୀ ବିଗ୍ରହ କରାଯାଉ। ପୂର୍ବଲିଖିତ ଜ୍ୟୋତ୍ସ୍ନା-ରାଣୀ ପତ୍ର ପର୍ଯ୍ୟାଲୋଚନା କଲେ ଦେଖାଯିବ ବର୍ଗ୍ୟ ଯ, ଅବର୍ଗ୍ୟ ଯ, ଦନ୍ତ୍ୟ ସ, ତାଲବ୍ୟ ଶ, ମୂର୍ଦ୍ଧଣ୍ୟ ଷ, ହ୍ରସ୍ୱ ଇ, ଦୀର୍ଘ ଈ ନେଇ ବିପତ୍ତି ଓ ବିଭ୍ରାଟ। ସେଗୁଡ଼ିକ ଥିଲେ କାହିଁକି ଓ ସେମାନେ ବିପତ୍ତିର କାରଣ ହୋଇଛନ୍ତି କାହିଁକି, ବୁଝିବା ଦରକାର। ପ୍ରଥମତଃ ଆମ ଓଡ଼ିଆ ବର୍ଣ୍ଣମାଳାର ସ୍ୱାତନ୍ତ୍ର୍ୟ ନାହିଁ। ଏହା ଦେବ-ନାଗରୀ ବର୍ଣ୍ଣମାଳା ଉପରେ ପ୍ରତିଷ୍ଠିତ। ତେଣୁ ଆମେ ଆଜି ଯାହାକୁ ଅଯଥା ବୋଲି ମନେକରୁଛୁ, ତାକୁ ସଂସ୍କୃତରୁ ନେଇଆସିଛୁ। ଉଦାହରଣ ସ୍ୱରୂପ ଜ/ ଯ; ସ/ ଷ/ ଶ; ଖ୍ୟ/ କ୍ଷ ଏହି ତିନି ଦଳରୁ ଯେ କୌଣସି ତିନୋଟି ସଙ୍କେତ ( ଯଥା—ଜ, ସ, କ୍ଷ ରହିଲେ ଓଡ଼ିଆ ଭାଷାର

କାମ ଚଳିପାରନ୍ତା । ଗୋଟିଏ ଧ୍ୱନି ପାଇଁ ଶିଶୁ ଏକାଧିକ ସଙ୍କେତ ବା ଅକ୍ଷର ଜାଣିଥିବାରୁ ମନଇଚ୍ଛା ଯେଉଁଠି ଯାହା ପ୍ରୟୋଗ କରିଦିଏ; ଯଥା—ଯିବନ, ଜିବା, ଶୁସମା, ସିର, ଷାଗୁଣା, ଆଖା, ବର୍ଷ୍ୟ । ଶିଶୁକୁ ଏଥିପାଇଁ ଦଣ୍ଡଦେବା କେତେ ଗର୍ହିତ, ସହଜେ ଅନୁମେୟ । ଜଣକ ହାତରେ ବିଭିନ୍ନ ଅସ୍ତ୍ର ଦେଇ ସେ ବ୍ୟବହାର କରିବା ପାଇଁ ମନାକରିବା ଯାହା, ବହୁ ଅକ୍ଷରକୁ ଶିକ୍ଷା ଦେଇ ସେମାନଙ୍କର ବ୍ୟବହାର ପାଇଁ ଛାତ୍ରଙ୍କୁ ଦୋଷୀ କରିବା ସେହିପରି ଅଯୌକ୍ତିକ ।

ଦ୍ୱିତୀୟରେ ଓଡ଼ିଆ ମାତ୍ରା । ହ୍ରସ୍ୱ ି, ଦୀର୍ଘ ୀ, ହ୍ରସ୍ୱ ୁ, ଦୀର୍ଘ ୂ, ସ୍ୱଳ୍ପଶିକ୍ଷିତ ଓଡ଼ିଆ ଲୋକେ ତାଙ୍କ ଲେଖାରେ କ୍ୱଚିତ୍ ହ୍ରସ୍ୱ ଦୀର୍ଘର ତଫାତ୍ ରଖିଥାନ୍ତି । ରଖିପାରିବେ ନାହିଁ ମଧ୍ୟ । କାରଣ କାନକୁ ଯାହା ତଫାତ୍ ଶୁଣାଯାଏ ନାହିଁ, କେବଳ ମୁଖସ୍ଥ ରଖି ତାକୁ କାଗଜରେ ରଖିବା ଭାରି କଠିନ । ତା ଛଡ଼ା ଅଧିକାଂଶ ଯେତେବେଳେ ଭୁଲ୍ ବନାନ ଲେଖିବେ, ପୁରାତନ ପନ୍ଥୀ ଠିକ୍ ଜାଣିବା ଲୋକେ ବି ଭୁଲ୍ ଭାଷା ଦେଖି ଦେଖି ଭୁଲ୍ କରି ପକାଇବେ, ଆଶ୍ଚର୍ଯ୍ୟ କିଛି ନୁହେଁ । ଠିକ୍ ବନାନ ଜାଣିଥିବା ଅଧ୍ୟାପକ ଛାତ୍ରଙ୍କର ବାରମ୍ବାର ଲିଖିତ ଭୁଲ୍ ବନାନ୍ ଦେଖି ଅନେକ ସମୟରେ ସନ୍ଦେହରେ ପଡ଼ି ଅଭିଧାନ ଦେଖନ୍ତି । ପ୍ରଶ୍ନ ହେଉଛି ଏ ହ୍ରସ୍ୱ ଦୀର୍ଘ ଥିଲା କାହିଁକି ଏବଂ ଆଜି ଉଠାଇବା ଦରକାର ହେବ କାହିଁକି ? ମନେହୁଏ, ସଂସ୍କୃତଜ ପ୍ରାନ୍ତୀୟ ଭାଷାମାନଙ୍କରେ ପ୍ରଥମ ଅବସ୍ଥାରେ ଲେଖାପଢ଼ାରେ ସଂସ୍କୃତଜ ଶବ୍ଦମାନଙ୍କର ବିଶେଷ ପ୍ରଚଳନ ଥିଲା । ସଂସ୍କୃତ ଭାଷାରେ ଅର୍ଥ ଓ ଉଚ୍ଚାରଣ ଦୃଷ୍ଟିରୁ ଯେଉଁ ହ୍ରସ୍ୱ ଦୀର୍ଘ ଥିଲା, ଓଡ଼ିଆ ଭାଷାରେ ଗୃହୀତ ସଂସ୍କୃତଜ ଶବ୍ଦମାନଙ୍କରେ ତାହା ଅବିକଳ ରହିଲା । ଉଦାହରଣ ସ୍ୱରୂପ କେତୋଟି ଶବ୍ଦ ନିଆଯାଉ; ଯଥା—ଧନୀ, ଗୁଣୀ, ଶୁଶ୍ରୂଷା, ମୂର୍ଖ ଇତ୍ୟାଦି । ଏହି ଶବ୍ଦମାନଙ୍କୁ ଆଜି ଓଡ଼ିଆ ଭାଷାରେ ବ୍ୟବହାର କଲାବେଳେ ପିଲାମାନେ ଧନି, ଗୁଣି, ସୁସ୍ରୁଷା ଓ ମୁର୍ଖ ବୋଲି ଲେଖନ୍ତି । ତାର ଏକମାତ୍ର କାରଣ, ଓଡ଼ିଆ

ଫୋନେଟିକ୍‌ସ୍‌ । ଓଡ଼ିଆ ଧ୍ୱନିପଦ୍ଧତିରେ ଦୀର୍ଘର ପ୍ରଶ୍ନ ନାହିଁ । ସବୁ ଆମେ ହ୍ରସ୍ୱ ଉଚ୍ଚାରଣ କରୁ ବୋଲି ହ୍ରସ୍ୱ ଲେଖିବା ସ୍ୱାଭାବିକ ହୋଇ-ପଡ଼େ । ଇଂରାଜୀ ଭାଷାରେ ହ୍ରସ୍ୱ ଦୀର୍ଘର ତଫାତ୍‌ ଅଛି । ତେଣୁ ଓଡ଼ିଆମାନେ street, bed, bead ପ୍ରଭୃତି ଦୀର୍ଘସ୍ୱରବିଶିଷ୍ଟ ଇଂରାଜୀ ଶବ୍ଦକୁ ଯେମିତି ହ୍ରସ୍ୱସ୍ୱର ଦେଇ ଉଚ୍ଚାରଣ କରନ୍ତି, ଇଂରାଜୀ କାନକୁ ତାହା Strit, bet, bit ପରି ଶୁଣାଯାଏ । ମାତ୍ର ଓଡ଼ିଆପିଲା ଯେ ଇଂରାଜୀ ବନାନ ଠିକ୍ ଲେଖିପାରନ୍ତି ତାର କାରଣ ହେଉଛି ଜୀବିକାନିର୍ବାହ ପାଇଁ ବିଦେଶୀ ଭାଷାର ବହୁ ପ୍ରାଧାନ୍ୟ ଥିବାରୁ ପିଲାଏ ତାହା ପ୍ରାଣ ବିକଳରେ ଗିଳନ୍ତି । ମାତ୍ର ଆଜି ବିଦେଶୀ ଭାଷାର ପ୍ରାଧାନ୍ୟହ୍ରାସ ସଙ୍ଗେ ସଙ୍ଗେ ପିଲାମାନେ କିମ୍ଭୂତକିମାକାର ମନଗଢ଼ା ( ବରଂ ଫୋନେଟିକ ) ବନାନ ଲେଖି ଇଂରେଜୀ ଅଧ୍ୟାପକମାନଙ୍କୁ ଅସ୍ଥିର କରି ପକାଉଛନ୍ତି । ଏଥିରେ ଅସ୍ୱାଭାବିକତା କିଛି ନାହିଁ । ଯାହା ବିଜ୍ଞାନସମ୍ମତ, ତାରି ପ୍ରାଧାନ୍ୟ ହିଁ ରହିବ । ସେ ଯାହାହେଉ, ବର୍ତ୍ତମାନ ଓଡ଼ିଆ ବନାନ-ପଦ୍ଧତିରେ ଯେଉଁ ବୈଷମ୍ୟ ଦେଖାଦେଇଛି, ତାହାର ଅବସାନର ଆରମ୍ଭ ହେବା ଉଚିତ । ନଚେତ୍ ଉପାଧିଧାରୀ ଓଡ଼ିଆମାନେ ବି ପୁରାତନ ବିଶୁଦ୍ଧି ରକ୍ଷାକରି ଧାଡ଼ିଏ ଲେଖିପାରିବେ ନାହିଁ । ଔଷଧ ନ ଖାଇ ତାଟିଆ କାମୁଡ଼ିବା ଯାହା, ପ୍ରକୃତ ତଥ୍ୟ ଅନୁସନ୍ଧାନ ନ କରି ଛାତ୍ରମାନଙ୍କୁ ଦଣ୍ଡିତ କରିବା ତାହା । ତହିଁରେ ରୋଗର ଅବସାନ କିମ୍ବା ଭୋଗର ଆଗମନ ନାହିଁ ।

ଦ୍ୱିତୀୟତଃ ଓଡ଼ିଆ ଭାଷା ଯୁକ୍ତାକ୍ଷରବହୁଳ । ଅତି ସହଜରେ ସେମାନଙ୍କୁ ବିଦାୟ କରିଦେଇ ବର୍ଗର ପଞ୍ଚମ ବର୍ଣ୍ଣକୁ କେବଳ ଅନୁ-ସ୍ୱାରରେ ପରିଣତ କରିଦେଲେ ହେଲା । ଅନୁସ୍ୱାର ଯେଉଁ ବର୍ଗର ବର୍ଣ୍ଣ-ମାନଙ୍କ ସହିତ ରହିବ, ସେହି ବର୍ଗର ଯୁକ୍ତାକ୍ଷରମାନଙ୍କୁ ବୁଝାଇବ; ଯଥା—

| | | | | | |
|---|---|---|---|---|---|
| କ | ଖ | ଗ | ଘ | ଙ | (ଂ) |
| ଚ | ଛ | ଜ | ଝ | ଞ | (ଂ) |
| ଟ | ଠ | ଡ | ଢ | ଣ | (ଂ) |
| ତ | ଥ | ଦ | ଧ | ନ | (ଂ) |
| ପ | ଫ | ବ | ଭ | ମ | (ଂ) |

ଉପରୋକ୍ତ ବର୍ଣ୍ଣମାଳାରେ ଙ, ଞ, ଣ, ନ, ମ କୁ ଅନୁସ୍ୱାରରେ ପରିଣତ କରି ବର୍ଗସ୍ଥ ବର୍ଣ୍ଣମାନଙ୍କ ପୂର୍ବରେ ଯୋଗକଲେ ଯୁକ୍ତାକ୍ଷର-ମାନଙ୍କର କାମ ହୋଇଯିବ ।

—ଂକ —ଂଖ —ଂଗ —ଂଘ = ଙ୍କ ଙ୍ଖ ଙ୍ଗ ଙ୍ଘ
—ଂଚ —ଂଛ —ଂଜ —ଂଝ = ଞ୍ଚ ଞ୍ଛ ଞ୍ଜ ଞ୍ଝ
—ଂଟ —ଂଠ —ଂଡ —ଂଢ = ଣ୍ଟ ଣ୍ଠ ଣ୍ଡ ଣ୍ଢ
—ଂତ —ଂଥ —ଂଦ —ଂଧ = ନ୍ତ ନ୍ଥ ନ୍ଦ ନ୍ଧ
—ଂପ —ଂଫ —ଂବ —ଂଭ = ମ୍ପ ମ୍ଫ ମ୍ବ ମ୍ଭ

ସୁତରାଂ ପଟେଲଙ୍କ ଗାରରେ ଛିଡ଼ଣ ଗଡ଼ଜାତ ପରି ଗୋଟିଏ ମାତ୍ର କ୍ଷୁଦ୍ର ଅନୁସ୍ୱାର (ଂ) ଚିହ୍ନରେ କୋଡ଼ିଏଟି ଅଯଥା ପ୍ରଯୁକ୍ତ ଯୁକ୍ତାକ୍ଷରକୁ ଧ୍ୱଂସ କରି ଦିଆଯାଇପାରେ । ସୃଷ୍ଟି ଯେମିତି କାମ୍ୟ, ବିନାଶ ବି ଅନେକ ସମୟରେ ସେହିପରି କାମ୍ୟ । ସମାଜତତ୍ତ୍ୱ ଯାହା, ଭାଷାତତ୍ତ୍ୱ ତାଠୁ ଭିନ୍ନ ନୁହେଁ । ତେଣୁ ଓଡ଼ିଆ ଶିଶୁର ଯହିଁରେ ବହୁ ଶାରୀରିକ ଶ୍ରମ ତଥା ମାନସିକ ଭାର ଲାଘବ ହେବ, ତହିଁରେ ଅବହେଳା କଲେ ଅଯଥା ଜାତୀୟ କ୍ଷତି ସହିବାକୁ ହେବ । କେତେକ ପ୍ରାଥମିକ ଶିକ୍ଷକଙ୍କର ଧାରଣା ଯେ ଡି· ପି· ସାହେବଙ୍କ ପ୍ରବର୍ତ୍ତିତ ବର୍ଣ୍ଣପରିଚୟ ପଦ୍ଧତି ଓଡ଼ିଆ ବନାନବିଶୃଙ୍ଖଳାର ପ୍ରଧାନ କାରଣ; ମାତ୍ର ଏପରି ଯୁକ୍ତିରେ କୌଣସି ସତ୍ୟତା ଥିଲାପରି ମନେହୁଏନା । କାରଣ ଡି· ପି· ପଦ୍ଧତି ପୃଥିବୀରେ ସର୍ବତ୍ର ପ୍ରଚଳିତ ପଦ୍ଧତିର ଅନୁକରଣ ମାତ୍ର । ଇଂରାଜୀରେ ଆଜିକାଲି a b c ନ ପଢ଼ାଇ a for apple, b for bird, c for cat ପଦ୍ଧତିରେ ପଢ଼ାନ୍ତି । ଶିକ୍ଷାତତ୍ତ୍ୱବିତ୍‌ମାନେ ଏହି ପଦ୍ଧତିକୁ ପସନ୍ଦ କରନ୍ତି ।

ବନାନ ପରିବର୍ତ୍ତନ କିନ୍ତୁ ଗୋଟିଏ ସାମାନ୍ୟ କଥା ନୁହେଁ । ସ୍ୱୀଟ୍‌ଙ୍କଠାରୁ ଆରମ୍ଭ କରି ଶ ଙ୍କ ପିଗ୍‌ମାଲିୟନ୍ ପର୍ଯ୍ୟନ୍ତ ଚେଷ୍ଟା ଚାଲିଛି । ଏହି ଆନ୍ଦୋଳନରେ ଭାବପ୍ରବଣତାକୁ ବାଦ୍ ଦେଲେ ମଧ୍ୟ ବାସ୍ତବ ଦୃଷ୍ଟିରୁ ଗୋଟିଏ ବିଶିଷ୍ଟ ପ୍ରଶ୍ନର ବିଚାର କରିବାକୁ ହେବ । ଇଂଲଣ୍ଡରେ

ସେହି ପ୍ରଶ୍ନ ଉଠେଛୁ, ଏଠି ବି ଉଠିବ । ପରିବର୍ତ୍ତନ ଯେଉଁଠି କରାଯିବ, ସେଠି ମଧ୍ୟ ଉଠିବ । ପ୍ରଶ୍ନ ହେଉଛୁ ନୂତନ ବନାନ-ପଦ୍ଧତିରେ ଶିକ୍ଷିତ ଛାତ୍ରମାନେ ପୁରାତନ ଗ୍ରନ୍ଥ ପଢ଼ିବେ କେମିତି ବା ପୁରାତନପନ୍ଥୀମାନେ ନୂତନ ପୁସ୍ତକରେ ପ୍ରବେଶ ଲାଭ କରିବେ କେମିତି ? ଏହି ପ୍ରଶ୍ନର ଉତ୍ତର ପୂର୍ବରୁ ନୂତନ ବେଶରେ ଇଂରାଜୀ ଓଡ଼ିଆ ପଂକ୍ତି କେମିତି ଦେଖାଯିବ, ନିମ୍ନରେ ଦେଖନ୍ତୁ ।

ବର୍ତ୍ତମାନ ପଦ୍ଧତି—

I have not yet directed attention to the fact that the present spelling is not always a safe guide in matters of derivation. Those who think that the spelling should not only represent the sounds, but also suggest the origin of the word......

ନୂତନ ପଦ୍ଧତି—

I have not yet direkted atenshon to dhe fakt dhat dhe prezent speling iz not aulwaez a saef gied in materz ov derivaeshon. Dhoes huu think dhat dhe speling shood not oenly reprezent dhe soundz, but aulsoe sujest dhe orrijin ov dhe wurd......(New Spelling, Pitman)

ଯେ କୌଣସି ଇଂରାଜୀ ଆଖିକୁ ଏହା ପ୍ରଥମେ ଟିକିଏ ଅଡ଼ୁଆ ଦେଖାଯିବ । ମାତ୍ର ଆମମାନଙ୍କୁ ସମ୍ପୂର୍ଣ୍ଣ ଜଟିଳ ଜଣାଯିବ; କାରଣ ଆମେମାନେ ପ୍ରଥମତଃ ପୁରାତନ ପଦ୍ଧତିରେ ଶିକ୍ଷିତ, ଦ୍ୱିତୀୟତଃ ଇଂରାଜମାନଙ୍କର ପ୍ରକୃତ ଉଚ୍ଚାରଣ ଆମକୁ ଜଣା ନାହିଁ । ସେମାନଙ୍କର ନୂତନ ପଦ୍ଧତି ଅଧିକାଂଶରେ ଇଂରାଜୀ ଫୋନେଟିକ୍ସ୍ ଉପରେ ନିର୍ଭର କରୁଛି ।

ଓଡ଼ିଆ ବର୍ତ୍ତମାନ ପଦ୍ଧତି—

ଗଙ୍ଗାତୀରରେ ଗୋଟିଏ ପ୍ରାଚୀନ ବିଶାଳ ଶାଳ୍ମଳୀ ବୃକ୍ଷ ଅଛି । ତାହାର କୋଟରରେ ଜରଦ୍‌ଗବ ନାମକ ଗୃଧ୍ର ବାସ କରୁଥିଲା । ବାର୍ଦ୍ଧକ୍ୟ ହେତୁରୁ ସେ ନାନା ସ୍ଥାନରେ ଉଡ଼ି ଆହାର ଅନ୍ୱେଷଣ କରିବାକୁ ଅସମର୍ଥ ହେବାରୁ ବୃକ୍ଷବାସୀ ପକ୍ଷୀମାନେ ଆପଣା ଆପଣା ଆହାରରୁ କିଛି କିଛି ଦେଇ ତାହାର ପ୍ରାଣରକ୍ଷା କରୁଥିଲେ ।

ନୂତନ ପଦ୍ଧତି—

ଗଂଗାଢରରେ ଗୋଟିଏ ପ୍ରାଚନ ବିଶାଳ ସାଲ୍ମଲ ବୃକ୍ଷ୍ୟ ଅଛି । ତାହାର କୋଟରରେ ଜରଦ୍‌ଗବ ନାମକ ଗୃଧ୍ର ବାସ କରୁଥିଲା । ବାର୍ଧକ୍ୟ ହେତୁରୁ ସେ ନାନା ସ୍ଥାନରେ ଉଡ଼ି ଆହାର ଅନ୍ୱେସଣ କଣିବାକୁ ଅସମର୍ଥ ହେବାରୁ ବୃକ୍ଷ୍ୟବାସି ପକ୍ଷିମାନେ ଆପଣା ଆପଣା ଆହାରରୁ କିଛି କିଛି ଦେଇ ତାହାର ପ୍ରାଣରକ୍ଷ୍ୟା କରୁଥିଲେ ।

ଅବଶ୍ୟ ଏହି ଓଡ଼ିଆ ପଂକ୍ତିମାନଙ୍କରେ ଚରମ ପରିବର୍ତ୍ତନ ପ୍ରଦର୍ଶିତ ହୋଇଛି । ହୁଏ ତ ବୈଜ୍ଞାନିକମାନଙ୍କ ବିଗୃରରେ ଏହାଠାରୁ କମ୍ ପରିବର୍ତ୍ତନ ପ୍ରବର୍ତ୍ତନ କରି ମଧ୍ୟ ଅନେକ ଅସୁବିଧା ଦୂର କରାଯାଇପାରେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ପୁରାତନ ଲୋକେ କେମିତି ନୂତନ ପୁସ୍ତକ ପଢ଼ିବେ । ଉତ୍ତରରେ କୁହାଯାଇପାରେ ଯେ ରାତାରାତି କେହି ସମସ୍ତ ପୁରାତନକୁ ବାଦ୍ ଦେଇ ନୂତନ ପୁସ୍ତକ ସୃଷ୍ଟି କରିପାରିବେ ନାହିଁ । ଆମେରିକାରେ ଯେମିତି honor, color, thru, antic ପ୍ରଭୃତି ଆସ୍ତେ ଆସ୍ତେ ପ୍ରବେଶ କରୁଛି, ସେମିତି ଆଧୁନିକ ଲେଖାମାନଙ୍କରେ ଧୀରେ ଧୀରେ ପରିବର୍ତ୍ତନ ପ୍ରବର୍ତ୍ତନ କରାଯିବ । ଆସ୍ତେ ଆସ୍ତେ ପାଠକଙ୍କର ଆଖି ନୂତନ ଲେଖାପ୍ରତି ଅଭ୍ୟସ୍ତ ହେବ । ଆଉ ଗୋଟିଏ କଥା ହେଉଛି, ବନାନ ବଦଳିଗଲେ ଶବ୍ଦର ଅର୍ଥ କେମିତି ଜଣାପଡ଼ିବ ? ଅଧିକାଂଶ ଶବ୍ଦର ଅର୍ଥ ପୂର୍ବାପର ସମ୍ପର୍କରୁ ( Context of situation) ଜଣା

ପଡ଼ିଥାଏ । ତେଣୁ କେତେକ ଶବ୍ଦର ବନାନ ପରିବର୍ତ୍ତିତ ହେଲେ ସମୁଦାୟ ବାକ୍ୟର ଅର୍ଥାଗମ ହେବାରେ ବିଶେଷ ଅସୁବିଧାର ଆଶଙ୍କା ନାହିଁ ।

ନୂତନପନ୍ଥୀଙ୍କ ପାଇଁ ପୁରାତନ ଶାସ୍ତ୍ର ପଢ଼ିବା ସାମାନ୍ୟ କଷ୍ଟକର ହୋଇପାରେ; ମାତ୍ର ସେମାନେ ବାଲ୍ୟକାଳରେ ସରଳ ବନାନ ହେତୁ ଅଳ୍ପ ସମୟରେ ପାଠ ହାସଲ କରି ଯେଉଁ ଅଯଥା କ୍ଲେଶରୁ ରକ୍ଷା ପାଇବେ, ତା ତୁଳନାରେ ପୁରାତନ ସାହିତ୍ୟ ପଢ଼ିବାର କଷ୍ଟ ବିଶେଷ କିଛି ନୁହେଁ । ଗାଣିତିକସୂତ୍ରରେ ବିଗ୍ଭର କଲେ ପୁରାତନ ଶାସ୍ତ୍ର ପଢ଼ିବା ଲୋକଙ୍କ ଅପେକ୍ଷା ଆଧୁନିକ ଶିକ୍ଷାଗ୍ରାହୀ ଶତ ସହସ୍ର ଗୁଣରେ ବେଶୀ । ଭଞ୍ଜ ସାହିତ୍ୟ ଚର୍ଚ୍ଚା କରୁଥିବା ଲୋକଙ୍କ ଅପେକ୍ଷା 'ସମାଜ', 'ପ୍ରଜାତନ୍ତ୍ର' ପଢ଼ିବା ଲୋକ ବେଶୀ । ସ୍ୱଳ୍ପ ପାଇଁ ବହୁ ଲୋକଙ୍କର ସ୍ୱାର୍ଥବଳି ଦିଆଯାଇ ନ ପାରେ । ତା ଛଡ଼ା ଯେଉଁମାନେ ଭଞ୍ଜ ସାହିତ୍ୟ ଚର୍ଚ୍ଚା କରିବେ, ସେ କୌଣସି ସାଧକଙ୍କ ପରି ତାଙ୍କୁ କିଞ୍ଚିତ୍ କଷ୍ଟ ସହ୍ୟ କରିବାକୁ ପଡ଼ିବ, ମାତ୍ର ଭାଷାତତ୍ତ୍ୱବିତ୍ମାନେ ଏକ ପ୍ରାଚୀନ-ନୂତନ ଅଭିଧାନ ଓ ଭାଷା-ଉପଭାଷା ଅଭିଧାନ ସୃଷ୍ଟି କରିପାରିଲେ ନୂତନ ପୁରାତନ ଉଭୟ ପନ୍ଥୀଙ୍କର ଅସୁବିଧା ଆପେ ଦୂର ହୋଇଯିବ । ଓଡ଼ିଶାରେ ପୂଜ୍ୟ ପ୍ରହରାଜଙ୍କ ଅଭିଧାନ ଛଡ଼ା ଅନ୍ୟ ଉପାଦେୟ ଅଭିଧାନ ନାହିଁ । ଭାରତୀୟ ଭାଷାତତ୍ତ୍ୱବିତ୍ମାନେ ପୁନା ସମ୍ମିଳନୀରେ ( ୨୭।୫।୫୭—୨୯।୫।୫୭ ପର୍ଯ୍ୟନ୍ତ ଅନୁଷ୍ଠିତ ) ଏହି ଅଭିଧାନ ସୃଷ୍ଟି ଉପରେ ବିଶେଷ ଜୋର ଦେଇଛନ୍ତି । ତେଣୁ ଅଭିଧାନ ସୃଷ୍ଟି ପରେ ନୂତନ-ପୁରାତନ ମିଳନର ପନ୍ଥା ସହଜ ହୋଇଯିବ ।

"ଲୋକେ ପ୍ରଥମେ ଯେମିତି ଉଚ୍ଚାରଣ କରୁଥିଲେ, ସେମିତି ବନାନ ଲେଖୁଥିଲେ । ମାତ୍ର ଆଜି ଯେମିତି ଲେଖାଅଛି ତାରି ଅନୁସାରେ ଉଚ୍ଚାରଣ କରିବା ପାଇଁ ଚେଷ୍ଟା କରୁଛନ୍ତି । କିନ୍ତୁ ସେଥିରେ ବାଙ୍କର ଦୋଷ ବା କଣ ?" [Preface by L. L. loyd James, New Spelling] ମାତ୍ର ବାର୍ନାର୍ଡ଼ ଶ କହନ୍ତି, ବନାନର ବିଶୃଙ୍ଖଳା ଯୋଗୁଁ

ଯେତେ ରକ୍ତ, ଯେତେ ଅର୍ଥ ବୃଥା ଶ୍ରାଦ୍ଧ କରାଯାଉଛି, ତାର ପରିବର୍ତ୍ତନ ପାଇଁ ଯଦି ରକ୍ତାକ୍ତ ଗୃହଯୁଦ୍ଧ ଆବଶ୍ୟକ ହୁଏ, ତଥାପି ବନାନ ପରିବର୍ତ୍ତନ ଦରକାର । କାରଣ ପୁରାତନପଦ୍ଧତି ଯୋଗୁଁ କୋଟି କୋଟି ଲୋକଙ୍କର ପ୍ରତିଦିନ ଲେଖାପଢ଼ାରେ ଯେତେ ଅଯଥା ଶ୍ରମ ଆବଶ୍ୟକ ହେଉଛି, ତା ତୁଳନାରେ ରକ୍ତାକ୍ତ ଗୃହଯୁଦ୍ଧ କିଛି ନୁହେ । ମହା-ମନୀଷୀଙ୍କର ଏହି ମହାବାଣୀ ଏକ ବିରାଟ ବୈଜ୍ଞାନିକ ତଥା ଭାଷାତାତ୍ତ୍ୱିକ ସତ୍ୟ ।

———

# ଭାଷାରେ ନୂତନ ସୃଷ୍ଟି

ଜୀବର ଯେମିତି ଜାତିଗୋତ୍ର ଓ ଜନ୍ମମୃତ୍ୟୁ ଅଛି, ଭାଷାର ସେମିତି ବଂଶ, ଜାତି, ଜନ୍ମମୃତ୍ୟୁ ଅଛି ବୋଲି ଭାଷାତତ୍ତ୍ୱବିତ୍‌ମାନେ କହନ୍ତି । ଅବଶ୍ୟ ଜୀବଜଗତରେ ଜନ୍ମମୃତ୍ୟୁ କହିଲେ ଯାହା ବୁଝାଏ, ଭାଷାଜଗତରେ ତାହା ନୁହେଁ । ଭାଷାଜଗତରେ ଜନ୍ମର ଅର୍ଥ ବିଭିନ୍ନ ଅବସ୍ଥା ଦେଇ କ୍ରମବିକାଶ, ଯେପରି ସଂସ୍କୃତ 'ମୃଗ' ଶବ୍ଦରୁ ଓଡ଼ିଆ 'ମିରିଗ'ର ଉତ୍ପତ୍ତି । ଜୀବଜଗତରେ ମୃତ୍ୟୁନିଦ୍ରାରୁ ପୁନର୍ବାର ଉଠିବାର ଉପାୟ ନାହିଁ, ମାତ୍ର ଭାଷାରେ କୌଣସି ଶବ୍ଦ ଯୁଗ ଯୁଗ ପାଇଁ ବିଦେଶରେ ରହିପାରେ କିମ୍ବା ନିଜ ଦେଶରେ ବ୍ୟବହୃତ ନ ହୋଇ ମୃତ ପରି ଲୁପ୍ତ ହୋଇପାରେ । ମାତ୍ର ଦରକାର ପଡ଼ିଲେ ପୁଣି ତା ମଶାଣିରୁ ଚେଇଁ ଉଠିପାରେ ବା ଅନ୍ୟ ରୂପରେ ଆତ୍ମପ୍ରକାଶ କରିପାରେ । ଫ୍ରାନ୍‌ସର ବ୍ୟୁଜେ (buget) ଶବ୍ଦ ବହୁ କାଳ ଇଂଲଣ୍ଡରେ ରହି ବଜେଟ (budget)ରେ ପରିଣତ ହୋଇ ପୁଣି ଇଂରାଜୀ ରୂପରେ ଫ୍ରାନ୍‌ସକୁ ଫେରିଆସିଲା । ସଂସ୍କୃତ 'ରାଜ୍ୟପାଳ' ଶବ୍ଦର ବ୍ୟବହାର ପୁରାତନ ସାହିତ୍ୟରେ ଅଭାବ ନାହିଁ; ମାତ୍ର ଆଜି ନିତ୍ୟବ୍ୟବହୃତ ଗଭର୍ଣ୍ଣରର ଅର୍ଥରେ ରାଜ୍ୟପାଳ ଶବ୍ଦକୁ ବ୍ୟବହାର କଲାବେଳେ ଓଡ଼ିଆ ଭାଷାରେ ନୂତନ ବୋଲି ମନେ ହେଉଥିଲେ ମଧ୍ୟ ଏହା ଏକ ପୁନରୁଜ୍ଜୀବିତ ଶବ୍ଦ ଅଟେ । ମଫସଲର କୌଣସି ସମ୍ଭ୍ରାନ୍ତ ପରିବାରରେ କେହି 'ଗ୍ଲଚ' ଶବ୍ଦ ବ୍ୟବହାର କରନ୍ତି ନାହିଁ—ଚନି, ମିଶ୍ରି, କନ୍ଦ ପ୍ରଭବରେ ତାହା ଅନେକ ଦିନୁ ମୃତ । ମାତ୍ର ଏବେ ସେହି ବଂଶରେ ଆଦିକନ୍ଦ ନାମକ ଏକ ମାନ୍ୟବ୍ୟକ୍ତି ଥିବାରୁ ଏବଂ ଘରର ନୂଆବୋହୂଙ୍କୁ ତାଙ୍କ ନାଁ ବର୍ଜ୍ଜିଇବାକୁ ପଡୁଥିବାରୁ କନ୍ଦ ନ କହି ସେ 'ଗ୍ଲଚ' କହନ୍ତି । ସେହି ବଂଶରେ ବ୍ୟବହୃତ ଶବ୍ଦମାନଙ୍କ ଦୃଷ୍ଟିରୁ ବିଚାର କଲେ 'ଗ୍ଲଚ' ଏକ ମଶାଣିଫେରନ୍ତା ଶବ୍ଦ । ଭାଷାର ଜନ୍ମମୃତ୍ୟୁ ପରି

ଭାଷାବଂଶର ଉନ୍ନତି ବା ଅଭିବୃଦ୍ଧି ଅଛି । ଆଦିମ ମଣିଷ ଯେତିକି ଶବ୍ଦ ବ୍ୟବହାର କରୁଥିଲା, ତାଠୁ ଆଜି ଶତସହସ୍ର ଗୁଣରେ ଶବ୍ଦ ବ୍ୟବହାର କରାଯାଉଛି । ଶହେ ଦୁଇଶହ ବର୍ଷ ତଳର ଏକ ପୁରାତନ ଅଭିଧାନ ସହିତ ଆଧୁନିକ ବିଂଶ ଶତାବ୍ଦୀର ଏକ ଅଭିଧାନ ତୁଳନା କଲେ ଏହି ସତ୍ୟ ସହଜେ ପ୍ରତିପନ୍ନ ହେବ । ଏପରି କି ଆଜିକାଲିର କେତେକ ନୂତନ ଶବ୍ଦ ପନ୍ଦର କୋଡ଼ିଏ ବର୍ଷ ତଳର ଅଭିଧାନରେ ପାଇବା କଠିନ ।

ଭାଷାର ଅଭିବୃଦ୍ଧି ପରୀକ୍ଷା କରିବା ପାଇଁ ସମୀକରଣ, ବିଷମୀକରଣ, ଲୋପ ପ୍ରଭୃତି ଅନେକ ଭାଷାତାତ୍ତ୍ୱିକ ପନ୍ଥା ଅଛି; ମାତ୍ର ଏଠି ସେମାନଙ୍କର ବିଚାର କରିବାର ଆବଶ୍ୟକତା ନାହିଁ । ଆଧୁନିକ ଓଡ଼ିଆ ଲେଖାମାନଙ୍କରେ ଯେଉଁସବୁ ନୂତନ ସୃଷ୍ଟି ଆଗେଇଚାଲିଛି, ସେହି ସମ୍ପର୍କରେ କେବଳ ବିଚାର କରାଯିବ ।

ସାଧାରଣତଃ ଶବ୍ଦରେ ବିଭିନ୍ନ ପ୍ରତ୍ୟୟ ଯୋଗକରି ନୂତନ ଶବ୍ଦ ତିଆରି କରାଯାଏ । କୃତ୍ ଧାତୁରୁ ଯେମିତି କର୍ତ୍ତନ, କର୍ତ୍ତିତ, ବିକର୍ତ୍ତନ, କଟା, କାଟିବା, କଟୁରୀ ପ୍ରଭୃତି ତିଆରି ହୋଇପାରେ, ଆମ୍ବ ଶବ୍ଦରୁ ସେହିପରି ଆମ୍ବୁଲ, ଆମ୍ବିଲା, ଆମ୍ବସଡ଼ା, ଆମ୍ବୁଲିଆ ପ୍ରଭୃତି ତିଆରି କରାଯାଇପାରେ । ବ୍ୟବହୃତ ପ୍ରତ୍ୟୟମାନଙ୍କୁ ସକ୍ରିୟ ନିଷ୍କ୍ରିୟ ଦୁଇଭାଗ କରାଯାଇଛି । ଯେଉଁ ପ୍ରତ୍ୟୟଦ୍ୱାରା ନୂତନ ଶବ୍ଦ ସହଜରେ ସୃଷ୍ଟି ହୋଇପାରେ, ତାକୁ ସକ୍ରିୟ ପ୍ରତ୍ୟୟ କହନ୍ତି ଏବଂ ଯାହାଦ୍ୱାରା ସହଜରେ ହୋଇପାରେନା, ତାକୁ ନିଷ୍କ୍ରିୟ ପ୍ରତ୍ୟୟ କହନ୍ତି । ଓଡ଼ିଆ ଭାଷାରେ ସ୍ତ୍ରୀ ପ୍ରତ୍ୟୟାନ୍ତ ଶବ୍ଦ ତିଆରି କରିବା ପାଇଁ ଦୀର୍ଘ ଈକାର (ୀ) ଯେତେ ସକ୍ରିୟ, ଆକାର ( ା ) ସେତେ ସକ୍ରିୟ ନୁହେଁ । କାରଣ ଓଡ଼ିଆରେ ଶ୍ରେଷ୍ଠୀ, କୁଜୀ, କାଣୀ, ରାଣୀ, ଗୋରଣୀ, ତେଲୁଣୀ, ଗଉଡ଼ୁଣୀ ପ୍ରଭୃତି ଶବ୍ଦ ଯେତେ ବେଶୀ, ତା ତୁଳନାରେ ସୁତା, ପୁତା, ଦଣ୍ଡା ଯଥେଷ୍ଟ କମ୍ । ସେହିପରି ଇଂରାଜୀରେ **ness** ପ୍ରତ୍ୟୟ ବିଶେଷ୍ୟ ତିଆରି କରିବା ପାଇଁ ଯେପରି ସକ୍ରିୟ, **th** ପ୍ରତ୍ୟୟ ସେପରି ନୁହେଁ । ଉଦାହରଣ ସ୍ୱରୂପ, goodness, badness, illness, smallness ପ୍ରଭୃତି ଶହ ଶହ

ଶବ୍ଦ ness ଦ୍ୱାରା ତିଆରି କରାଯାଇପାରେ । ମାତ୍ର healରୁ health ଓ welରୁ welth ପରି th ପ୍ରତ୍ୟୟାନ୍ତ ବିଶେଷ୍ୟ ଶବ୍ଦ ନୂତନ ସୃଷ୍ଟି ପାଇଁ ବିଶେଷ ପ୍ରୟୋଜନୀୟ ନୁହେଁ । ବର୍ତ୍ତମାନ ଦେଖିବାର କଥା, ପୁରାତନ ପ୍ରତ୍ୟୟ ଯୋଗ କରି କେମିତି ନୂତନ ଶବ୍ଦ ଓଡ଼ିଆ ଭାଷାରେ ସୃଷ୍ଟି କରାଯାଉଛି—ବିଶେଷତଃ ସଂସ୍କୃତ ପ୍ରତ୍ୟୟମାନ ସାଧାରଣ ଓଡ଼ିଆ ଶବ୍ଦରେ ଲାଗି କୌତୂହଳୋଦ୍ଦୀପକ ବହୁ ଶବ୍ଦ କିପରି ସୃଷ୍ଟି କରା-ହେଉଛି । ନୀଳିମା, କାଳିମା, ଗରିମା ଅନୁକରଣରେ 'ସବୁଜିମା' ସୃଷ୍ଟି ନୂତନ । ବାଙ୍ମୟ, ମୃଣ୍ମୟ ଅନୁକରଣରେ ପ୍ରଶ୍ନମୟ; ଫେନିଳ ଅନୁକରଣରେ ଛନ୍ଦିଳ, ସପିଳ । ମହତ୍ତ୍ୱ, ଗୁରୁତ୍ୱ, ସାଧୁତ୍ୱ ପ୍ରଭୃତି ଶବ୍ଦରେ ପଣିଆ ଅର୍ଥରେ ତ୍ୱ ପ୍ରତ୍ୟୟ ସଂସ୍କୃତଜ- ସାଧୁଶବ୍ଦମାନଙ୍କରେ ନିଯୋଜିତ କରାଯାଇଛି । ବର୍ତ୍ତମାନ ଏହି ତ୍ୱ ପ୍ରତ୍ୟୟକୁ ଦେଶଜ ବଡ଼ ଶବ୍ଦରେ ଯୋଗ କରି 'ବଡ଼ତ୍ୱ' କରାଯାଇଛି । ବିଭାଗୀକୃତ, ଦ୍ୱିଖଣ୍ଡୀକୃତ, ସମୀକରଣ ପ୍ରଭୃତି ଶବ୍ଦମାନଙ୍କ ଅନୁକରଣରେ ଖଣ୍ଡୀକରଣର ସୃଷ୍ଟି । ରବିବାରରୁ ରବିବାରୀୟ, ପ୍ରଶାନ୍ତ ମହାସାଗରରୁ ପ୍ରଶାନ୍ତ ମହାସାଗରୀୟ ପ୍ରଭୃତି ଅଭିନବ ଶବ୍ଦମାନଙ୍କର ଜନ୍ମ ।

କୌଣସି ଭାଷାର ଅଗ୍ରଗତିବେଳେ ତାହା ତତ୍କାଳୀନ ଅନ୍ୟ ସଭ୍ୟ ଭାଷାମାନଙ୍କରେ ବ୍ୟବହୃତ ଶବ୍ଦମାନଙ୍କୁ ଆପଣାର କରି ଚଳାଇ-ନିଏ । ତାର ଫଳରେ ଭାଷାର ଅଭିବୃଦ୍ଧି ହୁଏ । ଏ ସମ୍ପର୍କରେ ଯେଉଁ ଭାଷା ଯେତେ ଉଦାର ଭାବରେ ଅନ୍ୟକୁ ଗ୍ରହଣ କରେ, ତାର ଭବିଷ୍ୟତ୍ ସେତିକି ଉଜ୍ଜ୍ୱଳ । ପୃଥିବୀ ଭାଷାମାନଙ୍କ ମଧ୍ୟରେ ଏହି ଉଦାରତା ଦୃଷ୍ଟିରୁ ଇଂରାଜୀ ଭାଷା ସର୍ବୋତ୍କୃଷ୍ଟ ନମୁନା । ଯେ କୌଣସି ଗୋଟିଏ ଇଂରାଜୀ ବାକ୍ୟ ନେଇ ପରୀକ୍ଷା କଲେ ଦେଖାଯିବ ସେଥିରୁ ଅଧିକାଂଶ ବିଦେଶୀ ଶବ୍ଦ । ଇଂରାଜୀ ଭାଷାରେ ରୋମାନ୍ ଶବ୍ଦ ଶତକରା ୫୩, ଟ୍ୟୁଟନିକ୍ ୩୨ ଓ ଗ୍ରୀକ୍ ୧୦ । They, them, husband, sister, put, take ପ୍ରଭୃତି ଶବ୍ଦ ଡାନିସ୍, judge, jury, sir, madam, master, mistress ଫ୍ରେଞ୍ଚ; junior, senior, maximum, minimum

ଲାଟିନ୍; tragedy, comedy, analysis, physics ଗ୍ରୀକ୍; Zenith, Zero, Algebra ଆରବିକ୍; maharaja, jungle, coolie, pyjama ଭାରତୀୟ ଶବ୍ଦ । ଆମେମାନେ ଯାହାକୁ ଇଂରାଜୀଶବ୍ଦ ବୋଲି ଭାବୁଁ, ସେସବୁ ପ୍ରକୃତରେ ଅଣଇଂରାଜୀ ବିଦେଶୀ; ମାତ୍ର ଆମ ଦେଶର ପଣ୍ଡିତମାନେ ବିଦେଶୀ ଶବ୍ଦକୁ ଦୁଆର ମଡ଼ାଇଦେବାକୁ ରାଜି ନୁହନ୍ତି । ସବୁଠୁ ଆଶ୍ଚର୍ଯ୍ୟ କଥା, ଭାଷାତତ୍ତ୍ୱବିତ୍‌ମାନେ ମଧ୍ୟ ହିନ୍ଦୀ ଭାଷାରେ ଉର୍ଦ୍ଦୁ ଶବ୍ଦ ପୂରାଇ ନ ଦେବା ପାଇଁ ଗର୍ଜନ ତୋଳୁଛନ୍ତି; ମାତ୍ର ସୌଭାଗ୍ୟକୁ ଭାଷା ମନୁଷ୍ୟର କୃତ୍ରିମ ନିର୍ଦ୍ଦେଶ ମାନିବା ପାଇଁ ନାରାଜ । ତେଣୁ ଆମେ ଯେତେ ନାରାଜ ହେଲେ ମଧ୍ୟ ଆଧୁନିକ ଯନ୍ତ୍ରପାତି ଓ ଶାସନସୂଚକ ଟ୍ରକ୍, ମଟର, ରେଲ, ରେଡ଼ିଓ, ଟେଲିଭିଜନ୍, ସୋସାଲିଷ୍ଟ, କମ୍ୟୁନିଷ୍ଟ, ପାର୍ଟି, ଷ୍ଟେଟ, ଗଭର୍ଣ୍ଣମେଣ୍ଟ ପ୍ରଭୃତି ହଜାର ହଜାର ଶବ୍ଦ ଭାଷା ଭିତରକୁ ମାଡ଼ି ଚାଲି ଆସୁଛନ୍ତି । କାଗଜପତ୍ରରେ ଯେତିକି ଶବ୍ଦ ବ୍ୟବହାର କରାଯାଉଛି, ତାଠୁ ବେଶୀ ଶବ୍ଦ ଲୋକେ ଗାଁଗହଳରେ ବଙ୍କାଟଙ୍କା କରି ବ୍ୟବହାର କରୁଛନ୍ତି । ଇଂରାଜୀ ଶବ୍ଦ ଏମିତି ମଜ୍ଜାଗତ ହୋଇଗଲାଣି ଯେ, ଓଡ଼ିଆ ଶବ୍ଦ ସହିତ ତାକୁ ସମାସ କରାଯାଉଛି; ଯଥା—ଅର୍ଥକମିଶନ, ଶିକ୍ଷାବୋର୍ଡ଼, ରେଲପଥ, ଷ୍ଟେଟାଧିକାର ପ୍ରଭୃତି । ଓଡ଼ିଆ ଶବ୍ଦରେ ପ୍ରତ୍ୟୟ ଲଗାଇ ଯେପରି ନୂତନ ଶବ୍ଦ ତିଆରି କରାଯାଏ, ଇଂରାଜୀ ଶବ୍ଦରେ ସେହିପରି ଓଡ଼ିଆ ପ୍ରତ୍ୟୟ ଯୋଗକରି ନୂତନ ସୃଷ୍ଟି କରାଯାଉଛି; ଯଥା—କମିଶନରୁ କମିଶନିଆ, ଡାକ୍ତରରୁ ଡାକ୍ତରୀ, ସ୍କୁଲରୁ ଇସ୍କୁଲିଆ ପ୍ରଭୃତି । ଇଂରାଜୀ ଶବ୍ଦ ସଙ୍ଗେ ସଙ୍ଗେ କେତେକ ଇଂରାଜୀ ଶବ୍ଦ ଓ ବାକ୍ୟାଂଶର ଅନୁବାଦ ମଧ୍ୟ ଭାଷା ଭିତରକୁ ଆସୁଛି; ଯଥା—Cold war ଶୀତଳଯୁଦ୍ଧ, one-celled ଏକକୋଷୀ, Creative intelligence ସୃଜନୀ ପ୍ରତିଭା । ପୁନଶ୍ଚ ବିଦେଶରୁ ଯେଉଁସବୁ ଜିନିଷ ଆସୁଛି, ତାକୁ ଲୋକେ ସ୍ଥାନଭେଦରେ ବିଭିନ୍ନ ନାମରେ ଚିହ୍ନିତ କରିବା ଫଳରେ ଶବ୍ଦସଂଖ୍ୟା ବଢ଼ିଯାଉଛି । ବିଦେଶରୁ ଯେତେ ଜିନିଷ ଆସୁଛି, ତାକୁ ଲୋକେ 'ବିଲାତି' ଆଖ୍ୟା ଦେଉଛନ୍ତି; ଯଥା—ବିଲାତି ଲୁଗା, ବିଲାତି ଆଳୁ, ବିଲାତି ବାଇଗଣ । ଟମାଟୋ ଫଳକୁ ଆମେମାନେ

ବଲିତ ବାଇଗଣ କହୁଁ, ସମ୍ବଲପୁର- ଅଞ୍ଚଳରେ ପାତଳଘଣ୍ଟା କହନ୍ତି । ଗ୍ରାଉଣ୍ଡନଟ୍‌କୁ ଏକ ଅଞ୍ଚଳରେ ଚୀନାବାଦାମ ଓ ଅନ୍ୟ ଅଞ୍ଚଳରେ ମୁଗଫଳି ଏବଂ ସାଇକଲକୁ ବାଇସ୍କୁଲ୍ ଓ ଶୁନୁଗାଡ଼ି କହୁଛନ୍ତି । ଓଡ଼ିଆ ଛନ୍ଦରେ ଇଂରାଜୀ ଶବ୍ଦ ଭର୍ତ୍ତି କରି ଶବ୍ଦର ରୂପପର୍ଯ୍ୟନ୍ତ ପରିବର୍ତ୍ତନ କରାଯାଉଛି; ଯଥା—

ବଞ୍ଚିତ ଲାଞ୍ଛିତ ଆମେ ସର୍ବହରା
ବିଷାଦ ନିବିଡ଼ ଜନ ବାଷ୍ଟାଇଲ ।
(‘ଆମେ ଜନସାଧାରଣ’ରୁ)
ଗଡ୍ ହିଲଉଡ୍ ସ୍ୱପନରାଇଜ
ପାରିସର ବୋଲଭାର୍ଡ଼ [ଉଗର]

ଉଚ୍ଚ ସାହିତ୍ୟ ସ୍ତରରେ ବଙ୍ଗ ଭାଷା ଓଡ଼ିଆ ଭାଷାକୁ ବିଶେଷଭାବରେ ପ୍ରଭାବିତ କରୁଥିବାରୁ ଗଦ୍ୟ ପଦ୍ୟ ଉଭୟ ସୂତ୍ରରେ ବଙ୍ଗ ଶବ୍ଦ ଓଡ଼ିଆ ଭାଷାକୋଷକୁ ସମୃଦ୍ଧ କରୁଛି । ନୋଂରା ଓ ନିଧର ଉଦାହରଣ ସ୍ୱରୂପ ଦିଆଯାଇପାରେ ।

ସାହିତ୍ୟ ଓ ସମାଜର ଉଚ୍ଚସ୍ତରର ଲୋକଙ୍କ ଜରିଆରେ ବାହାର ଶବ୍ଦ ଯେତେ ଆସନ୍ତି, ସମାଜର ନିମ୍ନସ୍ତରର ଲୋକଙ୍କ ଜରିଆରେ ତାଠୁ କମ୍ ଆସନ୍ତି । ଓଡ଼ିଶା ଗାଁଗହଳର ଦରିଦ୍ର ଲୋକେ କଲିକତା କଳରେ କାମ କରି ଫେରି ଦୁଇଟି କାରଣରୁ ବଙ୍ଗଳା ଶବ୍ଦ ବ୍ୟବହାର କରନ୍ତି । ପ୍ରଥମତଃ ସେମାନେ କଲିକତା ଯିବା ଫଳରେ ଅନ୍ୟାନ୍ୟ ନିମ୍ନସ୍ତରର ଲୋକଙ୍କଠାରୁ ଆପଣାକୁ ଉନ୍ନତ ଓ ମାର୍ଜିତ ବୋଲି ମନେକରନ୍ତି । ଦ୍ୱିତୀୟତଃ ଅନେକ ସମୟରେ ସେମାନେ ଯେଉଁ ଶବ୍ଦ ବ୍ୟବହାର କରନ୍ତି, ତାର ଠିକ୍ ଓଡ଼ିଆ କଣ ସେମାନଙ୍କୁ ଜଣା ବି ନ ଥାଏ । ମାତ୍ର ଅଧିକାଂଶ ପ୍ରଥମୋକ୍ତ କାରଣରୁ ବିଦେଶୀ ଭାଷା କହିବା ପାଇଁ ବେଶୀ ପସନ୍ଦ କରନ୍ତି ବୋଧହୁଏ । ଏହିପରି କେତେକ ଶବ୍ଦ ହେଉଛି— ବାଗନା, ବାଡ଼ି, ତଲାଓ, ଦାଦା, ମଇନା, କାପଡ଼, ଖାବାର ପ୍ରଭୃତି । ସାମାଜିକ ଓ ରାଜନୈତିକ ପରିବର୍ତ୍ତନରେ ମଧ୍ୟ ଅନେକ ନୂତନ ଶବ୍ଦ

ଗ୍ରହଣ କରିଆସନ୍ତି । ବିଗତ ଶତାବ୍ଦୀର ଆନ୍ଦୋଳନ, ମହାଭାରତୀୟ ଜାତୀୟ ଆନ୍ଦୋଳନ ଓ ସ୍ୱାଧୀନତା ପରେ ଅବଶ୍ୟ ନୂତନ ଶବ୍ଦ ଓଡ଼ିଆ ଭାଷାକୁ ସମୃଦ୍ଧ କରିଛନ୍ତି; ଯଥା—ସତ୍ୟାଗ୍ରହ, ସ୍ୱେଚ୍ଛାସେବକ, ଶହୀଦ, ଖଦଡ଼, ରାମଧୂନ, ଚରଖା, ସହଯୋଗ, ଅସହଯୋଗ, ଆନ୍ଦୋଳନ, କଳାପୋତା, କଳାବଜାର, ଟାଉଟର ପ୍ରଭୃତି ।

ଆମମାନଙ୍କର ସାମାଜିକ ବ୍ୟବସ୍ଥା ଯାହା, ସେଥିରେ ଭାଷା ବ୍ୟବହାର କରିବା ପାଇଁ ସ୍ତ୍ରୀ ପୁରୁଷ ଉଭୟଙ୍କର ସମାନ ଅଧିକାର ନାହିଁ । ଘରର ମାନ୍ୟବ୍ୟକ୍ତି ଶାଶୁ, ଶଶୁର, ଦେଢ଼ଶୁର ପ୍ରଭୃତିଙ୍କର ନାମ ବଞ୍ଚାଇବା ପାଇଁ ସ୍ତ୍ରୀଲୋକମାନେ କେତେକ ନୂତନ ଶବ୍ଦ ସୃଷ୍ଟି କରନ୍ତି । ପୁରାତନ ଭାଷାତତ୍ତ୍ୱବିତ୍‌ମାନେ ଦୁଇ ଶବ୍ଦ ଭିତରେ ଗୋଟିଏ ମାତ୍ର ଅକ୍ଷର ବା ଧ୍ୱନିର ସାମଞ୍ଜସ୍ୟ ଦେଖିଲେ ଉଭୟ ଶବ୍ଦ ପରସ୍ପର ସମ୍ପୃକ୍ତ ବୋଲି ପ୍ରମାଣ କରିବସନ୍ତି । ଡଲାର ଓ ଦୀନାର ଶବ୍ଦର ଆଦ୍ୟରେ ଡ, ଦ ଓ ଶେଷରେ ର ସାମଞ୍ଜସ୍ୟ ଦେଖି ଦୀନାର ଶବ୍ଦରୁ ଡଲାରର ଜନ୍ମ ବୋଲି କଳ୍ପନା କରନ୍ତି । ସେହିପରି ସ୍ତ୍ରୀଲୋକମାନେ ଯେଉଁ ନାମ ବଞ୍ଚାଇବାକୁ ଚାହାନ୍ତି, ଯଦି ସେହି ନାମର ଅନ୍ୟ ଶବ୍ଦ ସହିତ ଅକ୍ଷରଟାଏ ବି ସମାନ ଥାଏ, ତେବେ ସେ ସେହି ଶବ୍ଦ ଉଚ୍ଚାରଣ ନ କରି ଅନ୍ୟ ଏକ ଶବ୍ଦ ତିଆରି କରିବେ । ଉଦାହରଣ ସ୍ୱରୂପ ସ୍ୱାମୀ ନାମ 'ଗୁରୁବାରିଆ' ହେଲେ ସ୍ତ୍ରୀ 'ଗୁଡ଼' ଶବ୍ଦ ଉଚ୍ଚାରଣ ନ କରି ଗୁଡ଼କୁ ମଧୁର ବୋଲି କହନ୍ତି । ଏହିଭଳିଭାବରେ ବିଗ୍ରହ କଲେ ଓଡ଼ିଆ ଭାଷାରେ ନାଁ ବଞ୍ଚାଇବା ଶବ୍ଦରେ ଏକ ସ୍ୱତନ୍ତ୍ର ଅଭିଧାନ ହୋଇପାରିବ । ଉଦାହରଣ—

| ଲୋକର ନାମ | ବଞ୍ଚେଇବା ଶବ୍ଦ | ନୂତନ ତିଆରି ଶବ୍ଦ |
|---|---|---|
| ଚନ୍ଦ୍ରଧର | ଚକୁଳିପିଠା, ଚକ | ନେଉଟ ପିଠା, ପଦ୍ମ |
| ନରହରି | ନଡ଼ିଆ | ଖୋରପା, ସଢ଼େଇ |
| ହରି | ହରଡ଼ | ନାଲିମଞ୍ଜି, ରଙ୍ଗଫଳ |
| ଶନିଆ | ଶନିବାର | ଖରବାର |
| ଗୁରୁବାରି | ଗୁଆ, ଗୁଆକାଠ | ଫଳ, ଫଳକାଠ |

| ଲୋକର ନାମ | ବର୍ଜ୍ଜଇବା ଶବ୍ଦ | ନୂତନ ତିଆରି ନାମ |
|---|---|---|
| ବାଇଧର | ବାଇଗଣ | ଚୁଡ଼ା, କଣ୍ଟେଇମୁଣ୍ଡି, ଝଟୁପୁର |
| ଝାର | ବଣ | ପିଠାମୃଗ |
| ମନୁ | ମନ | ହୋସ |

ଆଦୃତ ମାନ୍ୟବ୍ୟକ୍ତିମାନଙ୍କୁ ଡାକିବା ପାଇଁ ବିଭିନ୍ନ ଲୋକେ ଭିନ୍ନ ଭିନ୍ନ ନାମ ଦିଅନ୍ତି । ବାପାଙ୍କ ବଡ଼ଭାଇଙ୍କୁ ପିଲାଏ ବଡ଼ବାପା, ସାନ୍ତବାପା, ନନାବାପା ଓ ବଡ଼ମା'କୁ ସାନ୍ତମା, ମାମା ବୋଲି ନାନାଭାବରେ ଡାକନ୍ତି । ଭାଇବୋହୂ ଦେଢ଼ଶୁରଙ୍କୁ ସାନ୍ତ, ବଡ଼ସାନ୍ତ, ନନାସାନ୍ତ ବୋଲି ମାନ୍ୟ କରନ୍ତି ।

ଗଣିବା ପାଇଁ ଲୋକେ ସ୍ଥାନଭେଦରେ ବିଭିନ୍ନ ଶବ୍ଦ ବ୍ୟବହାର କରନ୍ତି । ଗଣନା ଆରମ୍ଭବେଳେ ଏକକୁ କେହି ବହୁତ, କେହି ରାମ ବୋଲି କହନ୍ତି; ଏଗାରକୁ କେତେକ ଦ୍ୱାଦଶ ବୋଲି ଗଣନ୍ତି । ବୋଧହୁଏ ଦଶ ପରେ ଏଗାର ଆଉ ଏକ ଦଶର ଆରମ୍ଭ ବୋଲି ଏଗାରକୁ ଦ୍ୱାଦଶ କହନ୍ତି ।

କବିତାରେ ସ୍ୱର ଓ ଉପଧା ମିଳନ ପାଇଁ ଅନେକ ସମୟରେ ଶବ୍ଦକୁ ବିକଳାଙ୍ଗ କରି ନୂତନ ଶବ୍ଦ ସୃଷ୍ଟି କରିବାକୁ ହୁଏ । ରକ୍ତ ଅର୍ଥରେ 'ଲହୁ' ଶବ୍ଦ 'ନୋହୁ'ରେ ପରିଣତ ହୋଇଛି ।

ପାହାଚରୁ ପଡ଼ି ଛୁଆଟାର ତେଣେ ଭାସିଯାଉଥିଲା ନୋହୁ ।

['ଘରପାଇଁଟି', ବିଦ୍ୟୁତ୍‌ପ୍ରଭା ଦେବୀ]

ଆଜି ଦୁନିଆରେ ଯେତିକି ନୂଆ ଜିନିଷ ଆବିଷ୍କୃତ ହେଉଛି, ସେତିକି ନୂତନ ନାଁ ମଧ୍ୟ ଆବିଷ୍କୃତ ହେଉଛି । ଆମେରିକାରେ ରାସ୍ତା-ପାର୍ଶ୍ୱରେ ଓ ହ୍ରଦକୂଳମାନଙ୍କରେ ଆଜିକାଲି ଏକପ୍ରକାର ନୂତନ ପାନ୍ଥଶାଳା ତିଆରି ହୋଇଛି । ସେଥିରେ ଅତିଥିମାନେ ଆଶ୍ରୟ ନିଅନ୍ତି ଓ ସେମାନଙ୍କ ମଟର ମଧ୍ୟ ତହିଁରେ ଆଶ୍ରୟ ନିଏ । ଅତିଥିଶାଳା hotel ତହିଁରେ motor ମିଶି (hotel+motor) motel

ହୋଇଛୁ । ଏହିପରି ଦୁଇଟି ଲେଖାଁ ଶବ୍ଦ ମିଶି ଗୋଟିକିଆ ଶବ୍ଦ ଅନେକ ତିଆରି ହେଉଛୁ । ଯେଉଁ ଦେଶରେ ଗତି ଯେତେ କ୍ଷିପ୍ର, ଯାନ୍ତ୍ରିକ ଉଦ୍ଭାବନ ଯେତେ ବେଶୀ, ସେଠି ଏହିପ୍ରକାର ମିଶ୍ରଣ ଅନେକ ହେଉଛୁ; ଯଥା—breakfast ଓ lunch ମିଶି brunch, cinema ଓ panorama ମିଶ cinorama । ଓଡ଼ିଆରେ ଚେଷ୍ଟା ଓ ଚେଷ୍ଟା ମିଶି ଚେରେଷ୍ଟା ଶବ୍ଦର ସୃଷ୍ଟି ହୋଇଛୁ ।

ନୂତନ ସୃଷ୍ଟି ପାଇଁ ସବୁବେଳେ ନୂତନ ତିଆରି ଶବ୍ଦକୁ କେବଳ ଅନାଇବାକୁ ପଡ଼େନା । ପୁରାତନ ସାହିତ୍ୟର ଶବ୍ଦଭଣ୍ଡାର ନୂତନ ସାହିତ୍ୟକୁ ବହୁଭାବରେ ସାହାଯ୍ୟ କରେ । ଏପରି କି ନୂତନ ବୈଜ୍ଞାନିକ ଶବ୍ଦ ସୃଷ୍ଟି ପାଇଁ ଗ୍ରୀକ୍ ଲାଟିନ ଶବ୍ଦ ବି ବ୍ୟବହାର କରାଯାଏ । ଗ୍ରୀକ୍ hydro ଏବଂ auto, logy ନେଇ ଆଧୁନିକ hydro-electricity automobiles, anthropology ଶବ୍ଦମାନ ଗଢ଼ାଯାଉଛୁ । ସେହିପରି ଭାରତୀୟ ଭାଷାମାନଙ୍କରେ ନୂତନ ଧାରଣାମାନଙ୍କୁ ରୂପ ଦେବା ପାଇଁ ସଂସ୍କୃତ ଶବ୍ଦଭଣ୍ଡାରରୁ ଶବ୍ଦ ନିଆଯାଉଛୁ । କେତେକ ଇଂରାଜୀ ଶବ୍ଦକୁ ଭାରତୀୟ ଭାଷାମାନଙ୍କରେ ଯେଉଁ ରୂପ ଦିଆଯାଉଛୁ, ତାହାର କେତେକ ନମୁନା ଦିଆଯାଉଛୁ :—

| ଇଂରାଜୀ ଶବ୍ଦ | ଭାରତୀୟ ଶବ୍ଦ |
|---|---|
| Tax collector | କର ବ୍ୟାହର୍ତ୍ତି |
| Train | ବାଷ୍ପୀୟ ଶକଟ |
| Super human | ଅତିମାନୁଷ |
| Ambassador | ରାଷ୍ଟ୍ରଦୂତ |

ଏହି ଦୃଷ୍ଟିରୁ ବିଚାରକଲେ କୌଣସି ଭାଷା ମୃତ ନୁହେ । ଯେଉଁ ସଂସ୍କୃତ ଭାଷାକୁ ଲୋକେ ମୃତ ବୋଲି କହନ୍ତି, ସେହି ଭାଷାର ଶବ୍ଦ ପୁଣି ଆଧୁନିକ ଭାଷାର ପରିପୁଷ୍ଟି ସାଧନ କରୁଛୁ ।

ଅନେକ ସମୟରେ ମନରେ ପ୍ରଶ୍ନଉଠେ, ଗୋଟିଏ ଜିନିଷ ପାଇଁ ଗୋଟିଏ ନାଁ ନ ହୋଇ ଏକାଧିକ ନାମ ହେବାର କାରଣ କ'ଣ ?

ଯଥା—ହାତକୁ ହାତ ନ କହି ପୁଣି କର, ପାଣି, ହସ୍ତ, ଏତେ କଥା କହିବାର ଦରକାର କ'ଣ ? ପାଉଣାକୁ ଇଂରାଜୀରେ salary ନ କହି pay, emolument, fee, wages, stipend, dividend, subvention କହନ୍ତି ଓ ଓଡ଼ିଆରେ ମଧ୍ୟ ଦରମା, ପାଉଣା, ଭଡ଼ା, ହତା, ମୂଲ, ବର୍ତ୍ତନ, ପଡ଼ି ପ୍ରଭୃତି ନାନା ଶବ୍ଦ ବ୍ୟବହାର କରନ୍ତି । କାରଣ ସ୍ୱରୂପ କୁହାଯାଇପାରେ ଯେ ଯେଉଁ ଶବ୍ଦ ଯେତେପ୍ରକାର ବ୍ୟବହାରରେ ଆସେ, ବ୍ୟବହାରଭେଦରେ ତାର ସେତିକି ନାମକରଣ ହୁଏ । ଯଦି ଓ ଦରମା, ହତା, ବର୍ତ୍ତନ ଓ ପଡ଼ିର ସାର ଅର୍ଥ ଏକ, ତଥାପି ଆମ ସମାଜରେ ପ୍ରତ୍ୟେକର ସ୍ୱତନ୍ତ୍ର ବ୍ୟବହାର ଅଛି ଏବଂ ପ୍ରତ୍ୟେକ ଶବ୍ଦ ମଧ୍ୟରେ ସାମାଜିକ ବିଭିନ୍ନ ସ୍ତରର ସୂଚନା ଅଛି । ଓଡ଼ିଆରେ କେହି କହନ୍ତି ନାହିଁ, "ମାଷ୍ଟରଙ୍କର ବର୍ତ୍ତନ କେତେ ?" କାରଣ ସାଧାରଣ ବ୍ୟବହାର ହେଉଛି, "ମାଷ୍ଟରଙ୍କର ଦରମା କେତେ ?" ଉପରୋକ୍ତ ଶବ୍ଦମାନଙ୍କୁ ନିମ୍ନଲିଖିତଭାବରେ ବ୍ୟବହାର କରାଯାଇଥାଏ—

ଚଉକିଆ ତା ହତା ଚଢ଼ୁଛି ।
ମୂଲିଆ ତା ମୂଲ ପାଇନି ।
ଅବଧାନ ତା ପଡ଼ି ନେଲାଣି ।
ବାବୁ ତାଙ୍କ ଦରମା ପାଇଲେଣି ।

କେହି କେବେ କହେ ନାହିଁ, "ବାବୁ ତାଙ୍କ ମୂଲ ପାଇ ନାହାନ୍ତି ।" କାରଣ ବାବୁଙ୍କ ସମ୍ପର୍କରେ ମୂଲଟା ନିତାନ୍ତ ଅସମ୍ମାନସୂଚକ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ ସ୍ଥାନ, ସମାଜ, ସ୍ତର ଓ ବ୍ୟବହାରଭେଦରେ ବିଭିନ୍ନ ଶବ୍ଦର ଆବଶ୍ୟକତା ଥିବାରୁ ଗୋଟିଏ ଶବ୍ଦ ପାଇଁ ଏତେ ଶବ୍ଦ ଓଡ଼ିଆରେ ଯଦିଓ ଏକାର୍ଥବୋଧକ, ତଥାପି ସଂସ୍କୃତରେ ଭାର୍ଯ୍ୟା, ଜାୟା, ବନିତା ବିଭିନ୍ନ ସୂକ୍ଷ୍ମାର୍ଥ ବୁଝାଇବା ପାଇଁ ବ୍ୟବହୃତ ହୁଏ । ଏହି ପ୍ରତିଶବ୍ଦମାନଙ୍କଦ୍ୱାରା ଶବ୍ଦଭଣ୍ଡାର ପରିପୁଷ୍ଟ ହୁଏ । ଏହା ଛଡ଼ା ଏକ ଭାବକୁ ବିଭିନ୍ନ ସ୍ତରର ଲୋକ ବିଭିନ୍ନ ବାକ୍ୟାଂଶଦ୍ୱାରା ପ୍ରକାଶ କରନ୍ତି । 'ସେ ମରିଗଲେ' ଏହି ସାଧାରଣ କଥାକୁ କେହି 'ସେ ସ୍ୱର୍ଗାରୋହଣ

କଲେ’,‘ସେ ପରଲୋକ ଗମନ କଲେ’,‘ତାଙ୍କର କାଳ ହୋଇଗଲା’, ‘ସେ ଚାଲିଗଲେ’, ‘ସେ ଆଉ ଇହଧାମରେ ନାହାନ୍ତି’, ‘ସେ ମହାପ୍ରସ୍ଥାଣ କଲେ’, ‘ସେ ଶେଷ ନିଦ୍ରାରେ ଅଭିଭୂତ ହେଲେ’, ‘ସେ ଆଉ ନାହାନ୍ତି’ ବା ‘ସେ ନାମ ଭଜିଲେ’ ବୋଲି କହନ୍ତି । ମାତ୍ର ଓଡ଼ିଆ ପାଠକମାନେ ବୁଝିପାରିବେ ଯେ ‘ସେ ଆଉ ଇହଧାମରେ ନାହାନ୍ତି’ ବାକ୍ୟରେ ଯେଉଁ ସହାନୁଭୂତି ଅଛି, ‘ସେ ନାମ ଭଜିଲେ’ ବାକ୍ୟରେ ତାହା ନାହିଁ; ବରଂ ବିଦ୍ରୂପର କ୍ଷୀଣ ଆଭାସ ଅଛି ।

---

# ମଣିଷର ମୁଣ୍ଡବ୍ୟଥା--ବ୍ୟାକରଣ

| | | |
|---|---|---|
| ରାମଃ | ରାମୌ | ରାମାଃ |
| ଫଳଂ | ଫଳେ | ଫଳାନି |

ଏତିକି ହେଲେ ଯଦି ସଂସ୍କୃତ ଭାଷା ହୋଇଯାଇଥାନ୍ତା, ଦୁନିଆଁଟା ଅନେକ ଭଲ ହୋଇଥାନ୍ତା । ତା ପଛକୁ--

| | | |
|---|---|---|
| ମୁନିଃ | ମୁନୀ | ମୁନୟଃ |
| ବାରି | ବାରିଣୀ | ବାରୀଣି |

ପୁଣି କ'ଣ ? ମଣିଷର କ'ଣ ଦୁଃଖର ଅବସାନ ନାହିଁ କି ? ରାମ ଓ ମୁନି ପୁଂଲିଙ୍ଗ, ପୁଣି ଫଳ ଓ ବାରି କ୍ଲୀବଲିଙ୍ଗ । ସବୁଠୁଁ ଆଶ୍ଚର୍ଯ୍ୟ କଥା, ମଣିଷର ମୁଖନିଃସୃତ ଶବ୍ଦର ପୁଣି ଲିଙ୍ଗ ଅଛି । ଧନ୍ୟ ପାଣିନି, ପାତଞ୍ଜଳି ! ଧନ୍ୟ ସିସେରୋ, ଆରିଷ୍ଟଟଲ୍ ! ମୁକ୍ତର ମଣିଷ ପାଇଁ ତୁମେ କି ବନ୍ଧନ ସୃଷ୍ଟି କଲ ସତେ ? ଏହି ହେଲା ବ୍ୟାକରଣ, ଏହି ହେଲା ମଣିଷର ମୁଣ୍ଡବ୍ୟଥା । ଏଇଥିପାଇଁ ପଣ୍ଡିତଙ୍କୁ ଡର, ସଂସ୍କୃତକୁ ଜୁହାର; ମାତ୍ର ମଣିଷଜାତିର ଦୁର୍ଭାଗ୍ୟ ଏମିତି ଯେ ବ୍ୟାକରଣ ନ ଥାଇ ଭାଷା ନାହିଁ (ଅବଶ୍ୟ ଯେଉଁ ଭାଷାସବୁ ଏପର୍ଯ୍ୟନ୍ତ ଲିଖିତ ହୋଇ ନାହିଁ ସେମାନଙ୍କର କଥା ସ୍ୱତନ୍ତ୍ର ) । କହ ଓଡ଼ିଆ, କହ ବଙ୍ଗଳା, କହ ଇଂରାଜୀ, ପ୍ରତ୍ୟେକ ଭାଷାର ବ୍ୟାକରଣ ଅଛି; ମାତ୍ର କିଏ ବେଶୀ, କିଏ କମ୍ କଠିନ । ଭାଷା ପ୍ରକୃତିର ସୃଷ୍ଟି, ବ୍ୟାକରଣ ମନୁଷ୍ୟର ସୃଷ୍ଟି; ମାତ୍ର ନିଜ ସୃଷ୍ଟିରେ ମଣିଷ ଏପରି ବିବ୍ରତ ହୋଇପଡ଼ିଛି ଯେ ବ୍ୟାକରଣ ନାମ ଧରିଲେ ତାର ହୃତ୍କମ୍ପ । ଆଜି ଯୁଗରେ ପୃଥିବୀ କ୍ଷୁଦ୍ର

ହୋଇଯିବା ଫଳରେ ମାତୃଭାଷା ଛଡ଼ା ଆହୁରି ଅନେକ ଭାଷା ପଢ଼ିବାର ଆବଶ୍ୟକତା ପଡ଼ୁଛି । ମାତ୍ର ଭାଷା ପଢ଼ିବା ଆଗରୁ ବ୍ୟାକରଣର ପ୍ରେତମୂର୍ତ୍ତି ଦେଖି ମଣିଷ ଗୁହାରି । ଯେଉଁ ରୁଷିଆରେ ଜୀବନକୁ ସରଳ କରିବା ପାଇଁ ପ୍ରାଣାନ୍ତ ଚେଷ୍ଟା ଚାଲିଛି, ସେହି ରୁଷିଆ ଭାଷାର ବ୍ୟାକରଣ ପୁସ୍ତକ ଖୋଲିଦେଲେ ସବୁ ସାହସ ଲୋପ ହୋଇଯାଏ; କିନ୍ତୁ ସେସବୁ ସତ୍ତ୍ୱେ ଭାଷାଶିକ୍ଷା ପାଇଁ ବ୍ୟାକରଣ ନିତାନ୍ତ ଆବଶ୍ୟକ, ଘର ତୋଳିବା ପାଇଁ ପ୍ଲାନ୍ ଓ ଲୁହାର ଫ୍ରେମ ଯେମିତି ଦରକାର; ଅବଶ୍ୟ ଘରତୋଳା ପରେ ଫ୍ରେମ୍ କାଢ଼ିନେଲେ କିଛି ଯାଏ ଆସେ ନାହିଁ ।

ବ୍ୟାକରଣ ଭାଷାର ବୈଜ୍ଞାନିକ ବିଶ୍ଳେଷଣ । ଭାଷାଶିକ୍ଷାକୁ ସହଜ କରିବା ତାର ଉଦ୍ଦେଶ୍ୟ; ମାତ୍ର ଭାଷାଶିକ୍ଷାକୁ ସହଜ କରିବା ଯାହାର ଲକ୍ଷ୍ୟ, ତାହା କାହିଁକି ଆତଙ୍କ ସୃଷ୍ଟି କରେ, ତାହା ବିଚାର କରିବାର କଥା । ପ୍ରଥମ କଥା ବିବାହ ପୂର୍ବରୁ ପୁତ୍ରଲାଭ ଆଶା ଯେମିତି ହାସ୍ୟାସ୍ପଦ ଓ ବିପଜ୍ଜନକ, ଭାଷାର ପ୍ରକୃତ ସ୍ୱରୂପ ଦେଖିବା ପୂର୍ବରୁ ତାର ବ୍ୟାକରଣ ମୁଖସ୍ଥ କରିବା ସେହିପରି ଭୟଙ୍କର ଓ ନୈରାଶ୍ୟଜନକ । ପୁରାତନ ଭାଷାଶିକ୍ଷାରେ ଏହି ହେଲା ପ୍ରଧାନ ବିପଦ । ସ୍କୁଲରେ ଏବେ ମଧ୍ୟ 'ବାୟୁର୍ବାତି', 'ସୂର୍ଯ୍ୟୋଭାତି' ପ୍ରଭୃତି ସରଳ ସଂସ୍କୃତ ପଂକ୍ତି ଆରମ୍ଭ କରିବା ପୂର୍ବରୁ 'ରାମଃ ରାମୌ ରାମାଃ' ମୁଖସ୍ଥ କରିବାକୁ ପଡ଼ୁଥିବାରୁ ପିଲାମାନଙ୍କର ଏକ ସଂସ୍କୃତ-ଭୟ ଜାତ ହୁଏ । ଆଧୁନିକ ଭାଷାଶିକ୍ଷାବିତ୍-ମାନଙ୍କର ମତ ଯେ ବ୍ୟାକରଣର ନାମ ପର୍ଯ୍ୟନ୍ତ ଉଚ୍ଚାରଣ ନ କରି ପିଲାଙ୍କୁ ଭାଷାଶିକ୍ଷା ଦିଆଯିବା ଉଚିତ । କାଳକ୍ରମେ ଭାଷାରେ ସମ୍ୟକ୍ ଜ୍ଞାନ ହେଲା ପରେ ସେହି ଭାଷା ଭିତରୁ ବ୍ୟାକରଣର ଆଇନ କାନୁନ ଖୋଜି ବାହାର କରିବା ଉଚିତ । ସେ ଆଇନ ଖୋଜିବାରେ ଛାତ୍ରମାନଙ୍କୁ ଶିକ୍ଷକ କେବଳ ପଥ ପ୍ରଦର୍ଶନ କରାଇବା କଥା । ଭାଷାରେ ସାଧାରଣ ନିୟମ କ'ଣ, ନିପାତନ କେଉଁଠି, ଛାତ୍ରମାନେ ଆପେ ତାହା ବାହାର କରି ଆବିଷ୍କାର-ଆନନ୍ଦ ଉପଭୋଗ କରିବା ଉଚିତ । ଏହା ଫଳରେ ବ୍ୟାକରଣ ବହିଃସୃଷ୍ଟ କୌଣସି ପଦାର୍ଥ ତାଙ୍କ

ମୁଣ୍ଡରେ ଲଦା ହେଲା ବୋଲି ସେମାନେ ମନେ କରି ତାହାକୁ ନିଜ ସ୍ପଷ୍ଟ ବୋଲି ଭାବି ଆନନ୍ଦ ଉପଭୋଗ କରିବେ । ତା ଛଡ଼ା ଅନେକ ଭାଷାତତ୍ତ୍ୱବିତ୍ତଙ୍କର ଧାରଣା ଯେ ଛାତ୍ରମାନଙ୍କ ପକ୍ଷରେ ଗ୍ରୀକ୍, ଲାଟିନ୍, ସଂସ୍କୃତ ପ୍ରଭୃତି ପ୍ରାଚୀନ ଭାଷାର ଅଧ୍ୟୟନ ବିଶେଷ ଉପକାରୀ । ଗଣିତ ପରି ଏଗୁଡ଼ିକ ଛାତ୍ରମାନଙ୍କର ବୁଦ୍ଧିଶକ୍ତିକୁ ତୀକ୍ଷ୍ଣ ଏବଂ ସଂଯତ କରନ୍ତି । ଏହି ସତ୍ୟକୁ ଉପଲବ୍ଧି କରିବା ପାଇଁ ନୂତନ ପ୍ରଣାଳୀରେ ବ୍ୟାକରଣ ପଢାଯିବା ଉଚିତ । ନଚେତ୍ ହଜମ କରି ନ ପାରି କେବଳ ଅଜୀର୍ଣ୍ଣ ଯାର ହେବ ।

ଦ୍ୱିତୀୟ କଥା, ପୁରାତନ ବ୍ୟାକରଣଗୁଡ଼ିକ ବହୁ ସଂଜ୍ଞା ଓ 'ସ୍ୟା ଠିକ୍', ତା ଭୁଲ୍' ଖାଲି ଏଇଥିରେ ପୂର୍ଣ୍ଣ । ସନ୍ଧାନ୍ତରେ ହଳ କରିବା ଶାସ୍ତ୍ର-ନିଷିଦ୍ଧ; ମାତ୍ର ସାଧାରଣ ଲୋକକୁ ମୋଟେ ଜଣା ନାହିଁ କାହିଁକି ହଳ ନ କରିବ । ସେହିପରି ବ୍ୟାକରଣରେ ଖାଲି ଆଇନ କାନୁନ ଭର୍ତ୍ତି । କାହିଁକି ସେ ଆଇନ ହୋଇଛି, ଛାତ୍ର ଶିକ୍ଷକ ଉଭୟଙ୍କୁ ଅଜଣା । ଲତା ଶବ୍ଦ ସ୍ତ୍ରୀଲିଙ୍ଗ, 'ଦାରଃ' ଶବ୍ଦର ଅର୍ଥ ଭାର୍ଯ୍ୟା ହେଲେ ମଧ୍ୟ ତାହା ପୁଂଲିଙ୍ଗ । ମାତ୍ର କାହିଁକି ପୁଂଲିଙ୍ଗ ଜଣା ନ ଥିବାରୁ ମୁଖସ୍ଥ ପାଇଁ କଷ୍ଟ । ଇଂରାଜୀ ଏକବଚନରେ s ଯୋଗ କରିଦେଲେ ବହୁବଚନ ହେବା କଥା; ଯଥା—cat, cats; rat, rats; bat, bats; କିନ୍ତୁ ox କାହିଁକି oxen, child କାହିଁକି children କିମ୍ବା foot କାହିଁକି feet, ଏହି ତଥାକଥିତ ନିପାତନର ନିୟମ ନ ଦେଖାଇ ଦେବା ପର୍ଯ୍ୟନ୍ତ ବ୍ୟାକରଣ ମଣିଷର ମୁଣ୍ଡବ୍ୟଥାର କାରଣ ହୋଇ ରହିବ ।

ଏହି ଅବସରରେ ଆମେମାନେ ଯେଉଁ ବ୍ୟାକରଣ ପଢ଼ୁଛୁ ତାର ଟିକିଏ ବିଗ୍ରହ କରାଯାଉ । ବ୍ୟାକରଣ ଦୁଇ ପ୍ରକାର—ବର୍ଣ୍ଣନାତ୍ମକ (descriptive) ଏବଂ ଐତିହାସିକ (historical) । ବର୍ଣ୍ଣନାତ୍ମକ ବ୍ୟାକରଣରେ ଭାଷାର ଏକ ନିର୍ଦ୍ଦିଷ୍ଟ ସମୟର ଅବସ୍ଥାକୁ ବର୍ଣ୍ଣନା କରାଯାଇଥାଏ; କିନ୍ତୁ ଐତିହାସିକ ବ୍ୟାକରଣରେ ଭାଷାର ଐତିହାସିକ

ତଥ୍ୟ ବୁଝାଇ ଦିଆଯାଇଥାଏ । ଉଦାହରଣ ସ୍ୱରୂପ 'ବର୍ଣ୍ଣନାତ୍ମକ ବ୍ୟାକରଣ ଲାଟିନ oxର ବହୁବଚନ କେମିତି oxen ହେଲା, ସେହି ପ୍ରଶ୍ନର ଉତ୍ତର ଐତିହାସିକ ବ୍ୟାକରଣରେ ସବିସ୍ତାର ଲେଖାଥାଏ । ଓଡ଼ିଆରେ 'କେଉଁ' 'ଯେଉଁ' ଶବ୍ଦ କଂ, ଯଂ ପ୍ରଭୃତି ସଂସ୍କୃତ ଶବ୍ଦରୁ କେଉଁ ସୂତ୍ରରେ ନିଷ୍ପନ୍ନ ହୋଇଛି, ତାର ବିଚାର ହୋଇଥାଏ; ମାତ୍ର ଆମେମାନେ ଯେଉଁ ବ୍ୟାକରଣ ପଢ଼ୁ, ତାହା ନାମତଃ ବର୍ଣ୍ଣନାତ୍ମକ ହେଲେ ମଧ୍ୟ ତହିଁରେ ଭାଷାର ପ୍ରକୃତ ଚିତ୍ର ମିଳେ ନାହିଁ । ଉଦାହରଣ ସ୍ୱରୂପ ଇଂରାଜୀରେ Nesfield Grammar ଗ୍ରୀକ ଲାଟିନ୍ ବ୍ୟାକରଣ ଭାବଧାରାଦ୍ୱାରା ଓ ଓଡ଼ିଆ ବ୍ୟାକରଣ ସଂସ୍କୃତ ଭାବଧାରାଦ୍ୱାରା ନିୟନ୍ତ୍ରିତ । ଓଡ଼ିଆ, ଆସାମୀ ଓ ହିନ୍ଦୀ ପ୍ରଭୃତି ଭାଷାର ସ୍ୱତନ୍ତ୍ର ଆଧୁନିକ ବ୍ୟାକରଣ ବିରଳ । ଅବଶ୍ୟ ହେନରି ସ୍ୱୀଟ୍‌ଙ୍କ ଅମଳରୁ ଇଂଲଣ୍ଡରେ ଆଧୁନିକ ବର୍ଣ୍ଣନାତ୍ମକ ଓ ଐତି-ହାସିକ ବ୍ୟାକରଣର ସୃଷ୍ଟି ହେଲାଣି । ମାତ୍ର Nesfieldଙ୍କ ପ୍ରମାଦପୂର୍ଣ୍ଣ ପ୍ରଭାବ ଏପର୍ଯ୍ୟନ୍ତ ଅପସୃତ ହୋଇନାହିଁ । ଲଣ୍ଡନ ସ୍କୁଲପନ୍ଥୀ ଭାଷାତତ୍ତ୍ୱ-ବିତ୍‌ମାନେ Nesfieldଙ୍କୁ ନିର୍ମୂଳ କରିବା ପାଇଁ ବଦ୍ଧପରିକର; ମାତ୍ର ତାହା ସମୟସାପେକ୍ଷ ।

ବ୍ୟାକରଣ ସମ୍ପର୍କରେ ମନୁଷ୍ୟଜାତିର ଭ୍ରାନ୍ତ ଧାରଣା ବିଚାର କଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ବ୍ୟାକରଣଦ୍ୱାରା ଆମେମାନେ ଏପରି ପ୍ରଭାବିତ ହୋଇଛୁ ଯେ ପୁରାତନ ଧାରଣାକୁ ହଟାଇବା ପାଇଁ ଆମକୁ ଶତାଧିକ ବର୍ଷ ଲାଗିପାରେ । ମାତୃଭାଷା ପଢ଼ିଲାବେଳେ ପାଠକ ଦେଖେ ନିଜ ଭାଷାରେ ବିଶେଷ୍ୟ, ବିଶେଷଣ, ସର୍ବନାମ, ଲିଙ୍ଗ, ବଚନ, ପୁରୁଷ, କାରକ, ବିଭକ୍ତି ଅଛି । ତେଣୁ ଚୀନ, ଜାପାନ, ଆଫ୍ରିକାନ୍ ପ୍ରଭୃତି ଯେ କୌଣସି ଭାଷା ପଢ଼ିଲା ବେଳେ ମନେହୁଏ, ସେହି ଭାଷାମାନଙ୍କରେ ମଧ୍ୟ ବିଶେଷ୍ୟ, ବିଶେଷଣ ପ୍ରଭୃତି ନିଶ୍ଚୟ ଥିବ । ଇଂରାଜୀ ବ୍ୟାକରଣରେ ମଧ୍ୟ Noun, Adjective, Number, Gender, Active, Passive, Subjunctive, Infinitive ପ୍ରଭୃତି କେତେକ ବଦ୍ଧମୂଳ ପୁରାତନ ଲାଟିନ୍ ଧାରଣା ଅଛି । ଅଷ୍ଟାଦଶ ଶତାବ୍ଦୀରେ ସମଗ୍ର

ଇଉରୋପରେ ଲାଟିନ୍ ବ୍ୟାକରଣ ବଳିଷ୍ଠ ପ୍ରଭାବ ବିସ୍ତାର କରିଥିଲା । ଲାଟିନ୍ ବ୍ୟାକରଣର ପଦାଙ୍କ ଅନୁସରଣ କରି ସମସ୍ତ ଇଉରୋପୀୟ ଭାଷା ନିଜ ଭିତରେ ନାହିଁ ନ ଥିବା Passive, Subjunctive, Infinitive ଖୋଜିବାକୁ ଆରମ୍ଭ କଲେ । ଏଇ ଅଳ୍ପ କେତେ ବର୍ଷ ତଳେ ଇଣ୍ଡୋ-ଇଉରୋପିୟାନ୍ ଭାଷା ବାହାରେ ଚୀନ, ଜାପାନ ଓ ଆଫ୍ରିକାନ୍ ଭାଷାମାନଙ୍କରେ ମଧ୍ୟ ଲାଟିନ୍ ବ୍ୟାକରଣରେ ଥିବା ବିଭାଗ-ସବୁ ଦେଖିବା ପାଇଁ ପଣ୍ଡ ଉଦ୍ୟମ କରାଯାଉଥିଲା । ମାତ୍ର ଆଧୁନିକ ଭାଷାବିତ୍‌ମାନେ ଏହି ପ୍ରକାର ହାସ୍ୟାସ୍ପଦ ବ୍ୟବସ୍ଥାକୁ ଆଉ ପସନ୍ଦ କରୁ ନାହାନ୍ତି । ଓଡ଼ିଶାରେ ରହି ଭାତ, ଡାଲି, ଭେଣ୍ଡିଭଜା ଜଣେ ଖାଇପାରେ; କିନ୍ତୁ ପଞ୍ଜାବରେ ବା ପାରସ୍ୟରେ ତାହା ଖୋଜିବା ଯେମିତି ନିରର୍ଥକ, ସବୁ ଭାଷାରେ ଏକାପ୍ରକାର ବିଶେଷ୍ୟ, ବିଶେଷଣ ପ୍ରଭୃତି ବିଭାଗ ଅନୁସନ୍ଧାନ କରିବା ସେହିପରି ହାସ୍ୟାସ୍ପଦ । ମାତ୍ର ବ୍ୟାକରଣ ରାଜ୍ୟରେ ଲାଟିନ୍ ପ୍ରଭାବ କ୍ରମେ କ୍ଷୟ ହେଉଥିଲେ ମଧ୍ୟ ସମ୍ପୂର୍ଣ୍ଣ ବିଲୋପ ହୋଇ ନାହିଁ । Nesfieldଙ୍କର ଦୁର୍ଦ୍ଦିନ ଆରମ୍ଭ ହେଲେ ମଧ୍ୟ ମୃତ୍ୟୁ ବହୁ ଦୂରରେ ।

ଆମ ଓଡ଼ିଆ ଭାଷାତତ୍ତ୍ୱ ବିଶେଷଭାବରେ ସଂସ୍କୃତପ୍ରଭାବିତ । ଏପରି କି ଆଧୁନିକ ଓଡ଼ିଆ ଶବ୍ଦର ପ୍ରକୃତି ବୁଝାଇବାକୁ ଯାଇ ବୈୟାକରଣମାନେ ସଂସ୍କୃତ ଶ୍ଳୋକ ଉଦ୍ଧାର କରନ୍ତି । ସତେ ଯେମିତି ସଂସ୍କୃତ ଭାଷା ଯାହା,ଓଡ଼ିଆ ଭାଷା ତାହା । ଫରାସୀ ଭାଷା ଲାଟିନ୍ ଭାଷାର କ୍ରମବିକାଶର ଫଳ । ଓଡ଼ିଆ ଭାଷା ସଂସ୍କୃତ ସହିତ କ୍ରମବିକାଶ ସୂତ୍ରରେ ସଂପୃକ୍ତ । ମାତ୍ର ତା ବୋଲି ଲାଟିନ୍ ଭାଷାର ଯାହା ଆଇନ, ଫରାସୀ ଭାଷାରେ ତାହା ପ୍ରୟୋଗ କରିବା ଅସମ୍ଭବ । କାରଣ ସଂସ୍କୃତ ଓ ଲାଟିନ୍ ଇନ୍‌ଫ୍ଲେକ୍‌ସନାଲ୍ ଏବଂ ଫରାସୀ ଓ ଓଡ଼ିଆ ଆନାଲିଟିକ୍ ଭାଷା ହିସାବରେ ପରିଚିତ । ସଂସ୍କୃତ ଭାଷାରେ ଶବ୍ଦରାଶିକୁ ଯଥେଚ୍ଛ ଫିଙ୍ଗିଦେଲେ ବି ଅର୍ଥ ସମାନ ରହିବ; ମାତ୍ର ଓଡ଼ିଆ ଭାଷାରେ ତାହା ଅସମ୍ଭବ ହୋଇପଡ଼ିବ; ଯଥା—'ସେ ମଧୁର ଫଳ ଖାଉଛି' ବାକ୍ୟକୁ

ସଂସ୍କୃତରେ 'ସ ମଧୁରଂ ଫଳଂ ଖାଦତି' ବା 'ସ ଖାଦତି ଫଳଂ ମଧୁରଂ' କହିଲେ କିଛି ଯାଏ ଆସେ ନାହିଁ । ବରଂକୁ ଗୁଡ଼ିଏ ପର ମଧୁରଂ ଓ ଫଳଂ ର ସମ୍ପର୍କ । ଯେତେ ଦୂରରେ ଥିଲେ ବି ଲିଙ୍ଗ, ବଚନ, କାରକ, ବିଭକ୍ତି ସମାନ ଥିବାରୁ ସେମାନଙ୍କର ସମ୍ପର୍କ ନିରବଚ୍ଛିନ୍ନ । ମାତ୍ର ଓଡ଼ିଆ ଗଦ୍ୟରେ 'ସେ ଖାଉଛି ଫଳ ମଧୁର' କେବେ ସମ୍ଭବ ହୋଇପାରେ ନା । ସଂସ୍କୃତରେ ବିଭକ୍ତି ଚିହ୍ନ ନ ଥାଇ ଶବ୍ଦ ବ୍ୟବହାର କରାଯାଇପାରେନା । ମାତ୍ର ସମସ୍ତ ଆଧୁନିକ ଆନାଲିଟିକ୍ ଭାଷାମାନଙ୍କରେ ବିଭକ୍ତି ବ୍ୟବହାର କ୍ରମଶଃ ହ୍ରାସ ହେବାକୁ ଯାଉଛି; ଯଥା—ଓଡ଼ିଆରେ କୁହାଯାଇପାରେ; "ମୁଁ ବର୍ତ୍ତମାନ ଗୋଟେ ଗାଁ ଯାଉଛି ।" ସାଧାରଣ ବ୍ୟବହାରରେ ଗାଁ ସ୍ଥାନରେ 'ଗାଁକୁ' କହିବାର ଆବଶ୍ୟକତା ବର୍ତ୍ତମାନ ନାହିଁ । ଏସବୁ କହିବାର ଉଦ୍ଦେଶ୍ୟ ହେଉଛି, ଗୋଟିଏ ଭାଷା ସହିତ ଆଉ ଗୋଟିଏ ଭାଷା ସଂପୃକ୍ତ ହେଲେ ମଧ୍ଧ ଗୋଟିଏ ଭାଷାର ପ୍ରଚଳିତ ଆଇନ ଅନ୍ୟ ଭାଷାକୁ ନିୟନ୍ତ୍ରିତ କରିବା ଅସମ୍ଭବ; ମାତ୍ର ଓଡ଼ିଆ ଭାଷାରେ ଏହାର ଉଦାହରଣ ଅନେକ ଅଛି । ତହିଁରୁ ଗୋଟିଏ ଉଦାହରଣ ନିଆଯାଉ । ଓଡ଼ିଶାର ପୂଜ୍ୟ ଭାଷାତତ୍ତ୍ୱବିତ୍ ଶ୍ରୀ ଗୋପୀନାଥ ନନ୍ଦ ମହାଶୟ ଓଡ଼ିଆ ଭାଷା ସଂପୃକ୍ତ ଗୋଟିଏ ତଥ୍ୟ ବୁଝାଇବାକୁ ଯାଇ ସଂସ୍କୃତ ଶ୍ଳୋକ ଉଦ୍ଧାର କରିଛନ୍ତି । ବହ୍ନି, ଜହ୍ନି, କହ୍ନେଇ ପ୍ରଭୃତି ଶବ୍ଦରେ ଲିଖିତ ଭାଷାରେ ଆଗ 'ହ' ଲେଖାଯାଇ ତାପରେ 'ନ' ଲେଖାଯିବାରୁ ଭାଷାତତ୍ତ୍ୱବିତ୍‌ଙ୍କର ଧାରଣା ଯେ, ଏପରି ଶବ୍ଦମାନଙ୍କରେ ଆଗ ହ ଓ ପରେ ନ ଉଚ୍ଚାରିତ ହୁଏ । ମାତ୍ର ବ୍ୟକ୍ତିଗତ ଅନୁଭୂତି ଓ ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରି ଦେଖାଯାଉଛି ଯେ ହ ଓ ନ କେହି କାହାର ଆଗ ପଛ ନୁହେଁ, ବରଂ ସେମାନଙ୍କର ଉଚ୍ଚାରଣ ସମକାଳୀନ । ଏତଦ୍‌ବ୍ୟତୀତ (ଙ, ଞ, ଣ, ନ, ମ)+ହ ଔରସ୍ୟ ବୋଲି କହି ସେ ଯେଉଁ ସଂସ୍କୃତ ଶ୍ଳୋକ ଉଦ୍ଧାର କରିଛନ୍ତି, ଆଧୁନିକ ଭାଷାତତ୍ତ୍ୱବିତ୍‌ମାନେ ତହିଁରେ କୌଣସି ସତ୍ୟତା ଦେଖିପାରୁ ନାହାନ୍ତି । ଧରନ୍ତୁ, କେହି କହିପାରନ୍ତି, ଯେଉଁ ଶବ୍ଦ ସଂସ୍କୃତରୁ ସିଧାସଳଖ ଆସିଛି,

ସଂସ୍କୃତ ପ୍ରତି ଯେଉଁ ଆଇନ ପ୍ରଯୁଜ୍ୟ ହେବ, ଓଡ଼ିଆକୁ ଆସିଥିବା ସେହି ଶବ୍ଦମାନଙ୍କ ପ୍ରତି ଠିକ୍ ସେହି ସଂସ୍କୃତ ଆଇନ ପ୍ରଯୁଜ୍ୟ ହେବ । ମାତ୍ର ଆଧୁନିକ ଭାଷାତତ୍ତ୍ୱ ବିଚାରରେ ଗୋଟିଏ କଥା କେବେ ଭୁଲିଯିବାର ନୁହେଁ । ଭାଷା କହିଲେ ଉଚ୍ଚାରିତ ଭାଷାକୁ ଗ୍ରହଣ କରିବା ଉଚିତ । ପୁସ୍ତକରେ ଯେଉଁ ଭାଷା ଲେଖାଅଛି, ସେହି ମୃତ ନିଃଶବ୍ଦ ଅକ୍ଷରକୁ ଦେଖି ଭାଷା ବିଚାର କଲେ ଅସୁବିଧାରେ ପଡ଼ିବାକୁ ହେବ । ମନୁଷ୍ୟର ବାଗ୍‌ଯନ୍ତ୍ର ଯୁଗ ଯୁଗ ଧରି ସମାନ ଥିଲେ ମଧ୍ୟ ଉଚ୍ଚାରଣପ୍ରଣାଳୀ ବରାବର ପରି-ବର୍ତ୍ତିତ ହୋଇଚାଲିଛି । ସେକ୍‌ସପିୟରଙ୍କ ନାଟକ ବହି ଲୋକେ ଯେତେ ଚଞ୍ଚଳ ବୁଝୁଛନ୍ତି, ତାଙ୍କ ଉଚ୍ଚାରଣ ଭଙ୍ଗୀ ବର୍ତ୍ତମାନ ସେତେ ଚଞ୍ଚଳ ବୁଝିବା ଅସମ୍ଭବ । ଗୋଟିଏ ମାତ୍ର ଇଂରାଜୀ ଶବ୍ଦ ଉଚ୍ଚାରଣର ପରିବର୍ତ୍ତନ ଦେଖାଯାଉ । ପୂର୍ବେ **nature** ଶବ୍ଦର ବନାନ ଯେମିତି ଥିଲା, ଆଜି ବି ସେମିତି ଅଛି । କିନ୍ତୁ ପୂର୍ବେ ଉଚ୍ଚାରଣ ଥିଲା 'ନାଟ୍ୟୁର୍', ଏବେ 'ନେଇଚର' । ତେଣୁ ବନାନକୁ ଦେଖି ଭାଷାତତ୍ତ୍ୱ ବିଚାର କରିବା ଊନବିଂଶ ଶତାବ୍ଦୀର ପ୍ରଥମ ଦଶକର କଥା ହୋଇପାରେ; ମାତ୍ର ଆଜି ନୁହେଁ । ସେହି ଦୃଷ୍ଟିରୁ ସଂସ୍କୃତ ଶବ୍ଦକୁ ତତ୍‌କାଳୀନ ଲୋକେ କେମିତି ଉଚ୍ଚାରଣ କରୁଥିଲେ ନ ଜାଣି ଓ ଆଜି ଉଚ୍ଚାରଣକୁ ବୈଜ୍ଞାନିକ ପ୍ରଣାଳୀରେ ବିଶ୍ଳେଷଣ ନ କରି ଓଡ଼ିଆ ପାଇଁ ସଂସ୍କୃତ ଆଇନ ଉଦ୍ଧାର କଲେ ଭାଷାତାତ୍ତ୍ୱିକ ସତ୍ୟର ଅପଲାପ ହେବ ଏବଂ ପାଠକମାନେ 'ଅନ୍ଧେନୈବ ନୀୟମାନା ଯଥାନ୍ଧାଃ' ପରି ହେବେ । ଓଡ଼ିଆ ଭାଷାତତ୍ତ୍ୱର ଅବସ୍ଥା ଅଳ୍ପ ବହୁତେ ଆଜି ସେହିପରି । ଓଡ଼ିଆ କାହିଁକି, ସମସ୍ତ ଭାରତୀୟ ଭାଷାତତ୍ତ୍ୱର ଅବସ୍ଥା ସେହିପରି ବୋଲି ପୁନା ସମ୍ମିଳନୀରେ ଭାରତୀୟ ଭାଷାବିତ୍‌ମାନେ ପକ୍ଷାନ୍ତରେ ସ୍ୱୀକାର କରିଛନ୍ତି । ଉଚ୍ଚାରଣ-ଜ୍ଞାନ ବ୍ୟତୀତ ଭାଷାବିତ୍‌ମାନେ କି ପ୍ରକାର ପ୍ରମାଦଗ୍ରସ୍ତ ହୁଅନ୍ତି, ତହିଁର ଏକ ପ୍ରକୃଷ୍ଟ ପ୍ରମାଣ ଇଂରାଜୀ ଭାଷାରୁ ନିଆଯାଉ । ଉଦାହରଣ ସ୍ୱରୂପ କେତୋଟି ବହୁବଚନାନ୍ତ ଇଂରାଜୀ ଶବ୍ଦ ନିଆଯାଉ; ଯଥା—**ends, locks, rises** । ପ୍ରତ୍ୟେକ ଶବ୍ଦର ଶେଷ ଅକ୍ଷର **s** । ଯାହାଙ୍କୁ ଇଂରାଜୀ ଉଚ୍ଚାରଣ ଜଣା ନାହିଁ, ତାଙ୍କ ପକ୍ଷରେ ତିନୋଟିଯାକ **s** ର ମୂଲ୍ୟ

ସମାନ । ମାତ୍ର ପ୍ରକୃତ ପକ୍ଷରେ ଉକ୍ତ ଶବ୍ଦଗୁଡ଼ିକରେ s ଯଥାକ୍ରମେ s, z, iz ପରି ଉଚ୍ଚାରିତ ହୁଅନ୍ତି । ଫୋନେଟିକ୍ସ୍ ଭାଷାରେ ଲେଖିଲେ ଧ୍ୱନୋଟିପାକ ଶବ୍ଦ ଯଥାକ୍ରମେ endz, loks ଓ raiziz ଭାବରେ ପଠିତ ହେବେ । ସୁତରାଂ ଲିଖନଦୃଷ୍ଟିରୁ ଯେଉଁ s ଗୁଡ଼ିକ ଭିତରେ କିଛି ତଫାତ୍ ନାହିଁ, ଜୀବନ୍ତ ଭାଷା ଦୃଷ୍ଟିରୁ ସେଗୁଡ଼ିକ କେତେ ତଫାତ୍ ସହଜେ ଜଣାପଡ଼ିବ । ଆଉ ଦୁଇଟି ଶବ୍ଦ ନିଆଯାଉ—said ଓ paid । ଦେଖିବାକୁ ଦୁହେଁ ସମାନ, ବରଂ stayed ଶବ୍ଦ ସେମାନଙ୍କଠାରୁ ଭିନ୍ନ ଦେଖାଯାଉଛି; ମାତ୍ର ଜୀବନ୍ତ ଭାଷା ଦୃଷ୍ଟିରୁ ଦେଖିଲେ paid saidଠାରୁ ଭିନ୍ନ; କାରଣ ଶବ୍ଦ ଦୁଇଟି ଯଥାକ୍ରମେ peid ଓ sed ଭାବରେ ଉଚ୍ଚାରିତ ହୁଅନ୍ତି । ବରଂ stayed ଶବ୍ଦ paid ବଂଶୀୟ, କାରଣ stayed ର ଉଚ୍ଚାରଣ ରୂପ ( steid )ରେ ଯେଉଁ ସ୍ୱର ଅଛି, peidରେ ସେହି ei ସ୍ୱର ଅଛି । ଏଥିରୁ ସହଜେ ପ୍ରତିପନ୍ନ ହେବ ଯେ କଥିତ ଭାଷାର ଉଚ୍ଚାରଣ ପ୍ରତି ଲକ୍ଷ୍ୟ ନ ରଖି କେବଳ ମୃତ ଅକ୍ଷର-ମାନଙ୍କୁ ସମ୍ବଳ କରି ବ୍ୟାକରଣ ବିଗ୍ରହ କଲେ ସମ୍ପୂର୍ଣ୍ଣ ଭୁଲ ତଥ୍ୟରେ ଉପନୀତ ହେବାକୁ ହେବ । ତେଣୁ ଆଧୁନିକ ଭାଷାବିତ୍‌ମାନେ ସବୁ ଭାଷାତତ୍ତ୍ୱ ଓ ବ୍ୟାକରଣ ପୁସ୍ତକରେ ସର୍ବପ୍ରଥମେ ଭାଷାର ଫୋନେଟିକ୍ସ୍ ବିଗ୍ରହକୁ ସ୍ଥାନ ଦେଉଛନ୍ତି ।

ପୂର୍ବେ କୁହାଯାଇଛି, ପୁରାତନ ବୈୟାକରଣମାନଙ୍କର ଧାରଣା ଯେ ଗ୍ରୀକ୍ ଲାଟିନ୍ ବ୍ୟାକରଣରେ ଯେଉଁ ଯେଉଁ ବିଭାଗ ଅଛି, ପୃଥିବୀର ସବୁ ଭାଷାରେ ସେହି ସେହି ବିଭାଗ ଥିବ; ଯଥା—ଗ୍ରୀକ୍ ଲାଟିନ୍‌ରେ ଯଦି Active, Passive, Infinitive, Subjunctive ଅଛି, ତେବେ ପୃଥିବୀର ଯେ କୌଣସି ଭାଷାରେ ତା ନିଶ୍ଚୟ ଥିବ; ମାତ୍ର ଏ ଦୁନିଆରେ ମଣିଷ ଯେତିକି, ବିଚିତ୍ର ତାଠୁ ବଳି ବିଚିତ୍ର ତାର ଭାଷା ଓ ଦୁର୍ଭାଗ୍ୟକୁ ବିଚିତ୍ରତମ ତାର ବ୍ୟାକରଣ । ବ୍ୟାକରଣର ଯେ କୌଣସି ବିଭାଗ ବିଗ୍ରହ କଲେ ତାର ବୈଚିତ୍ର୍ୟ ଦେଖି ଅବାକ୍ ହେବାକୁ ହୁଏ ।

ଗୋଟାଏ ସାଧାରଣ କଥା ବିଶେଷଣ ପଦ ବିଷୟରେ କରାଯାଉ । ଆମ ଭାଷା ପରି ଆହୁରି ଅନେକ ଭାଷାରେ ବିଶେଷଣ ବିଶେଷ୍ୟର ଗୁଣ ଓ ଅବସ୍ଥାବିଶେଷକୁ ବୁଝାଏ; ମାତ୍ର ଜାପାନୀ ଭାଷାରେ ବିଶେଷଣ ମଧ୍ୟ କାଳ (tense) ନିର୍ଦ୍ଦେଶ କରେ । ବାକ୍ୟମଧ୍ୟରେ ବିଶେଷଣମାନଙ୍କର ସ୍ଥାନନିରୂପଣ ମଧ୍ୟ କୌତୂହଳପୂର୍ଣ୍ଣ ଅଟେ । ଫରାସୀ ଭାଷାରେ କେତେକ ବିଶେଷଣ ବିଶେଷ୍ୟର ଏପାଖ ସେପାଖ ବସି ଭିନ୍ନ ଅର୍ଥ ବୁଝାନ୍ତି । ଯଥା—un brave homme ଗୋଟିଏ ଭଲ ମଣିଷକୁ ବୁଝାଏ ଏବଂ un homme brave ଗୋଟିଏ ସାହସୀ ଲୋକକୁ ବୁଝାଏ; କେବଳ ସ୍ଥାନ ପରିବର୍ତ୍ତନରେ ବିଶେଷଣ 'brave'ର ଅର୍ଥ ପରିବର୍ତ୍ତନ ହୋଇଯାଏ । ସଂସ୍କୃତ ବିଶେଷଣମାନଙ୍କର ଲିଙ୍ଗ ଅଛି । ପୁରୁଷ ସୁନ୍ଦର ହେଲେ ନାରୀ ସୁନ୍ଦରୀ; ମାତ୍ର ଓଡ଼ିଆ ଭାଷାରେ ସବୁ ବିଶେଷଣର ଲିଙ୍ଗ ନାହିଁ । ଏପରି କି ପୂର୍ବେ ଲିଙ୍ଗ ଗ୍ରହଣ କରୁଥିବା ବିଶେଷଣ ବି କାଳକ୍ରମେ ଲିଙ୍ଗ ହରାଇବାର ଦେଖାଯାଉଛି । ଶିକ୍ଷିତ ଲୋକେ ସୁନ୍ଦରର ସ୍ତ୍ରୀଲିଙ୍ଗ ସୁନ୍ଦରୀ ବୋଲି ବ୍ୟବହାର କରୁଥିଲେ ମଧ୍ୟ ଓଡ଼ିଆ ଭାଷାରେ ନାରୀ ପାଇଁ 'ସୁନ୍ଦର' ଶବ୍ଦ ବ୍ୟବହାର କରିବାରେ ବିଶେଷ ବାଧା ନାହିଁ । ଓଡ଼ିଆରେ 'ତାଙ୍କ ବୋହୂଟି ଭାରି ସୁନ୍ଦର', 'ତାଙ୍କ ଝିଅଟି ଦେଖିବାକୁ ଭାରି ପତଳା' କହିଲେ ଅବୋଧ୍ୟ ବା ଅଶୁଦ୍ଧ ବୋଲି ମନେହୁଏ ନାହିଁ । ବରଂ ଏ ପ୍ରକାର ବିଶେଷଣଗୁଡ଼ିକ ଏକ ସନ୍ଧିସ୍ଥଳରେ ଉଦ୍ଭବ ହୋଇଛନ୍ତି । ବଢ଼ିଆ ଶାଢ଼ୀ, ବଢ଼ିଆ ଟୋକା, ବଢ଼ିଆ ଘର ଅର୍ଥରେ ଲିଙ୍ଗନିର୍ବିଶେଷରେ ବଢ଼ିଆ ଶବ୍ଦ ବ୍ୟବହାର କରାଯାଇପାରେ ।

ଭାଷାରାଜ୍ୟରେ ଲିଙ୍ଗ ବିଷୟର ଅତି ବିଚିତ୍ର । ପ୍ରଥମେ ମଣିଷ ଆଶ୍ଚର୍ଯ୍ୟ ହୁଏ, ମୁଖାନ୍ନଃସୃତ ଶବ୍ଦମାନଙ୍କ ଭିତରେ ପୁରୁଷ, ସ୍ତ୍ରୀ ପୁଣି କ'ଣ ? ଯଦି ପୁରୁଷସୂଚକ ଶବ୍ଦ ପୁଂଲିଙ୍ଗ ଓ ସ୍ତ୍ରୀବାଚକ ଶବ୍ଦ ସ୍ତ୍ରୀଲିଙ୍ଗ ହୁଏ, ତେବେ ନର ପୁଂଲିଙ୍ଗ ହେଲେ ନାରୀ ସ୍ତ୍ରୀଲିଙ୍ଗ ହେବ । ମାତ୍ର ତା ଯଦି ହୁଏ, 'ସୁନ୍ଦର' ପରି ବ୍ୟକ୍ତିନିର୍ବିଶେଷ ବିଶେଷଣ ପଦର ପୁଣି ଲିଙ୍ଗ ଆସେ

କେଉଁଠୁ ? ସଂସ୍କୃତର ଦାର ଶବ୍ଦ କେମିତି ପୁଂବାଚକ ହୁଏ ଏବଂ ଉପାନହ (ଯୋତା) ଶବ୍ଦ କେମିତି ସ୍ତ୍ରୀଲିଙ୍ଗ ହୁଏ, ବୁଝିହୁଏ ନାହିଁ । ଜର୍ମାନୀ ଭାଷାର ଲିଙ୍ଗ ବିଷୟରେ କଥା ଅଛି vegetable has sex, but virgin has none, ଅର୍ଥାତ୍ କୁମାରୀ କ୍ଲୀବଲିଙ୍ଗ ଅଥଚ ଆଳୁ, ସାରୁ ପରିବା ସ୍ତ୍ରୀଲିଙ୍ଗ । ହାମିଟିକ୍ ଭାଷାରେ ନାଶ୍ପର ସ୍ତନ ପୁଂଲିଙ୍ଗ ଓ ପୁରୁଷର ସ୍ତନ ସ୍ତ୍ରୀଲିଙ୍ଗ; କାରଣ ସେହି ଭାଷାରେ ଆକାରଭେଦରେ ପୁଂ, ସ୍ତ୍ରୀ ନିର୍ଣ୍ଣୀତ ହୁଏ । ଯେ ଆକାରରେ ବଡ଼ ସେ ପୁରୁଷ, ଯେ କ୍ଷୁଦ୍ର ସେ ସ୍ତ୍ରୀ । ଆମେରିକାନ୍ ଆଲ୍‌ଗୋଙ୍କିନ୍ ଭାଷାରେ ଯାହା ଜୀବନ୍ତ, ତା ପୁଂଲିଙ୍ଗ ଓ ଯାହା ନିର୍ଜୀବ, ତା ସ୍ତ୍ରୀ । ଭାରତର ଜାତୀୟ ଭାଷା ହିନ୍ଦୀରେ କ୍ରିୟାର ପୁଣି ଲିଙ୍ଗ ଅଛି ।

ଭାଷାରେ ଏକବଚନ ବହୁବଚନ ପ୍ରାୟ ସର୍ବତ୍ର ଦେଖାଯାଏ । ମାତ୍ର ଦ୍ୱିବଚନର ଅବସ୍ଥା ସର୍ବଦା ଦୋଦୁଲ୍ୟମାନ । ଗ୍ରୀକ୍ ଭାଷାରୁ ଦ୍ୱିବଚନ କାଳକ୍ରମେ ଲୋପ ପାଉଛି; ମାତ୍ର ସଂସ୍କୃତ ଭାଷାରେ ତାର ପ୍ରଭାବ ଅକ୍ଷୁଣ୍ଣ ଅଛି । ଭାଷାରେ ଅନେକ ସମୟରେ ବହୁ ପଦାର୍ଥକୁ ମଧ୍ୟ ଏକ ବୋଲି ବିଚାର କରାଯାଏ; ଯଥା—a few, a many, a forty men । ପ୍ରାଚ୍ୟ ଇଉରୋପୀୟ ମାଗିୟାର ଭାଷାରେ ଦୁଇ ହାତ, ଦୁଇ ଗୋଡ଼, ଦୁଇ କାନ, ଦୁଇ ଆଖି ପ୍ରତ୍ୟେକ ଯୋଡ଼ାକୁ ଏକବଚନ ବୋଲି ବିଚାର କରାଯାଏ; ତେଣୁ ଗୋଟିଏ ହାତ, ଗୋଟିଏ କାନକୁ ଅଧା ହାତ, ଅଧା କାନ ହିସାବରେ ଗ୍ରହଣ କରାଯାଏ । ଆମ ଭାଷାରେ ଗୋଟିଏ ବିଶେଷ୍ୟ ପଦ ଉଚ୍ଚାରଣ କଲେ କେତେଗୁଡ଼ିଏ ଧାରଣା ଆମ ମନରେ ସ୍ୱତଃ ଜାଗ୍ରତ ହୁଏ । ନର ଶବ୍ଦ କହିଲେ ଜଣେ ପୁରୁଷକୁ ବୁଝାଏ । ଏହା ପୁଂଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, ଯେ କୌଣସି ବାକ୍ୟରେ ଏହା କର୍ତ୍ତା ରୂପେ ବ୍ୟବହୃତ ହୋଇପାରେ । ମାତ୍ର ଆଲ୍‌ଗୋଙ୍କିନ୍, ଚିନୁକ୍ ପ୍ରଭୃତି କେତେକ ଆଦିମ ଆମେରିକାନ୍ ଭାଷାରେ ଶବ୍ଦଟିଏ ଉଚ୍ଚାରଣ କଲେ ଶବ୍ଦସୂଚିତ ବସ୍ତୁ ନିକଟରେ ଅଛି କି ଦୂରରେ ଅଛି, ବସ୍ତୁଟି ଗୋଲ କି ଲମ୍ବା କି ଚଉକଣିଆ, ଏ ଧାରଣା ମଧ୍ୟ ତହିଁରେ ସୂଚିତ ଥାଏ ।

ସଂସ୍କୃତ ଭାଷାରେ ଛ'ଟି କାରକ ଅଛି । ଅଧିକାଂଶ ଭାଷାରେ କର୍ମକାରକ ଓ ସମ୍ପ୍ରଦାନକାରକ ଭିତରେ ସୀମାରେଖା ଲିଭି ଏକ ହୋଇଯାଉଛି । ବିଚିତ୍ର କଥା, ଫିନ୍‌ଲଣ୍ଡ ଭାଷାରେ ପନ୍ଦରଟି କାରକ ଅଛି । ଆଶ୍ଚର୍ଯ୍ୟ ଲାଗେ, ମଣିଷ ଏତେ କାରକ ମନେରଖିବ କେମିତି !

ସମସ୍ତ ଇଣ୍ଡୋ-ଇଉରୋପିୟାନ୍ ଭାଷାରେ ବିଶେଷ୍ୟପଦ, କ୍ରିୟାପଦ ଅଛି । ତେଣୁ ଆମମାନଙ୍କର ଧାରଣା, ସମସ୍ତ ଭାଷାରେ ନିଶ୍ଚୟ ବିଶେଷ୍ୟ ଓ କ୍ରିୟାପଦ ଥିବ । ମାତ୍ର ଅଧିକାଂଶ ଆଫ୍ରିକାନ୍ ଭାଷାରେ କ୍ରିୟା ବା ବିଶେଷ୍ୟ ବୋଲି କୌଣସି ନିର୍ଦ୍ଦିଷ୍ଟ ଶବ୍ଦ ନାହିଁ । ଚୀନ ଭାଷାରେ ମଧ୍ୟ ଠିକ୍ ସେହିପରି । ବାକ୍ୟରେ ଅବସ୍ଥିତି ନେଇ ଗୋଟିଏ ଶବ୍ଦ ବିଶେଷ୍ୟ ହୋଇପାରେ, ବିଶେଷଣ ହୋଇପାରେ, କ୍ରିୟା ବି ହୋଇପାରେ । ଏହି ଦୃଷ୍ଟିରୁ ଦେଖିଲେ ଇଂରାଜୀ ଭାଷା ବର୍ତ୍ତମାନ ଚୀନ ପଥର ପଥିକ । ଆଧୁନିକ ଯୁଗରେ ଅଧିକାଂଶ ଇଂରାଜୀ ବିଶେଷ୍ୟ ଶବ୍ଦକୁ କ୍ରିୟା କରି ବ୍ୟବହାର କରାଯାଉଛି । କାଳକ୍ରମେ ବୋଧହୁଏ ସମସ୍ତ ଇଂରାଜୀ ବିଶେଷ୍ୟ ପଦ କ୍ରିୟା ରୂପେ ବ୍ୟବହୃତ ହେବେ । ଇଂରାଜୀ ବାକ୍ୟରେ କେବଳ ସ୍ଥାନ ପରିବର୍ତ୍ତନରେ କର୍ତ୍ତା କର୍ମ ଓ କର୍ମ ବି କର୍ତ୍ତା ହୋଇ-ପାରେ; ଯଥା—a cat killed a rat ଓ a rat killed a cat. ଦୁଇ ବାକ୍ୟରେ ପ୍ରଥମ ବାକ୍ୟରେ ଯାହା କର୍ତ୍ତା, ଦ୍ୱିତୀୟ ବାକ୍ୟରେ ତାହା କର୍ମ; ଅଥଚ ରୂପରେ କୌଣସି ପ୍ରଭେଦ ନାହିଁ, କେବଳ ଶବ୍ଦର ସ୍ଥାନ ପରିବର୍ତ୍ତନ ହୋଇଛି । ପୃଥିବୀର ଅନେକ ଭାଷାର ଯେଉଁପ୍ରକାର ବ୍ୟାକରଣଗତ ବୈଷମ୍ୟ ଘଟିଛି, ତାର କେତେକ ମାତ୍ର ନମୁନା ଉପରେ ଦିଆଯାଇଛି । ସେହିସବୁ ନମୁନା ଦୃଷ୍ଟିରୁ ବିଚାର କଲେ ଇଂରାଜୀ ଭାଷା କେତେ ସରଳ, ତାହା ପାଠକ ମାନେ ଅନୁଭବ କରିବେ । ଇଂରାଜୀ ଭାଷାରେ ଶବ୍ଦରୂପ, ଧାତୁରୂପ, କାରକ ବିଭକ୍ତିର ଜଟିଳତା ଅନ୍ୟ ଯେ କୌଣସି ଭାଷାଠାରୁ କମ୍ । ଅନ୍ତତଃ ପୃଥିବୀର ଅନ୍ୟ ଭାଷା-ମାନଙ୍କର ଜଟିଳତା ବିଚାର କଲେ ଇଂରାଜୀ ସମ୍ପର୍କରେ ଏହି ଧାରଣା ଦୃଢ଼ୀଭୂତ ହୁଏ । ଦୁନିଆରେ ଯେତିକି ପ୍ରକାର ମଣିଷ ଅଛନ୍ତି, ସେତିକି

ପ୍ରକାର ଭାଷା । ଶୃଙ୍ଖଳିତ ଜୀବନଭିତରେ ବିଶୃଙ୍ଖଳ ବ୍ୟାକରଣର ମହିମା ସବୁଠାରୁ ବିଚିତ୍ର । ମଣିଷ ଜାତି ଏହି ବିଶୃଙ୍ଖଳାକୁ ନିୟନ୍ତ୍ରିତ କରିବା ପାଇଁ ଶୃଙ୍ଖଳିତ ଓ କୃତ୍ରିମ ଏସ୍ପାରେଣ୍ଟୋ ଭାଷା ତିଆରି କରୁଛି; ମାତ୍ର ବିଜୟର ଆଶା ବହୁତ କମ୍ ।

ଏହି ଏସ୍ପାରେଣ୍ଟୋ ଭାଷା କ'ଣ, ଏ ସମ୍ପର୍କରେ ଏଠାରେ କ୍ଷୀଣ ସୂଚନା ଦେଲେ ଅବାନ୍ତର ହେବାର ଆଶଙ୍କା ନାହିଁ । ଏସ୍ପାରେଣ୍ଟୋ ଗୋଟିଏ ମନୁଷ୍ୟଗଢ଼ା ଭାଷା । ଏହା ପୋଲାଣ୍ଡ ନିବାସୀ ଜଣେ ରୁଷିଆ ଡାକ୍ତରଙ୍କ ଦ୍ୱାରା ନିର୍ମିତ । ଏହି ଡାକ୍ତରଙ୍କର ଧାରଣା ଯେ, ପୃଥିବୀରେ ପ୍ରଚଳିତ ଯାବତୀୟ ଭାଷା ବିଶୃଙ୍ଖଳାପୂର୍ଣ୍ଣ । ପ୍ରତ୍ୟେକଙ୍କର ଗଠନପ୍ରଣାଳୀ ପୃଥକ୍ । କାହାର ପନ୍ଦରଟି କାରକ ଅଛି ତ ତାହାର ତିନୋଟି ଲିଙ୍ଗ ଅଛି । ଏକବଚନକୁ ବହୁବଚନ କରିବା ପାଇଁ କାହାର ପାଞ୍ଚଟି ନିୟମ ଅଛି ତ କାହାର ପନ୍ଦରଟି ନିୟମ ଅଛି । ସୁତରାଂ ପୃଥିବୀଯାକ ଲୋକେ କୌଣସି ଗୋଟିଏ ଭାଷାକୁ ସମସ୍ତଙ୍କ ପକ୍ଷରେ ସହଜ ବୋଲି ଗ୍ରହଣ କରିବା ଅସମ୍ଭବ । ତା'ଛଡ଼ା ଦେଶ ଦେଶ-ଭିତରେ ଏମିତି ରାଜନୈତିକ ବିଦ୍ୱେଷ ଓ ଉତ୍କଟ ଜାତୀୟତା ରହିଛି ଯେ, ଲୋକେ କୌଣସି ଭାଷାକୁ ପୃଥିବୀଭାଷା ବୋଲି ସ୍ୱୀକାର କରିବେ ନାହିଁ । ଉଦାହରଣ ସ୍ୱରୂପ ଇଂରାଜୀ ଭାଷାକୁ ଯଦି ପୃଥିବୀଭାଷାରୂପେ ଗ୍ରହଣ କରାଯାଏ, କିଏ ଜାଣେ ଜର୍ମାନ୍‌ମାନେ ଓ ନବ ସ୍ୱାଧୀନ ଭାରତୀୟମାନେ ସହଜରେ ତାହା ଗ୍ରହଣ କରିବେ ବୋଲି ! ଏହି ହେତୁରୁ ରୁଷିଆ ଡାକ୍ତର ଲାଗିପଡ଼ି ଏକ କୃତ୍ରିମ ଭାଷା ସୃଷ୍ଟି କଲେ, ଯାହାକୁ ଦେଶ-କାଳ, ପାତ୍ର ନିର୍ବିଶେଷରେ ପୃଥିବୀଯାକ ଗ୍ରହଣ କରିବେ ବୋଲି ସେ ଆଶା କରିଥିଲେ । ଏହିପରି ଆଉ କେତେକ ଭାଷାର ମଧ୍ୟ ସୃଷ୍ଟି ହେଲା; ଯଥା—ଆଇଡ଼ୋ, ଭୋଲାପ୍ୟୁକ୍ ପ୍ରଭୃତି । ଏହି ଭାଷାମାନଙ୍କରେ ଯେଉଁ ନୀତି ଅନୁସରଣ କରାଯାଇଛି, ତାର ଗୋଟିଏ ମାତ୍ର ନମୁନା ଦେଲେ ବିଷୟଟି ସହଜରେ ବୁଝି ହୋଇଯିବ । ଧରନ୍ତୁ ଇଂରାଜୀ ବହୁବଚନ—

cat cats, ox oxen, foot feet,
rat rats, child children, mouse mice.

ଏକବଚନରୁ ବହୁବଚନ କରିବା ପାଇଁ ଏହିପରି ତିନି ବିଭିନ୍ନ ନିୟମ ଅଛି । କେଉଁଠି s, କେଉଁଠି en, କେଉଁଠି ଅନ୍ତର୍ଗତ ସ୍ୱର ପରିବର୍ତ୍ତନ କରି ଏକବଚନକୁ ବହୁବଚନ କରାଯାଉଛି । ଏସ୍ପାରେଣ୍ଟୋ ନିର୍ମାତାଙ୍କର ଧାରଣା ଯେ, ଯଦି ବହୁବଚନ କରିବା ପାଇଁ ତିନୋଟି ଉପାୟ ସ୍ୱୀକାର କରି ନ ଯାଇ କେବଳ ଗୋଟିଏ ଉପାୟ ସ୍ୱୀକାର କରାଯାନ୍ତା, ତେବେ ଭାଷା ବହୁତ ସରଳ ହୋଇପଡ଼ନ୍ତା । ଧରନ୍ତୁ ଯଦି ଏପରି ଗୋଟିଏ ଭାଷା କଳ୍ପନା କରାଯାଏ ଯେ, ଯହିଁରେ କେବଳ s ସଂଯୋଗ କଲେ ସବୁ ପ୍ରକାର ବହୁବଚନ ହୋଇଯିବ, ତେବେ ସେ ଭାଷା କେତେ ସହଜ ହୋଇପଡ଼ିବ ଅର୍ଥାତ୍ ଉପରୋକ୍ତ ଉଦାହରଣଗୁଡ଼ିକ—

cat cats, ox oxs, foot foots,
rat rats, child childs, mouse mouses

ହୁଅନ୍ତା । ଏହିପରି ପୁଂଲିଙ୍ଗକୁ ସ୍ତ୍ରୀଲିଙ୍ଗ କରିବା ପାଇଁ କେବଳ ଗୋଟିଏ ସଙ୍କେତ ବ୍ୟବହାର କରାଯାନ୍ତା । ଉଦାହରଣ ସ୍ୱରୂପ ଯେତେ ପୁଂଲିଙ୍ଗ ଶବ୍ଦ ଅଛି, ତହିଁରେ a ଯୋଡ଼ିଦେଲେ ସ୍ତ୍ରୀଲିଙ୍ଗ ହୋଇଯାନ୍ତା । ଆଉ master, mistress ବା he-goat, she-goat ହୁଅନ୍ତା ନାହିଁ । ଏହି ହେଲା ଏସ୍ପାରେଣ୍ଟୋପନ୍ଥୀମାନଙ୍କର ସ୍ୱପ୍ନ । ମନୁଷ୍ୟକୃତ ଏହି ଏସ୍ପାରେଣ୍ଟୋ ଭାଷା ଗୋଟିଏ ଦୁଇଟି ଆନ୍ତର୍ଜାତିକ ସମ୍ମିଳନୀରେ ବ୍ୟବହୃତ ହୋଇଥିଲା ଓ ତହିଁରେ ଅଳ୍ପ କେତୋଟି ବହି ଓ ପତ୍ରିକା ଛପା ହୋଇଥିଲା; କିନ୍ତୁ ପ୍ରାକୃତିକ ମନୁଷ୍ୟସମାଜରେ ଏହି ଅପ୍ରାକୃତିକ ଭାଷା ମୁଣ୍ଡ ଟେକିପାରିଲା ନାହିଁ । ଏବେ ଆନ୍ତର୍ଜାତିକ କ୍ଷେତ୍ରରେ ଏକ ଭାଷାର ଆବଶ୍ୟକତା ସମସ୍ତେ ଅନୁଭବ କରୁଛନ୍ତି; ମାତ୍ର ଏସ୍ପାରେଣ୍ଟୋର କୌଣସି ଭବିଷ୍ୟତ ଥିଲାପରି ଜଣାପଡ଼ୁ ନାହିଁ । ମନୁଷ୍ୟର ମୁଣ୍ଡବ୍ୟଥା ବ୍ୟାକରଣକୁ ମୁଣ୍ଡରୁ ଚିରଦିନ ପାଇଁ ଓହ୍ଲାଇଦେବାର ସୌଭାଗ୍ୟ ବୋଧହୁଏ ମଣିଷ ଜାତିର ନାହିଁ ।

ବ୍ୟାକରଣ ସମ୍ପର୍କରେ ବିଶ୍ୱସାହିତ୍ୟିକ ବାର୍ନାର୍ଡ ଶ'ଙ୍କ ମତାମତ ବଡ଼ କୌତୂହଳଜନକ । ଇଂରାଜୀ ବ୍ୟାକରଣ ଉପରେ ମତାମତ ଦେଇ ସେ କହିଛନ୍ତି, ଇଂରାଜୀ ଭାଷାକୁ ବିଶ୍ୱଭାଷାରେ ପରିଣତ କରିବାକୁ ହେଲେ ତାର ବ୍ୟାକରଣକୁ ଆହୁରି ସରଳ କରିବାକୁ ହେବ । ଗ୍ରୀକ୍, ଲାଟିନ୍ ସଂସ୍କୃତ ସହିତ ତୁଳନା କଲେ ଇଂରାଜୀ ଅନେକ ସହଜ । ଗୋଟିଏ ସଂସ୍କୃତ ବାକ୍ୟ ସହିତ ତାହାର ଇଂରାଜୀ ଅନୁବାଦ ନେଇ ବିଚାର କରାଯାଉ—

ସା ସୁନ୍ଦରୀ ବାଳିକା ଗଚ୍ଛତି

That beautiful girl goes.

ସଂସ୍କୃତ ବାକ୍ୟର ବ୍ୟାକରଣଗତ ବିଶ୍ଳେଷଣ ହେଉଛି ସା (ସ+ନାରୀ), ସୁନ୍ଦରୀ (ସୁନ୍ଦର+ନାରୀ),ବାଳିକା (ବାଳକ+ନାରୀ) । ବାକ୍ୟର ପ୍ରଧାନ ଅର୍ଥସୂଚକ 'ବାଳିକା' ଶବ୍ଦରେ ଯେଉଁ ସ୍ତ୍ରୀତ୍ୱର ସୂଚନା ଅଛି, ତାହା ପୂର୍ବସ୍ଥିତ ସର୍ବନାମ ଓ ବିଶେଷଣରେ ବାରମ୍ବାର ପ୍ରୟୋଗ କରାଯାଇଛି । ଅଥଚ ଇଂରାଜୀରେ that ଏବଂ beautiful ଶବ୍ଦରେ ସ୍ତ୍ରୀତ୍ୱ ସୂଚନା ଦେବାର ଆବଶ୍ୟକତା ମୋଟେ ନାହିଁ । ଏହି ଦୃଷ୍ଟିରୁ ଇଂରାଜୀ ବାକ୍ୟଟି ସଂସ୍କୃତ ବାକ୍ୟଠାରୁ ସହଜ ଓ ଆଭରଣଶୂନ୍ୟ; ମାତ୍ର ବାର୍ନାର୍ଡ ଶ' କହନ୍ତି, ସେତିକରେ ଇଂରାଜୀ ଭାଷାର ଯଥେଷ୍ଟ ହୋଇ ନାହିଁ । ତହିଁରେ ଅନ୍ୟ ଯେଉଁ ଅସୁବିଧା ଅଛି, ତାକୁ ଉଠାଇଦେବା ଉଚିତ, ଯଥା—think ଶବ୍ଦର ଅତୀତକାଳ thinked କଲେ କୌଣସି ଅସୁବିଧା ହେବ ନାହିଁ ବୋଲି ତାଙ୍କର ମତ । ଏହି ସମ୍ପର୍କରେ ସେ ଚୀନରେ ବ୍ୟବହୃତ ବ୍ୟାକରଣଶୂନ୍ୟ ଏକପ୍ରକାର ଇଂରାଜୀ ଭାଷାର ଉଦାହରଣ ଦେଇଛନ୍ତି । ଏହି ଭାଷାକୁ Pidgin ଇଂରାଜୀ କହନ୍ତି । ପିଡ୍‌ଗିନ୍‌ଭାଷୀ ଚୀନମାନେ ବ୍ୟାକରଣସମ୍ମତ ଭାଷା ନ କହି କେବଳ ଅର୍ଥବୋଧଗମ୍ୟ ହେବାଭଳି ଏକପ୍ରକାର ଇଂରାଜୀ କହନ୍ତି । ଉଦାହରଣ ସ୍ୱରୂପ—'I regret that I shall not be able to comply

with your request' ନ କରି ସେମାନେ କହନ୍ତି "Sorry no can" । ଆମ ଓଡ଼ିଶାରେ ଯାହାକୁ ମାଡ୍ରାସ ଇଂରାଜୀ କହନ୍ତି, ପିଡ଼ଗିନ୍ ସେହିପରି ଗୋଟାଏ କିଛି । ଯୁଦ୍ଧ ସମୟରେ ଆମେରିକାନ୍ ସୈନ୍ୟମାନଙ୍କୁ କଟକ ରିକ୍ସାବାଲା "ସାହେବ ଦୋ ମାଇଲ, ଟୁ ରୁପି" ବୋଲି ବି କହୁଥିଲେ । ବାନାର୍ଡ଼ ଶ'ଙ୍କ ଚିନ୍ତାଧାରା ବିଜ୍ଞାନସମ୍ମତ ହେଲେ ମଧ୍ୟ ସମସ୍ତ ପୁରାତନକୁ ନୂତନ କରି ଗଢ଼ିବାର ଦୁଃସାହସ ଭାଷା-ରାଜ୍ୟରେ ଏତେ ଚଞ୍ଚଳ ସହଜ ନୁହେ । କିନ୍ତୁ ତାଙ୍କର ଭଳି ବିରାଟ ବ୍ୟକ୍ତିମାନେ thinkର ଅତୀତକାଳକୁ thinked କରି ଚଳାଇବାକୁ ଆରମ୍ଭ କଲେ କେତେ ବର୍ଷ ପରେ ହୁଏତ ତା ଚଳିଯିବ । ଭାଷାର ଶାସନ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଭାଷାକୁ ଶାସନ କରିବାର ଅଧିକାର ମଧ୍ୟ ମଣିଷର ଅଛି । ମାତ୍ର ଭାଷାରେ ଯେମିତି ଅକାରଣ ବିଭ୍ରାଟ ସୃଷ୍ଟି ନ ହୁଏ, ସେଥିପ୍ରତି ସର୍ବଦା ଦୃଷ୍ଟି ଥିବା ଦରକାର ।

———

# ହୀରାକୁଦ ଭାଷା

ହିଟଲର ଜର୍ମାନୀର ନେତା ଅଥଚ ଜର୍ମାନୀରେ ତାଙ୍କର ଜନ୍ମ ନୁହେଁ । ଇଟାଲୀର ନେତା ମୁସୋଲିନୀ ମଧ୍ୟ ଇଟାଲୀରେ ଜନ୍ମ ହୋଇ ନାହାନ୍ତି । ସେହିପରି ଇଂଲଣ୍ଡର ରାଜଧାନୀର ନାମ 'ଲଣ୍ଡନ' ଇଂରାଜୀ ଶବ୍ଦ ନୁହେ, ଫ୍ରାନ୍ସର ରାଜଧାନୀର ନାମ 'ପ୍ୟାରିସ' ମଧ୍ୟ ଫ୍ରେଞ୍ଚ ଶବ୍ଦ ନୁହେଁ କିମ୍ବା ଜର୍ମାନୀର ରାଜଧାନୀ 'ବର୍ଲିନ' ଜର୍ମାନ ଶବ୍ଦ ନୁହେଁ । ପ୍ରଥମ ଦୁଇଟି ଉର୍ ଓ ତୃତୀୟଟି ସ୍ଲାଭ୍ । ରାଜନୈତିକ ଇତିହାସରେ ହିଟଲର ମୁସୋଲିନୀଙ୍କ କଥା ଏକ ଆକସ୍ମିକ ଘଟଣା ହୋଇପାରେ; ମାତ୍ର ଭାଷା-ରାଜ୍ୟରେ ଏ ପ୍ରକାର ଘଟଣା ଅତି ମାମୁଲି । ଆମେରିକାର ମିସିଗାନ୍, ମାସାଚୁସେଟସ୍ ଓ ସିକାଗୋ ପ୍ରଭୃତି ଜଣାଶୁଣା ସ୍ଥାନୀୟ ନାମଗୁଡ଼ିକ ମଧ୍ୟ ଇଂରାଜୀ ଶବ୍ଦ ନୁହନ୍ତି । ସେଗୁଡ଼ିକ ଆଦିମ ଆମେରିକାନ୍ ଭାରତୀୟ-ମାନଙ୍କର ଦାନ ।

ପୃଥିବୀରେ ଏମିତି କୌଣସି ଉନ୍ନତ ଭାଷା ନାହିଁ, ଯାହା ଅନ୍ୟ କୌଣସି ଭଷାଦ୍ୱାରା ପ୍ରଭାବିତ ନୁହେ । ଏକ ସ୍ଥାନର ଲୋକ ଅନ୍ୟ ସ୍ଥାନର ଲୋକଙ୍କଠାରୁ ଚାଲିଚଲଣ, ପୋଷାକପତ୍ର, ପାନ-ଭୋଜନର ଠାଣି ଯେମିତି ଶିଖନ୍ତି, ସେମାନଙ୍କ ଭାଷାରୁ ମଧ୍ୟ ସେହିପରି ଧାର ଉଧାର କରନ୍ତି । ସେହି ଦୃଷ୍ଟିରୁ ଅବିମିଶ୍ର ଭାଷା ପୃଥିବୀରେ କମ କହିଲେ ଚଳେ । କଟକ ଶବ୍ଦ ଓଡ଼ିଆ; ମାତ୍ର ଇଂରାଜୀ ବାକ୍ୟ ଭିତରେ ଆମେ C-u-t-t-a-ckକୁ ଯେମିତି ଉଚ୍ଚାରଣ କରୁ, ତାକୁ ଓଡ଼ିଆ ନ କହି ଇଂରାଜୀପ୍ରଭାବିତ ମିଶ୍ର ଓଡ଼ିଆ କୁହାଯାଇପାରେ । ଓଡ଼ିଆ ଲୋକ ଯଦି ଓଡ଼ିଶାରେ ଜନ୍ମ ହୋଇ ସାହେବୀ ଖାନା ଖାଇ ସୁଟ୍ ଓ ଟାଇ ପିନ୍ଧନ୍ତି, ତେବେ ସେ ଓଡ଼ିଆ ହେଲେ ବି କେତେକାଂଶରେ ଏକ

ଆନ୍ତର୍ଜାତିକ ଜୀବ । ସେହିପରି ଇଂରାଜୀ ଢଙ୍ଗରେ (ଆକସେଣ୍ଟ୍) କଥିତ କଟକ ଶବ୍ଦ ଏକ ଆନ୍ତର୍ଜାତିକ ଶବ୍ଦ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଯେ କୌଣସି ଭାଷା ପରି ଆମ ଭାଷା କେମିତି ଅବିମିଶ୍ର ନୁହେଁ, ତାର କେତୋଟି ନମୁନା ଦିଆଯାଉ ।

## ପାତ୍ରୀ ଆବଶ୍ୟକ

ପାତ୍ରର ବୟସ ୨୬ ବର୍ଷ । ନାଗେଶ୍ୱର ଗୋତ୍ର-କରଣ, ଶ୍ୟାମଳ ବର୍ଣ୍ଣ । ଶାନ୍ତଶିଷ୍ଟ, ମଧ୍ୟମ ସାଇଜ, ଅଣ୍ଡରମାଟ୍ରିକ, ୯୦ ଟଙ୍କାର ପରମାନେଣ୍ଟ, ସେଣ୍ଟ୍ରାଲ ଗଭର୍ଣ୍ଣମେଣ୍ଟ କର୍ମଚାରୀ·····ଜମି ଜାଗା ଅଳ୍ପ ଅଛି । ତାଙ୍କ ପାଇଁ ୧୪ଠାରୁ ୧୬ ବର୍ଷ ବୟସ୍କା ଗୌରବର୍ଣ୍ଣ କିମ୍ବା ଶ୍ୟାମଳବର୍ଣ୍ଣ ଶାନ୍ତଶିଷ୍ଟା ମଧ୍ୟମ ସାଇଜ, ସଦ୍‌ଗୁଣସମ୍ପନ୍ନା, ଗୃହକର୍ମ-ନିପୁଣା, ସ୍ୱାସ୍ଥ୍ୟବତୀ ପାତ୍ରୀ ଆବଶ୍ୟକ । ························ ··ଜୁନ ୫ ତାରିଖ ସୁଦ୍ଧା ନିମ୍ନ ଠିକଣାରେ ପତ୍ର ଲେଖିବାକୁ ଏକାନ୍ତ ଅନୁରୋଧ ।

ଶ୍ରୀ ················
କ୍ୟାରେଫ ଅଲ ଇଣ୍ଡିଆ ରେଡ଼ିଓ
କଲିକତା—୧
(ପ୍ରଜାତନ୍ତ୍ର ତା—ଜୁନ ୧୯୫୩)

ବିଜ୍ଞାପନର ଭାଷା ଓଡ଼ିଆ; ମାତ୍ର ମିଶ୍ର ଓଡ଼ିଆ । ରେଖାଙ୍କିତ ଶବ୍ଦଗୁଡ଼ିକ ଇଂରାଜୀ । ଟିକିଏ ତଳେଇ ଦେଖିଲେ ଭାଷାତତ୍ତ୍ୱ ବିତ୍‌ର ପାଇଁ ଅନେକ ସାମଗ୍ରୀ ମିଳିଯିବ । ପାତ୍ର ଶବ୍ଦ ସଂସ୍କୃତରେ ସର୍ବଦା କ୍ଳୀବ ଲିଙ୍ଗ । ମାତ୍ର ଓଡ଼ିଆ ଭାଷାରେ ପ୍ରବେଶ କରି ଶ୍ରେଷ୍ଠାକୁ ଶ୍ରେଷ୍ଠୀ, କଣାକୁ କାଣୀ ସୂତ୍ରରେ ପାତ୍ର ଶବ୍ଦର ସ୍ତ୍ରୀଲିଙ୍ଗ ପାତ୍ରୀ । ଜମି ଶବ୍ଦ ଓଡ଼ିଆ ନୁହେଁ, ଆରବୀ ଜମିନ୍ ଶବ୍ଦରୁ ଗୃହୀତ । ଖସିଗଲା ଗୋଡ଼ ତଳକୁ ତଳକୁ ପରି ନିକଟି

ଖୋଜ ବସିଲେ ଏହିପରି ଅଣଓଡ଼ିଆ ଅଥଚ କାଳକ୍ରମେ ଓଡ଼ିଆଭାବରେ ଗୃହୀତ ଅନେକ କଥା ବାହାରିପାରେ । କେବଳ ଶବ୍ଦମିଶ୍ରଣ ଛାଡ଼ିଦେଇ ପ୍ରକାଶଭଙ୍ଗୀ ଦେଖିଲେ ବିଶେଷଣ-ସମ୍ବଳିତ ଶାନ୍ତିଶିଷ୍ଟଠାରୁ ସ୍ୱାସ୍ଥ୍ୟବନ୍ତ ପର୍ଯ୍ୟନ୍ତ ଏକ ସଂସ୍କୃତ ବାକ୍ୟ ପରି ମନେହୁଏ । ବିଜ୍ଞାପନ ଏକ ଜଣାଶୁଣା ଦୈନିକ ପତ୍ରିକାରେ କୌଣସି ସମ୍ଭ୍ରାନ୍ତ ବ୍ୟକ୍ତିଙ୍କଦ୍ୱାରା ଲିଖିତ । ସେ ଇଂରାଜୀପ୍ରଭାବିତ ହେବା ସ୍ୱାଭାବିକ ।

କଲେଜର ଜଣେ ଚପ୍ରାସୀଙ୍କର ଛୁଟି ଦର୍ଖାସ୍ତ ମିଶ୍ରଭାଷା ଦୃଷ୍ଟିରୁ ବିଚାର କଲେ କୌତୂହଳପ୍ରଦ ମନେହୁଏ ।

## ଦର୍ଖାସ୍ତ

ଶ୍ରୀମାନ୍ ସାଇଁସ୍ ବିଚାଣୀ ପ୍ରଫେସର ସମ୍ବଲପୁର କଲେଜ ସମ୍ବଲପୁର: ମହାଶୟ ଧର୍ମାବତାର । ଲେଖି ଶ୍ରୀଗ୍ଚମୁରେ ଜଣାଇବାର କାରଣ ଏସ୍ଥାନ ଯେ ପ୍ରାର୍ଥିର ଭାଇ ଜଣେ ବିବାହ ହେଉଅଛି । ଏଣୁ ପ୍ରାର୍ଥି ନ ଥିଲେ ଚଲେ ନାହିଁ । ଏଣୁ ପ୍ରାଥ କେଜୁଏଲ ଛୁଟିରୁ ଦୁଇ ଦିନ ଯେ କୌଣସି ପ୍ରକାରେ ମଞ୍ଜୁର କରିଦେବା ହେଉନ୍ତୁ ।

ତା ୮ । ୨ । ୪୯
ପ୍ରାର୍ଥି ଶାଳଗ୍ରାମ ସାହୁ

ଲେଖକ ଜଣେ ସାକ୍ଷର ଚପ୍ରାସୀ ମାତ୍ର । ପତ୍ରରେ ଅନେକ ଶବ୍ଦ ଇଂରାଜୀ । ହ୍ରସ୍ୱ 'ଇ' ସ୍ଥାନରେ ଦୀର୍ଘ 'ଈ' ବେଶୀ । ସମ୍ବଲପୁରରେ ଡ, ଳ ର ପ୍ରଭେଦ ନାହିଁ ବୋଲି 'ଚଳେ' ସ୍ଥାନରେ ଚଲେ ଏବଂ 'ଶାଳଗ୍ରାମ' ସ୍ଥାନରେ ଶାଲଗ୍ରାମ ଲେଖା ହୋଇଛି । ପତ୍ରଟି ସମ୍ବଲପୁରୀ, ଇଂରାଜୀ ଓ ଓଡ଼ିଆ ତିନିପ୍ରକାର ଭାଷା ଓ ଉପଭାଷାର ମିଶ୍ରଣ ।

ଜଣେ ଲୋକ ଓଡ଼ିଶାର ଗୋଟିଏ ଗାଁରେ ଜନ୍ମ ହୋଇ ବହୁକାଳ ବଙ୍ଗ ଓ ବିହାରରେ ରହି ମଝିରେ ମଝିରେ ଗାଁକୁ ଆସି ଯେ ପ୍ରକାର ଓଡ଼ିଆ ଭାଷା କହୁଛନ୍ତି, ତା ଭାଷାତତ୍ତ୍ୱବିତ୍‌ମାନଙ୍କର ପ୍ରଣିଧାନର ବିଷୟ ।

ସେ ପୂର୍ବତ୍ର ପାଞ୍ଚ ଦଶ ମିନଟ କଥା କହିଲେ ଏକ କାଳ୍ପନିକ ଟାଇପୀକାର ଭାଷା ଶୁଣିଲା ପରି ମନେହୁଏ ।

"ମୁଁ ଗାଡ଼ିରେ ଚଢ଼ି ବାବୁର ବାଡ଼ିରେ ପହଞ୍ଚିଲି । ମୋତେ ଦେଖି ବାବୁର ଛେଲିଆସବୁ ଭାରି ଖୁସି । ତୁ କେନ ବକ୍‌ସିସ ନ ନେଇ ପଳାଇଗଲି । ଏଥର ତୁ ହୋଟେଲରେ କାଜ କର । ହୋଟେଲକୁ ଆଦମ୍ ଲୋକ ଯେତେ ଆସୁଛନ୍ତି ସବ ଆଚ୍ଛା ଆଦମ୍......।"

ମନେହୁଏ ଓଡ଼ିଆ କ୍ରିୟାପଦର ଶୁଦ୍ଧ ବ୍ୟବହାର ତାଙ୍କର ଅନେକ ନଷ୍ଟ ହୋଇଯାଇଛି । ବହୁ ବଙ୍ଗଳା ଓ ହିନ୍ଦୀ ଶବ୍ଦ ବ୍ୟବହାର କରୁଛନ୍ତି; କିନ୍ତୁ ବାକ୍ୟଗଠନ ପ୍ରଣାଳୀରେ ବିଶେଷ ପରିବର୍ତ୍ତନ ହୋଇ ନାହିଁ । ମଝିରେ ମଝିରେ ସେ ଗାଁରେ ଯେ ବର୍ଷେ ଛମାସ ରହନ୍ତି, ତହିଁରେ ବିଦେଶୀ ଭାଷାର ପ୍ରଭାବ ଅନେକ ବ୍ୟାହତ ହୁଏ ।

ଏକ ଭାଷାର ପ୍ରଭାବରେ ଅନ୍ୟ ଭାଷାର ବାକ୍ୟରଚନାଭଙ୍ଗୀ ପର୍ଯ୍ୟନ୍ତ କିପରି ପରିବର୍ତ୍ତିତ ହୁଏ, ତାର ଅନ୍ୟତମ ଉଦାହରଣ ଦିଆଯାଇ-ପାରେ । ଦକ୍ଷିଣସାଗର, ଚୀନ ଉପକୂଳ ଓ ସିଏରଲେଓନା ପ୍ରଭୃତି ଜାଗାମାନଙ୍କରେ ତତ୍ରତ୍ୟ ବାସିନ୍ଦାମାନେ ଏକପ୍ରକାର ମାତୃଭାଷା-ମିଶ୍ରିତ ଇଂରାଜୀ ବ୍ୟବହାର କରନ୍ତି । ସ୍ଥାନୀୟ ବାଣିଜ୍ୟ ବ୍ୟବସାୟ ପାଇଁ ଚଳନ୍ତି କଥାବାର୍ତ୍ତା କରିବା ଲାଗି ସେମାନେ ଖଣ୍ଡିଆ ଇଂରାଜୀ କହିବାକୁ ଚେଷ୍ଟା କରନ୍ତି ଓ ସାହେବମାନେ ମଧ୍ୟ ସ୍ଥାନୀୟ ଭାଷା ଶିଖି ନ ପାରି ଲୋକଙ୍କ ସଙ୍ଗେ କଥାବାର୍ତ୍ତା ନିତାନ୍ତ ଆବଶ୍ୟକ ହେଉଥିବାରୁ ସେହି ଲୋକମାନଙ୍କୁ ଅନୁକରଣ କରି ଖଣ୍ଡିଆ ଇଂରାଜୀ (broken English) କହନ୍ତି । ଚୀନରେ ଏହି ମିଶ୍ରଭାଷା Pidgin ଓ ଦକ୍ଷିଣ ସାଗରରେ Beach-la-mar ନାମରେ ପରିଚିତ । ଶେଷୋକ୍ତ ମିଶ୍ର (Jargon) ଭାଷାରୁ ଗୋଟିଏ ଉଦାହରଣ ନିଆଯାଉ ।

What for you put diss belonga master in fire ?
(Why did you put the master's dishes
into the fire ? )

Him cost plenty money and that fellow kai-kai him ?
(They cost a lot of money and it has destroyed them)
Kai-kai he finish ? Is dinner ready ?

ଇଂରାଜୀ ପାଠକମାନେ ବୁଝିପାରିବେ, ସହଜରେ ବୁଝିଯିବା ପାଇଁ ଇଂରାଜୀ ଭାଷା କି ପ୍ରକାର ରୂପ ଧାରଣ କରିଛି । ସେଫିଲ୍ଡରୁ ସାଉଥ୍ ସି ଭିତରେ ଗୋଟିଏ ଭାଷାର କି ପରିବର୍ତ୍ତନ !

ଓଡ଼ିଶାରେ ମିଶ୍ରଭାଷା କଥା ବିଚାର କଲେ ସର୍ବାଦୌ ସମ୍ବଲପୁରର ହୀରାକୁଦ କଥା ବିଚାର କରିବାର କଥା । ହୀରାକୁଦରେ ଆସନ୍ତା ଦଶ ବର୍ଷ ଭିତରେ କି ପ୍ରକାର ସାଧାରଣ ଭାଷା ଚାଲୁ ହେବ ଓ ତାର ଗଢ଼ କ'ଣ ହେବ ? ହୀରାକୁଦ ଭଳି ଭାରତର ଅନ୍ୟ କେତେକ ଜାଗାରେ ଯେଉଁ ନୂତନ ପିଲାସବୁ ଜନ୍ମ ହେବେ, ସେମାନଙ୍କର ଭାଷା କି ପ୍ରକାର ରୂପ ଧରିବ ? ହୀରାକୁଦ ସମ୍ବଲପୁରର ଗୋଟିଏ ଜାଗା, ଯେଉଁଠି ସାଧାରଣତଃ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ବ୍ୟବହୃତ ନ ହୋଇ ସମ୍ବଲପୁରୀ ଉପଭାଷା ପ୍ରଚଳିତ । ଏହି ସମ୍ବଲପୁରୀ ଭାଷା ମଧ୍ୟପ୍ରଦେଶର ହିନ୍ଦୀଭାଷାଦ୍ୱାରା ପ୍ରଭାବିତ । ଅଧିକାଂଶ ଶବ୍ଦ ହିନ୍ଦୀ ଓ ଦେଶଜ । ଓଡ଼ିଆ ବାକ୍ୟରଚନାଭଙ୍ଗୀରେ ହିନ୍ଦୀ ପ୍ରଭାବ ସ୍ପଷ୍ଟ । ର, ଳ ପ୍ରଭେଦ ନାହିଁ । ନ କାର, ମ କାର ଉଚ୍ଚାରଣରେ ନାସାରନ୍ଧ୍ରରେ ଅଧିକାଂଶ ପବନ ଯାତାୟାତ କରେ ବୋଲି ଅଧିକ ଅନୁନାସିକ ଧ୍ୱନିକୁ ପିଲାମାନେ ଲେଖାରେ ଚନ୍ଦ୍ରବିନ୍ଦୁ ଦେଇ ପ୍ରକାଶ କରନ୍ତି; ଯଥା—ମା କୁ ମାଁ । ଓ ଏଣୁତେଣୁ ଶବ୍ଦକୁ ବି ଏଣୁଁ ତେଣୁଁ ବୋଲି ଲେଖନ୍ତି । ଷ୍ଟାଣ୍ଡାର୍ଡ଼ ଓଡ଼ିଆ କହିବା ସେମାନଙ୍କ ପକ୍ଷରେ ଯେତେ କଷ୍ଟକର, ହିନ୍ଦୀଭାଷା କହିବା ସେତେ କଷ୍ଟକର ନୁହେଁ । ସମ୍ବଲପୁର ଭାଷା ଗବେଷଣା ନିତାନ୍ତ ଆବଶ୍ୟକ ହେଲେ ମଧ୍ୟ ଏପର୍ଯ୍ୟନ୍ତ ହୋଇ ନାହିଁ । ତେଣୁ ଲୋକଙ୍କ ସଙ୍ଗେ ସ୍କୁଲ କଲେଜରେ ମିଶି ଯେଉଁକି ବିଶେଷଜ୍ଞ ଦୃଷ୍ଟିରେ ପଡ଼ିଛି, ତାଠୁ ବେଶୀ କହି ହେଉ ନାହିଁ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଖଡ଼ିଆକୁଦ ଏହିପରି ଏକ ଭାଷାଭାଷୀ ଅଞ୍ଚଳରେ ଅବସ୍ଥିତ । ଖଡ଼ିଆକୁଦରେ କାମ କରୁଥିବା ଅଧିକାଂଶ ଲୋକ ପଞ୍ଜାବୀ । ତାଙ୍କୁ ତଳକୁ ତଳପା ପର୍ଯ୍ୟନ୍ତ ପଞ୍ଜାବୀ ଅଛନ୍ତି । ସେମାନଙ୍କ ତୁଳନାରେ ଅନ୍ୟାନ୍ୟ ଭାରତୀୟ ଖୁବ୍ କମ୍ । ଷ୍ଟାଣ୍ଡାର୍ଡ଼ ଓଡ଼ିଆଭାଷୀ କୁଲି ଓ ଅଫିସର ବହୁତ କମ୍ । ସୁତରାଂ ପ୍ରଥମ ଭାଷା ସମ୍ବଲପୁରୀ ଓଡ଼ିଆ; ଦ୍ୱିତୀୟ ଭାଷା ପଞ୍ଜାବୀ, ହିନ୍ଦୀ; ତୃତୀୟ ଭାଷା ଷ୍ଟାଣ୍ଡାର୍ଡ଼ ଓଡ଼ିଆ । ତୃତୀୟ ଭାଷାର ପ୍ରଭାବ ନିତାନ୍ତ କ୍ଷୀଣ । ଏପରି ଅବସ୍ଥାରେ ଖଡ଼ିଆକୁଦରେ ଯେଉଁ Pidgin ବା Beach-la-mar ମିଶ୍ରଭାଷାର ସୃଷ୍ଟି ହେବ, ତହିଁରେ କାହାର ପ୍ରଭାବ କେତେ ହେବ, ତାହା ବର୍ତ୍ତମାନଠୁ କହିବା କଠିନ । ପୃଥିବୀର ଅନ୍ୟାନ୍ୟ ଦେଶରେ କି ପ୍ରକାର ଭାଷାମିଶ୍ରଣ ହୋଇଛି, ତାର ସଂକ୍ଷେପ ବିବରଣୀ ଜାଣିପାରିଲେ ଖଡ଼ିଆକୁଦ ଭାଷାର ଭବିଷ୍ୟତ ଦିଗ୍‌ନିର୍ଣ୍ଣୟ କରାଯାଇପାରେ । ସିଂହଭୂମି ଓ ଷଢ଼େଇକଳା ପ୍ରଭୃତି ରାଜ୍ୟର ଭାଷା ଏହି ଦୃଷ୍ଟିରୁ ଗବେଷଣାଯୋଗ୍ୟ ।

କୌଣସି ରାଜ୍ୟର ସୀମା ପ୍ରଦେଶରେ ଯେଉଁଠି ଅନ୍ୟଭାଷୀ ଲୋକଙ୍କର ପ୍ରଭାବ ଥାଏ, ସେହି ସ୍ଥାନମାନଙ୍କରେ ଭାଷା-ବିବର୍ତ୍ତନ ଦେଖାଯାଏ । ସମ୍ବଲପୁର ଛଡ଼ା ଓଡ଼ିଶାର ଗଞ୍ଜାମରେ ତେଲୁଗୁ ଓ ବାଲେଶ୍ୱରରେ ବଙ୍ଗପ୍ରଭାବ ବେଶୀ । ପୁରୀର ଅବସ୍ଥା ସ୍ୱତନ୍ତ୍ର । ପୁରୀ ଏକ ମହାଭାରତୀୟ ତୀର୍ଥ ସ୍ଥାନ, ବହୁ ଭାଷା ବହୁ ସଂସ୍କୃତିର ମିଳନ-ସ୍ଥଳ । ସେଠିକାର ପଣ୍ଡା ପଢ଼ିହାରୀ ଭାରତର ଯେ କୌଣସି ଭାଷା ମାତୃଭାଷା ପରି କହିପାରନ୍ତି । ଏହିପରି କହିପାରୁଥିବା ବ୍ୟକ୍ତି ଭାଷାତତ୍ତ୍ୱ-ବିତ୍‌ମାନଙ୍କର ବିଶେଷ ଗବେଷଣାର ପାତ୍ର ହେବା ଉଚିତ ।

ଦୁଇ ବିଭିନ୍ନ ଭାଷାଭାଷୀ ରାଜ୍ୟ ପରସ୍ପର ନିକଟବର୍ତ୍ତୀ ଥିଲେ ଉଭୟ ରାଜ୍ୟର ଲୋକେ ପରସ୍ପରର ଭାଷାଦ୍ୱାରା ପ୍ରଭାବିତ ହୁଅନ୍ତି । ଏହି ପ୍ରଭାବ ତିନି ପ୍ରକାର ହୋଇପାରେ —(କ) ଧ୍ୱନିଗତ (ଫୋନେଟିକ୍)
(ଖ) ଶବ୍ଦଗତ
(ଗ) ବାକ୍ୟଗଠନପ୍ରଣାଳୀଗତ ।

(କ) ମନୁଷ୍ୟ ଯେତେବେଳେ ଏକାଧିକ ଭାଷାରେ ପ୍ରବୀଣ ହୁଏ, ସେତେବେଳେ ତାର ବାଗ୍‌ଯନ୍ତ୍ରର ମାଂସପେଶୀଗୁଡ଼ିକ ଏକାଧିକ ଭାଷାର ଧ୍ୱନି ଉଚ୍ଚାରଣ କରିବା ପାଇଁ ଅଭ୍ୟସ୍ତ ହୁଅନ୍ତି । ସେହି ମାଂସପେଶୀ ଗୁଡ଼ିକର ଏକପ୍ରକାର ସ୍ମୃତି ଅଛି । ଗୋଟିଏ ଭାଷାର ଧ୍ୱନି ଉଚ୍ଚାରଣ କଲାବେଳେ ଯଦି ଅନ୍ୟଭାଷାର ସ୍ମୃତି ହଠାତ୍ ଜାଗ୍ରତ ହୁଏ, ତେବେ ଅନ୍ୟ ଭାଷାର ଧ୍ୱନି ମଧ୍ୟ ଉଚ୍ଚାରିତ ହୋଇପଡ଼େ । ଧରନ୍ତୁ ଇଂରାଜୀ arm ଏବଂ ଫ୍ରେଞ୍ଚ୍ arme ଉଚ୍ଚାରଣ କରିବାକୁ ହେଲେ ଇଂରାଜୀ ଲୋକେ r ଉଚ୍ଚାରଣ କରନ୍ତି ନାହିଁ; କିନ୍ତୁ ଫ୍ରେଞ୍ଚ୍ ଲୋକେ r ଉଚ୍ଚାରଣ କରନ୍ତି । ତେଣୁ ଫ୍ରେଞ୍ଚଲୋକ ଇଂରାଜୀ କହିବା ବେଳେ ଅତର୍କିତଭାବରେ ବେଳେ ବେଳେ 'arm' ଶବ୍ଦରେ ମାତୃଭାଷା ପ୍ରଭାବବଶତଃ r ଉଚ୍ଚାରଣ କରିପାରନ୍ତି । ସେହିପରି ମଧ୍ୟ ଇଂରାଜଲୋକ ଫ୍ରେଞ୍ଚ୍ arme ଶବ୍ଦରେ r ଧ୍ୱନିକୁ ଲୋପ କରିଦେବା ସମ୍ଭବ । ଓଡ଼ିଆ ଭାଷାରେ ତାଲବ୍ୟ 'ଶ' ର ଉଚ୍ଚାରଣ ନାହିଁ । ମାତ୍ର ଶୁଦ୍ଧ ଇଂରାଜୀ shକୁ ଉଚ୍ଚାରଣ କରିବା ପାଇଁ ପ୍ରକୃତ ତାଲବ୍ୟ 'ଶ' ଉଚ୍ଚାରଣ ଦରକାର । ଏହି 'ଶ' ର ଉଚ୍ଚାରଣ ବଙ୍ଗୀୟ ଭଦ୍ରଲୋକଙ୍କର 'ମଶାୟ' ଏବଂ ହିନ୍ଦୀଭାଷୀଙ୍କର 'ବିଶେଷ' ଶବ୍ଦ ଉଚ୍ଚାରଣରେ ପାଇବେ । ଓଡ଼ିଆ ଲୋକ ପ୍ରକୃତ sh ଉଚ୍ଚାରଣରେ ଅଭ୍ୟସ୍ତ ହୋଇଗଲେ ଅନେକ ସମୟରେ 'ସ' ସ୍ଥାନରେ ମଧ୍ୟ ଭୁଲରେ 'ଶ' ଉଚ୍ଚାରଣ କରିବା ସମ୍ଭବ । ପୃଥିବୀର ପରସ୍ପର ପ୍ରଭାବିତ ଭାଷାମାନଙ୍କରେ ଏହି ଧ୍ୱନିଗତ ବିଭ୍ରାଟ ବହୁଳଭାବରେ ଦେଖାଯାଏ । ସୀମାନ୍ତ ଅଞ୍ଚଳର ଆମେରିକାନ୍ ଇଂରାଜୀ ଆଦିମ ଆମେରିକାନ୍ ଭାରତୀୟ ଭାଷାମାନଙ୍କଦ୍ୱାରା ପ୍ରଭାବିତ ବୋଲି ଆମେରିକାନ୍ ଫୋନେଟିସିଆନ୍‌ମାନେ ବହୁ ପ୍ରମାଣ ଦର୍ଶାଇଛନ୍ତି ।

(ଖ) ବିଭିନ୍ନ ପ୍ରତ୍ୟୟ ଯୋଗରେ ନୂତନ ଶବ୍ଦ ତିଆରି କରିବା ଭାଷାର ଏକ ପ୍ରଧାନ କାର୍ଯ୍ୟ । ଯେଉଁ ଭାଷା ଯେତିକି ସହଜରେ ଶବ୍ଦ ସୃଷ୍ଟି କରିପାରେ, ସେହି ଭାଷା ସେତିକି ସମୃଦ୍ଧ । କୌଣସି ଏକ ଭାଷାରେ ଗୋଟିଏ ପ୍ରତ୍ୟୟ ବହୁଳଭାବରେ ବ୍ୟବହୃତ ହେଲେ ନିକଟବର୍ତ୍ତୀ ଅନ୍ୟ

ଭାଷା ସେହି ପ୍ରତ୍ୟୟକୁ ବ୍ୟବହାର କରେ ଓ କାଳକ୍ରମେ ସାଧାରଣ ଶବ୍ଦମାନଙ୍କରେ ଯୋଗ କରି ନୂତନ ଶବ୍ଦ ଗଢ଼େ । ଫ୍ରେଞ୍ଚ ଭାଷାରେ able ପ୍ରତ୍ୟୟ ଇଂରାଜୀ agreeable, excusable, variable ପ୍ରଭୃତି ଶବ୍ଦରେ ବ୍ୟବହୃତ ହୋଇ କାଳକ୍ରମେ eatable, drink-able, lookable ପ୍ରଭୃତି ଯେ କୌଣସି କ୍ରିୟାରେ ଯୁକ୍ତ ହୋଇ ବିଶେଷଣ ସୃଷ୍ଟି କରିପାରେ । ଭଦ୍ରପୁରିଆ, ଗଞ୍ଜେଇଡ଼ିଆ, ଢେଙ୍କାନାଳିଆ, କଟିକିଆ ପ୍ରଭୃତି ଶହ ଶହ ଓଡ଼ିଆ ଶବ୍ଦରେ 'ଆ' ବହୁଳଭାବରେ ବ୍ୟବହୃତ ହେଉଥିବାରୁ ଆମେ ବିଦେଶୀ କମିଶନ, ଅଡ଼ନାଷ୍ଟି ପ୍ରଭୃତି ଶବ୍ଦରେ 'ଆ' ଲଗାଇ 'କମିଶନିଆ', 'ଅଡ଼ନାଷିଆ' ପ୍ରଭୃତି ତିଆରି କରୁଛୁ ।

(ଗ) ଗୋଟିଏ ଭାଷା ଅନ୍ୟ ଭାଷାକୁ କେବଳ ଧ୍ୱନି ଏବଂ ଶବ୍ଦଗଠନରେ ପ୍ରଭାବିତ କରେ, ନାହିଁ, ଏପରି କି ବାକ୍ୟଗଠନ ଓ ପ୍ରକାଶଭଙ୍ଗୀ ମଧ୍ୟ ପରିବର୍ତ୍ତିତ ହୋଇଯାଏ । ଫରାସୀ ଭାଷାରେ c'est moi ଅଛି ବୋଲି ଇଂରାଜୀରେ It is me ବୋଲି ବ୍ୟବହାର ଅଛି । ପ୍ରକୃତରେ It is I ହେବାର କଥା । Our India ବହିର ଅନୁବାଦ 'ଆମ ଭାରତବର୍ଷ'ରେ ଇଂରାଜୀପ୍ରଭାବିତ ବହୁ ବାକ୍ୟାଂଶ ଦେଖିବାକୁ ମିଳେ । ସେମାନଙ୍କ ମଧ୍ୟରୁ ଗୋଟିଏ ଉଦାହରଣ ନିଆଯାଉ—"ମୁଁ ନାମ କରିବି ସୂର୍ଯ୍ୟଦେବଙ୍କର, ନାମ କରିବି ଆମ ବିଶାଳ ଦେଶର ଅନନ୍ତ ଜମି ।"

ଆମେ ସାଧାରଣ ଓଡ଼ିଆ ଭାଷାରେ ଏମିତି ବ୍ୟବହାର କ୍ୱଚିତ୍ କରିଥାଉଁ । ଇଂରାଜୀ ଭାଷାର where ଏବଂ when ପ୍ରଯୁକ୍ତ ବାକ୍ୟ ରଚନାଭଙ୍ଗୀ ଓଡ଼ିଆ କାହିଁକି, ଯେ କୌଣସି ଭାରତୀୟ ଭାଷାକୁ ପ୍ରଭାବିତ କରିଛି । ଇଂରାଜୀର ଏକ ବାକ୍ୟ "The country where he was born is one of the..............." ଅନୁକରଣରେ ଆମେମାନେ "ସେହି ଦେଶ ଯେଉଁଠି ସେ ଜନ୍ମ ହୋଇଥିଲେ........" ପରି ବାକ୍ୟ ବରାବର ବ୍ୟବହାର କରୁ । ବର୍ତ୍ତମାନର ଛନ୍ଦହୀନ ବନ୍ଧହୀନ ଓଡ଼ିଆ କବିତା ଆଧୁନିକ ଇଂରାଜୀ କବିତାର ପ୍ରେତଚ୍ଛାୟା ବୋଲି ବୋଧହୁଏ ସମସ୍ତେ ସ୍ୱୀକାର କରିବେ ।

ନିକଟବର୍ତ୍ତୀ ଦୁଇ ଭାଷା ପରସ୍ପରକୁ କିପରି ପ୍ରଭାବିତ କରନ୍ତି, ତାର ନମୁନା ଉପରେ ଦିଆଯାଇଅଛି । ବର୍ତ୍ତମାନ ପ୍ରଶ୍ନ ହେଉଛି, କିଏ କାହାକୁ ପ୍ରଭାବିତ କରେ ଓ କିପରି ? ଆମ ଦେଶ ଖୁବ୍ ବିରାଟ ଦେଶ । ଜଣେ ଲୋକ ହିନ୍ଦୀରେ କଥା କହିପାରିଲେ ସେ ହିମାଚଳରୁ ସୀମାଚଳ ଓ ସିନ୍ଧୁରୁ ବ୍ରହ୍ମପୁତ୍ର ପର୍ଯ୍ୟନ୍ତ ଚାଲିଯାଇପାରିବ । ମାତ୍ର ଇଉରୋପର ଅବସ୍ଥା ଆଜି ଅନେକ ଭଲ ହେଲେ ମଧ୍ୟ ଇଂଲଣ୍ଡରୁ ପାରହୋଇ ପଚିଶ ମାଇଲ ମାତ୍ର ଚାଲିଗଲେ ଆଉ ଏକ ନୂତନ ଭାଷା ଶୁଣିବାକୁ ମିଳିବ । ସେଠି thank you, sorry ନ ଶୁଣି merci, pardons monsieur ଶୁଣିବାକୁ ପଡ଼ିବ । କେଉଁଠି ଶହେ, କେଉଁଠି ପଚିଶ ମାଇଲ; ମାତ୍ର ପାର ହୋଇଗଲେ ସ୍ପେନିସ୍, ଜର୍ମାନ୍, ଗ୍ରୀକ୍, ଇଟାଲିଆନ୍, ହଙ୍ଗେରିଆନ୍, ପୋଲିସ୍, ରସିଆନ୍ ପ୍ରଭୃତି ପଚିଶ ପ୍ରକାର ଭାଷା ଶୁଣିବାକୁ ମିଳେ । ଇଉରୋପର କ୍ଷୁଦ୍ର ରାଜ୍ୟମାନଙ୍କର ଇତିହାସ ଅତି ବିଚିତ୍ର । ସାଗରଲହରୀ ପରି ସେ ଦେଶରେ ବିଦେଶୀ ଆକ୍ରମଣ ଚାଲେ । କେବଳ ଗୋଟିଏ ଦେଶ ଇଂଲଣ୍ଡର ଉଦାହରଣ ନେଲେ ଜଣାପଡ଼ିବ ତା କେମିତି ଗଲସ୍, କେଲଟସ୍, ରୋମାନସ୍, ଡେନସ୍, ନରମାନ୍-ଫ୍ରେଞ୍ଚମାନଙ୍କ ଦ୍ୱାରା ବାରମ୍ବାର ଆକ୍ରାନ୍ତ ହୋଇଛି । ପୋଲାଣ୍ଡ ଏବଂ ବଲକାନ୍ ଷ୍ଟେଟସ୍‌ର ଅବସ୍ଥା ମଧ୍ୟ ସେହିପରି । ଏବେ ଜର୍ମାନୀର ଅବସ୍ଥା ଆହୁରି ଖରାପ । ଏହି ବାରମ୍ବାର ବିଦେଶୀ ଆକ୍ରମଣ, ଅଧିକାର ଓ ଶାସନ ଫଳରେ ବହୁ ଭାଷା ବିଭିନ୍ନ ଭାବରେ ପ୍ରଭାବିତ । ସେହି ଦୃଷ୍ଟିରୁ ଇଉରୋପରେ ମିଶ୍ରଭାଷା ଅନୁସନ୍ଧାନ ବଡ଼ କୌତୂହଳପୂର୍ଣ୍ଣ । ଭାଷା-ମାନଙ୍କର ପରସ୍ପର ପ୍ରଭାବ ବିଚାର କଲାବେଳେ ଦୁଇଟି ଦୃଷ୍ଟିକୋଣରୁ ବିଚାର କରିବାକୁ ହେବ—ଯେଉଁ ଜାତି ବିଜୟୀ ହୁଏ, ତାର ଭାଷା ଏବଂ ଯେଉଁ ଜାତି ପରାଜିତ ହୁଏ, ତାର ଭାଷା କେମିତି ପ୍ରଭାବିତ ହୁଏ ।

ବର୍ତ୍ତମାନ ବିଜିତର ଭାଷା ବିଚାର କରାଯାଉ । ଭାରତୀୟ ଭାଷାଗୁଡ଼ିକ ଏହାର ପ୍ରକୃଷ୍ଟ ଉଦାହରଣ । ଇଂରେଜମାନେ କଳେ-ବଳେ-କୌଶଳେ ଏ ଦେଶକୁ ନେଇ ଏଠି ଶତାଧିକ ବର୍ଷ ଶାସନ

ଚଳାଇଲେ । ଦେଶର ସମସ୍ତ କଚେରୀ, ସ୍କୁଲ ଓ କଲେଜରେ ଇଂରାଜୀ ଭାଷା ବାଧ୍ୟତାମୂଳକଭାବରେ ବ୍ୟବହୃତ ହେଲା । ଇଂରାଜୀ ପୋଷାକ, ଇଂରାଜୀ ଖାନା, ଇଂରାଜୀ ପ୍ରସ୍ତୁତ ଯନ୍ତ୍ରପାତି ଏ ଦେଶରେ ଶହ ଶହ ବର୍ଷ ଧରି ଚାଲିଲା । ଇଂରାଜୀ ପାଠ, ଇଂରାଜୀ ଢଙ୍ଗ ଉପରେ ଜୀବିକା-ନିର୍ବାହ ନିର୍ଭର କଲା । ଇଂରାଜୀ ରାଜଭାଷା ଓ ସଭ୍ୟତାର ପରିଚାୟକ ହେବାରୁ ପାଠୁଆ ଅପାଠୁଆ ସମସ୍ତେ ଇଂରାଜୀ କହିବାକୁ ଲାଗିଲେ । ଇଂରାଜ-ମାନେ ଏବେ ଚାଲିଯିବା ପରେ ମଧ୍ୟ ଲୋକେ ବେଶୀ ଇଂରାଜୀ କହୁଛନ୍ତି, ମଫସଲ ଲୋକେ ଜାଣି ଜାଣି ବି କହିବାକୁ ଚାହୁଁଛନ୍ତି । ଫ୍ରାନ୍ସ ଦେଶର ବ୍ରିଟାନୀ ଅଞ୍ଚଳରେ ଏହି ଅବସ୍ଥା ସୃଷ୍ଟି ହୋଇଥିଲା । ଫ୍ରେଞ୍ଚ୍ ରାଜଭାଷା ଓ ଫେସନ୍ ଭାଷା ହୋଇଥିବାରୁ ବ୍ରିଟାନୀ ଲୋକେ ବ୍ରେଟନ ଭାଷା ନ କହି ଫ୍ରେଞ୍ଚ୍ କହିବାକୁ ବେଶୀ ପସନ୍ଦ କଲେ । ବ୍ରିଟାନୀ କୁମାରୀମାନେ ନିଜକୁ ସଭ୍ୟ ବୋଲି ପରିଚିତ ଦେବାକୁ କୌଣସି ପ୍ରକାରେ ଭିଡ଼ିଓଟାରି ବ୍ରେଟନ୍ ଭାଷାରେ କେତୋଟି ହେଲେ ଫ୍ରେଞ୍ଚ୍ ଶବ୍ଦ ମିଶାଇ କହୁଥିଲେ । ଓଡ଼ିଆ ଭାଷାରେ ବର୍ତ୍ତମାନ ଇଂରାଜୀ କେତେ ଭାଗ, ତାର ଗଣନା ହୋଇନି । ମାତ୍ର ଦୈନିକ ଖବରକାଗଜର ହେଡ୍‌ଲାଇନ୍ ଗଣି ସେଥିରେ ଇଂରାଜୀମିଶ୍ରିତ ହେଡ୍‌ଲାଇନ୍ ସଂଖ୍ୟା ଏକ ସମୟରେ ମୁଁ ଯାହା ଦେଖିଛି, ତାହା ଶତକରା ୬୦ ଭାଗରୁ ଟିକିଏ କମ୍ । ଇଂରାଜୀ ସାହିତ୍ୟ ଭାରତର ସମସ୍ତ ଭାଷାକୁ ବିଶେଷଭାବରେ ପ୍ରଭାବିତ କରିଛି ।

ତେବେ ଏହି ସଂଘର୍ଷରେ ବିଜୟୀ ଭାଷାର ଅବସ୍ଥା କ'ଣ ହୋଇଛି ଦେଖିବାର କଥା । ବିଜୟୀ ନିକଟରେ ବିଜିତ ସବୁବେଳେ ହେୟ । ତେଣୁ ବିଜିତ ଲୋକର ଭାଷା ଶିଖିବା ବା ଅନୁକରଣ କରିବା ପାଇଁ ବିଜୟୀ କେବେ ଚେଷ୍ଟା ନ କରି ବରଂ ନିଜ ଭାଷାକୁ ବିଜିତ ଉପରେ ମାଡ଼ିଦେବାର ଚେଷ୍ଟା କରେ । ଇଂରାଜମାନେ ଭାରତୀୟଙ୍କ ପୋଷାକପତ୍ର ଖାନାପିନା କିଛି ହେଲେ ଶିକ୍ଷା କରିବାର ଚେଷ୍ଟା କରି ନାହାନ୍ତି । ସମୁଦାୟ ଭାରତୀୟ ଭାଷାରୁ ସେମାନେ cot,

loot, toddy, jungle, bungalow, coolie, maharaja, pyjama ପ୍ରଭୃତି କେତୋଟି ମାତ୍ର ଶବ୍ଦ ନେଇଛନ୍ତି । ଏଠି ବିଜୟୀମାନଙ୍କର ଅବସ୍ଥା ସ୍ୱତନ୍ତ୍ର । ସେମାନେ ସାତ ହଜାର ମାଇଲ ଦୂରରେ ରହୁଥିଲେ । କେବଳ କେତେକ ଶାସକଶ୍ରେଣୀୟ ଇଂରେଜ ଆସି 'ଲୋକଲୋଚନ ଅଗୋଚରେ' ବିରାଟ ରାଜପ୍ରାସାଦରେ ରହି ଫେରି ଯାଉଥିଲେ । ସେମାନଙ୍କ ଉପରେ ଭାରତୀୟଙ୍କ ଛାଇ ପର୍ଯ୍ୟନ୍ତ ପଡ଼ୁ ନ ଥିଲା । ମାତ୍ର ଇଉରୋପରେ ବିଜୟୀମାନଙ୍କ ଅବସ୍ଥା ଭିନ୍ନ । ଉଦାହରଣ ସ୍ୱରୂପ ନର୍ମାନ୍ ଫ୍ରେଞ୍ଚମାନଙ୍କର ଇଂଲଣ୍ଡ ଆକ୍ରମଣ ଓ ଶାସନ । ନର୍ମାନ୍ ଫ୍ରେଞ୍ଚମାନେ ସଂଖ୍ୟାରେ କମ୍ ଥିବାରୁ ଏବଂ ଇଂରାଜୀ ସଭ୍ୟତା କ୍ରମଶଃ ବଳଶାଳୀ ହୋଇଉଠିବାରୁ ନର୍ମାନ-ଫ୍ରେଞ୍ଚ ଭାଷା ଇଂଲଣ୍ଡରୁ ତିନି ଶ' ବର୍ଷ ଭିତରେ ବିଦାୟ ହୋଇଗଲା । ଯଦି କୌଣସି ସ୍ଥାନରେ ବିଜୟୀମାନଙ୍କ ସଂଖ୍ୟା କମ୍ ହୁଏ ଏବଂ ସେମାନେ ବିଜିତ ରାଜ୍ୟକୁ ନିଜର ସ୍ତ୍ରୀପୁତ୍ରାଦି ନ ଆଣି ରହନ୍ତି, ତେବେ ସେମାନଙ୍କର ପ୍ରଭାବ କାଳକ୍ରମେ ନଷ୍ଟ ହୋଇଯାଏ ।

ମନେରଖିବାକୁ ହେବ, ସବୁ କ୍ଷେତ୍ରରେ ଭାଷା ସମାନ ଆଚରଣ କରେ ନାହିଁ । ଗୋଟିଏ ଭାଷା ବଳିଷ୍ଠ ବୋଲି ଯେ ସବୁବେଳେ ସେ ବଞ୍ଚିରହିବ, ତାର କିଛି ଅର୍ଥ ନାହିଁ । ସ୍ୱିଜରଲଣ୍ଡର କେତେକ ଗାଁରେ ଫ୍ରେଞ୍ଚ୍ ଓ ଜର୍ମାନ୍ ଦୁଇ ଭାଷା ପ୍ରଚଳିତ ହେଉଥିଲା । ଉଭୟେ ବଳିଷ୍ଠ ଭାଷା; ମାତ୍ର କାଳକ୍ରମେ ସେହି ଗାଁରୁ ଜର୍ମାନୀ ଭାଷା ଲୋପ ପାଇଗଲା, ଯଦିଓ ଜର୍ମାନୀ ଭାଷା କୌଣସି ଗୁଣରେ ଫରାସୀ ଭାଷାଠାରୁ ନ୍ୟୂନ ନୁହେଁ । ମାତ୍ର ସେହି ସ୍ୱିସ୍ ଗ୍ରାମମାନଙ୍କରେ ଫରାସୀଭାଷୀ ଲୋକେ ବେଶି କାରବାର କରୁଥିବାରୁ ସେମାନେ ଫରାସୀ ଭାଷାକୁ ବଞ୍ଚାଇ ରଖିଲେ, ଜର୍ମାନ୍ ଆପେ ଲୋପ ପାଇଗଲା ।

ଆଇରିସ୍ ଭାଷା ଇଂରାଜୀ ଭାଷା ଅପେକ୍ଷା ଉନ୍ନତ ବା ବଳିଷ୍ଠ ନୁହେଁ । ମାତ୍ର ଯେଉଁ ଇଂରାଜୀ ଭାଷା ଭାରତ ଭଳି ଭୂଖଣ୍ଡରେ

ରାଜତ୍ୱ କରିପାରିଲା, ଆୟାରଲଣ୍ଡ ଲୋକେ ତାର ବିରୁଦ୍ଧରେ ଆଇରିସ୍ ଭାଷାକୁ ଛଡ଼ା କରାଇପାରିଲେ । ଆଇରିସ୍‌ମାନଙ୍କ ଦେଶାତ୍ମବୋଧ ସେମାନଙ୍କର ଭାଷାକୁ ବଞ୍ଚାଇ ରଖିଛି । ଶତ୍ରୁଜାତିର ରାଜାମାନଙ୍କର ଭାଷାକୁ ସେମାନେ କେବେ ବରଦାସ୍ତ କରିବେ ନାହିଁ । ସ୍ୱାଧୀନତା ପରେ ଇଂରାଜୀ ଭାଷାକୁ ଦଣ୍ଡଆପାର କରିବାପାଇଁ ଭାରତରେ କି ପ୍ରାଣାନ୍ତ ଚେଷ୍ଟା, ତା ପାଠକମାନେ ସମସ୍ତିଙ୍କୁ ଜଣା ।

ଯେଉଁ ଭାଷାର ଶକ୍ତି ଓ ସମ୍ମାନ ଖୁବ୍ ଉଚ୍ଚ, ତାହାକୁ ବିତାଡ଼ିତ କରିବା ବା ମାରିଦେବା ବଡ଼ କଷ୍ଟକର । ତୁର୍କୀର ଲୋକେ ବହୁବାର ଗ୍ରୀସ୍ ଆକ୍ରମଣ କରି ମଧ୍ୟ ଗ୍ରୀସ୍‌ରେ ତୁର୍କୀ ଭାଷା ଚଳାଇପାରିଲେ ନାହିଁ; କାରଣ ଗ୍ରୀକ୍ ଭାଷାର ଶକ୍ତି ଓ ସମ୍ମାନ ଏତେ ବେଶୀ ଯେ ଲୋକେ ସହଜେ ଛାଡ଼ିବାକୁ ରାଜି ହେଲେ ନାହିଁ ।

ଏହିସବୁ ଦୃଷ୍ଟିରୁ ହୀରାକୁଦରେ କିପ୍ରକାର ଭାଷା ମୁଣ୍ଡ ଟେକିବ, ଭାବିବାର କଥା । ଜିପ୍‌ସି ଗୋଟାଏ ଜାରଗନ୍ ବା ମିଶ୍ରଭାଷା । ଇଂଲଣ୍ଡରେ ଜିପ୍‌ସିମାନେ ନିଜ ଭାଷା ବ୍ୟବହାର କରନ୍ତି; ମାତ୍ର ଇଂରାଜୀ ପ୍ରକାଶଭଙ୍ଗୀ ଓ ବହୁଳ ଇଂରାଜୀ ଶବ୍ଦ ବ୍ୟବହାର କରନ୍ତି । ହୁଏତ ପଞ୍ଜାବୀ ଆକ୍‌ସେଣ୍ଟ, ସମ୍ବଲପୁରୀ ଶବ୍ଦ ଓ ହିନ୍ଦି ରଚନାଭଙ୍ଗୀ ନେଇ ଏକ ବିଚିତ୍ର ଜାରଗନ୍ ଭାଷା ହୀରାକୁଦରେ ଜନ୍ମଲାଭ କରିପାରେ । ଅବଶ୍ୟ ଇଏ କିଛି ନୂଆ କଥା ନୁହେଁ ।

---

# ଶରୀର ଓ ଶବ୍ଦ

ମନୁଷ୍ୟ ଯେ ପଶୁମାନଙ୍କଠାରୁ ବହୁ ଦୂରରେ ଓ ଦେବତାମାନଙ୍କର ଖୁବ ନିକଟରେ, ତାର ଏକମାତ୍ର କାରଣ ବୋଧହୁଏ ତାର ଭାଷା—ତାର ମୁଖନିଃସୃତ ଅର୍ଥପୂର୍ଣ୍ଣ ଧ୍ୱନି । ମନୁଷ୍ୟର ଏହି ବିଚିତ୍ର କଥା-ଅସ୍ତ୍ରଟି ଏତେ ପୁରୁଣା ଯେ, ଆମେ କେବେ ହେଲେ ଭାବୁ ନାହିଁ ଆମେ କେମିତି କଥା କହୁଛୁ । ଜିଭ ହଲାଇଦେଲେ କଥାର ଅବିରତ ଧାରା ଝରିପଡ଼େ, ଅଥଚ କଥା କହିବାର ପ୍ରଣାଳୀ ଯେତେ ସହଜ ମନେ ହୁଏ, ତା ସେତେ ସହଜ ନୁହେଁ । ପେଟଠାରୁ ପାଟିପର୍ଯ୍ୟନ୍ତ ପ୍ରତ୍ୟେକ ତନ୍ତ୍ରୀ, ପ୍ରତ୍ୟେକ ରନ୍ଧ୍ର, ପ୍ରତ୍ୟେକ ମାଂସପେଶୀ ପବନ ସଙ୍ଗରେ ବିଚିତ୍ର ଖେଳ ଖେଳି ପ୍ରତି ମୁହୂର୍ତ୍ତରେ ମନୁଷ୍ୟପାଇଁ ଏହି କଥା-ଅସ୍ତ୍ର ସୃଷ୍ଟି କରନ୍ତି । ଆମ କଥାର ମୂଳ ଉପାଦାନ ଆମ ନିଶ୍ୱାସ ପ୍ରଶ୍ୱାସ—ଆମ ଫୁସ୍ ଫୁସ୍ ନିଃସୃତ ନିରବଚ୍ଛିନ୍ନ ପବନର ଧାରା । ଭଗବାନ ଏତେ ଦୟାଳୁ ଯେ, ଜୀବଜଗତକୁ ଯାହା ବଞ୍ଚାଇରଖେ, ମନୁଷ୍ୟକୁ ଯାହା ଦେବତାରେ ପରିଣତ କରେ, ସେହିପରି ଧ୍ୱନିର ମୂଳାଧାର ପବନର ଅସରନ୍ତି ଭଣ୍ଡାର ସେ ଆମପାଇଁ ରଖିଛନ୍ତି । ଭଗବାନଙ୍କ ଦାନକୁ ମହା ଆଶୀର୍ବାଦରେ ପରିଣତ କରିବାପାଇଁ ବୁଦ୍ଧିମାନ୍ ମନୁଷ୍ୟକୁ ଯେଉଁ ଜିଭ ମିଳିଛି, ତାରି ସାହାଯ୍ୟରେ ମଣିଷ ବିନା ମୂଲ୍ୟରେ ସବୁଠାରୁ ମୂଲ୍ୟବାନ୍ ଭାଷା ( speech ) ସୃଷ୍ଟି କରିପାରୁଛି ।

ଏହି ମୁଖ-ନିଃସୃତ କଥାକୁ ନେଇ ଆଜି ପାଶ୍ଚାତ୍ୟ ଲୋକେ ଧ୍ୱନି-ବିଜ୍ଞାନ ବା ଫୋନେଟିକସ ବୋଲି ଏକ ବିଚିତ୍ର ବିଜ୍ଞାନର ଅନୁସନ୍ଧାନରେ ଲାଗିପଡ଼ିଛନ୍ତି । ମାତ୍ର ଗୌରବର କଥା, ଆମରି ପାଣିନି ପାତଞ୍ଜଳି ପ୍ରଭୃତି ମନୀଷୀମାନଙ୍କର ଧ୍ୱନିଚର୍ଚ୍ଚା ଏହି ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କୁ ପ୍ରଥମ ପ୍ରଦୀପ ଯୋଗାଇଅଛି । ମୁଖ-ନିଃସୃତ ଧ୍ୱନିର ମୂଲ୍ୟ ଆମ ଲୋକେ ବିଶେଷ ଉପଲବ୍ଧି କରିଥିବାରୁ ଆମ ଧର୍ମଶାସ୍ତ୍ରରେ ଶବ୍ଦକୁ ବହୁ ଉଚ୍ଚ

ସ୍ଥାନ ଦିଆଯାଇଛି । ଶବ୍ଦହିଁ ବ୍ରହ୍ମ । ମାତ୍ର ହଠଯୋଗ ଓ ପାତଞ୍ଜଳ ଯୋଗ ପ୍ରଭୃତିରେ ଯେମିତି ଶବ୍ଦମାନଙ୍କର ଉତ୍ପତ୍ତି ବିଚାର କରାଯାଇଛି, ତାହା ଅନେକ ସମୟରେ ବୁଝିବା କଠିନ । ମନୁଷ୍ୟଶରୀରଭିତରେ ୬ଟି ଚକ୍ରର କଳ୍ପନା କରାଯାଇଅଛି । ସେଗୁଡ଼ିକ ଗୁହ୍ୟ, ଲିଙ୍ଗ, ନାଭି, ବକ୍ଷ, କଣ୍ଠ, ଲଲାଟ ଏହିପରି ଭିନ୍ନ ଭିନ୍ନ ସ୍ଥଳରେ ଅଛନ୍ତି । ସେହି ସେହି ସ୍ଥଳମାନଙ୍କରୁ ନିମ୍ନୋକ୍ତମତେ ଶବ୍ଦ ବାହାରେ ବୋଲି ଯେଉଁ କଳ୍ପନା କରାଯାଇଛି ଆଧୁନିକ ବିଜ୍ଞାନ ଦୃଷ୍ଟିରୁ ତାହା ସାର୍ଥକ ମନେ ହୁଏ ନାହିଁ । ନିମ୍ନଲିଖିତ କେତେକ ଶବ୍ଦର ଉତ୍ପତ୍ତି ସ୍ଥାନ ଲକ୍ଷ୍ୟ କରନ୍ତୁ—

| ସ୍ଥାନ | ନିଃସୃତ ଧ୍ୱନି |
|---|---|
| ଭ୍ରୂମଧ୍ୟ— | ହ, କ୍ଷ |
| କଣ୍ଠ— | ଅ, ଆ |
| ବକ୍ଷ— | କ, ଙ, ଟ, ଠ |
| ନାଭି— | ଡ, ଢ, ପ, ଫ |
| ଲିଙ୍ଗ— | ବ, ଭ, ମ, ଯ, ର, ଲ |
| ଲିଙ୍ଗ ଓ ଗୁହ୍ୟ ମଧ୍ୟବର୍ତ୍ତୀ ସ୍ଥାନ | ସ, ଶ, ଷ |

ଉପରୋକ୍ତ ବିଭାଗମାନଙ୍କ ମଧ୍ୟରୁ କଣ୍ଠରୁ ଅ, ଆ ଧ୍ୱନିତ ହେବା କଥା ବୈଜ୍ଞାନିକ ସତ୍ୟର ପାଖପାଖି, ଅନ୍ୟସବୁ କଳ୍ପନା-ନିଃସୃତ ଜମ୍ବା ଧର୍ମରାଜ୍ୟରେ କୌଣସି ସାର୍ଥକ ଲାକ୍ଷଣିକ ଅର୍ଥରେ ବ୍ୟବହୃତ । ବିଶେଷତଃ ପିଞ୍ଜରା ଗହ୍ୱରର ଭିତ୍ତିଭୂମି ପରି ରହିଥିବା ଡାଏଫ୍ରାମ୍ (diaphragm)ର ତଳକୁ ଥିବା ନାଭି, ଲିଙ୍ଗ, ଗୁହ୍ୟ ପ୍ରଭୃତି ପ୍ରଦେଶରୁ ଧ୍ୱନି କଳ୍ପନା ଆଧୁନିକ ଧ୍ୱନି-ବିଜ୍ଞାନରେ ନାହିଁ । କାରଣ ଡାଏଫ୍ରାମର କାର୍ଯ୍ୟକଳାପରେ ପ୍ରଭାବିତ ହୋଇ ଫୁସ୍‌ଫୁସ୍‌ରୁ ନିଃସୃତ ଯେଉଁ ପ୍ରଶ୍ୱାସ-ବାୟୁ ଶ୍ୱାସନଳୀ ଦେଇ ମୁଖ ଓ ନାସାରନ୍ଧ୍ର ବାଟେ ବହିର୍ଗତ ହୁଏ, ତାହା କଣ୍ଠନଳୀ (larynx), କଣ୍ଠ, ଜିହ୍ୱା, ତାଳୁ, ଦନ୍ତ, ଓଷ୍ଠ, ନାସା ପ୍ରଭୃତି ବିଭିନ୍ନ ସ୍ଥଳରେ ବାଧାପ୍ରାପ୍ତ (strapped), ବିକ୍ଷୋଭିତ (affricated),

କମ୍ପିତ (trilled), ତାଡ଼ିତ (flapped) ହୋଇ ନାନା ଧ୍ୱନିରେ ପରିଣତ ହୋଇଥାଏ । ତେଣୁ ଡାଏଫ୍ରାମ୍ ତଳକୁ ଭାଷାଗତ ଧ୍ୱନି (speech sound)ର କୌଣସି ସମ୍ଭାବନା ନାହିଁ ।

ବର୍ତ୍ତମାନ ଧ୍ୱନିର ମୂଳ ଉପାଦାନ ଫୁସଫୁସଗୃହୀତ ଏହି ନିଶ୍ୱାସ, ପ୍ରଶ୍ୱାସ ବିଷୟରେ କେତୋଟି ବୈଜ୍ଞାନିକ ସତ୍ୟ ବିଚାର କରାଯାଉ । ନିଶ୍ୱାସ ଓ ପ୍ରଶ୍ୱାସ ଉଭୟ ପ୍ରକାର ବାୟୁଦ୍ୱାରା ଭାଷା ଧ୍ୱନି (speech sound) ସୃଷ୍ଟି କରାଯାଇପାରେ । ପୃଥିବୀର ସବୁଠାରୁ ବେଶୀ ଭାଷା ପ୍ରଶ୍ୱାସବାୟୁଦ୍ୱାରା ସୃଷ୍ଟ ହୁଏ । ଆମେରିକା, ଇଂଲଣ୍ଡ, ଭାରତୀୟ ଓ ସମସ୍ତ ଇଣ୍ଡୋ-ଇଉରୋପୀୟ ଭାଷା ପ୍ରଶ୍ୱାସବାୟୁଦ୍ୱାରା କଥିତ ହୁଏ । କେତେକ ଆଫ୍ରିକାନ୍ ଭାଷା ତଥା ଅତି ଆଦିମ ଭାଷା ନିଶ୍ୱାସବାୟୁଦ୍ୱାରା ସୃଷ୍ଟ ହୁଏ । ନିଶ୍ୱାସବାୟୁଦ୍ୱାରା ଭାଷାଧ୍ୱନି ସୃଷ୍ଟି କରିବା ଆମମାନଙ୍କ ପକ୍ଷରେ କଷ୍ଟକର । କିନ୍ତୁ ଆମେମାନେ ଦୁଃଖ ପ୍ରକାଶ କଲାବେଳେ ଯେଉଁ ଚୁ ଚୁ କରୁ କିମ୍ବା ବଳଦ ଅଡ଼େଇଲା ବେଳେ ଓ ଆମ୍ବୁଲ ଚୁଚିଲାବେଳେ ଯେଉଁ ଝାଳରା ଫୁଟାଉ, ତାହା ନିଶ୍ୱାସ ବାୟୁଦ୍ୱାରା ହୁଏ । ଆଫ୍ରିକାର ଜୁଲୁ, ହୋଟେନ୍‌ଟଟ୍, ସୁଟୋ, ବୁସମାନ୍ ପ୍ରଭୃତି ବହୁ ଭାଷାରେ ଏହିପ୍ରକାର ଧ୍ୱନି ବହୁଳ ବ୍ୟବହୃତ ହୁଏ ।

କଥା କହିବାରେ 'ପ୍ରଶ୍ୱାସବାୟୁର ଉପାଦେୟତା ବୁଝିବାକୁ ହେଲେ ଆମକୁ କଣ୍ଠନଳୀ (larynx) କଥା ବିଶେଷଭାବରେ ବୁଝିବାକୁ ହେବ । ବଞ୍ଚିବାପାଇଁ ନିଶ୍ୱାସ ଯେମିତି ସବୁଠାରୁ ମୂଲ୍ୟବାନ୍, କଥା କହିବା ପ୍ରକ୍ରିୟାରେ କଣ୍ଠନଳୀ ବା ଲାରିଙ୍କ୍‌ସ ସେହିପରି ମୂଲ୍ୟବାନ୍ । ବିଶିଷ୍ଟ ଚିକିତ୍ସାବିତ୍ ନେଗସ୍‌ଙ୍କର 'The Larynx' ପୁସ୍ତକ ଦେଖିଲେ ଜାଣି-ହେବ, ମନୁଷ୍ୟ ପକ୍ଷରେ ଲାରିଙ୍କ୍‌ସର ମୂଲ୍ୟ କେତେ ବେଶି । ଲାରିଙ୍କ୍‌ସର ସୂକ୍ଷ୍ମ ପରିଚାଳନାଉପରେ ସମସ୍ତ ଭାଷାସୃଷ୍ଟି ନିର୍ଭର କରେ । ମନୁଷ୍ୟ ଓ ପଶୁ ଭିତରର ତଫାତ୍ ଏହି ଲାରିଙ୍କ୍‌ସ ପରିଚାଳନା ତଫାତ୍‌ଉପରେ ନିର୍ଭର କରେ । ଆମ କଣ୍ଠଦେଶରେ ଗଳଗଣ୍ଡ ବୋଲି ଯେଉଁ ଫୁଲା ଜିନିଷଟି ଦେଖାଯାଏ, ତାହା ଲାରିଙ୍କ୍‌ସର ବାହାର ରୂପ । ସେହି ଲେଟିଣ୍ଡିଭିତରେ

ଦୁଇଟି ଶ୍ଳୈଷ୍ମିକ ଝିଲ୍ଲୀ (membraneous flap) ଦୁଇଫାଳିଆ କବାଟ ପରି ଲାଗିଛି । ଦରକାର ହେଲେ କବାଟପରି ସେହି ଦୁଇଫାଳିଆ ଝିଲ୍ଲୀ ବା ପର୍ଦ୍ଦା ଦୁଇଟି ଖୁବ୍ ପାଖକୁ ଲାଗିଆସନ୍ତି କିମ୍ବା ଦରକାର ଅନୁସାରେ ଘୁଞ୍ଚିଯାନ୍ତି । ଅ, ଆ ପ୍ରଭୃତି ସ୍ୱରବର୍ଣ୍ଣ ଉଚ୍ଚାରଣ କଲାବେଳେ ସେମାନେ ଖୁବ୍ ପାଖକୁ ଲାଗିଆସନ୍ତି । ଫୁସ୍‌ଫୁସ-ନିର୍ଗତ ପବନର ଆଘାତରେ ଦୁଇଟିଯାକ ପର୍ଦ୍ଦାର ଧାର ଖୁବ୍ ଜୋରରେ କମ୍ପିଯାନ୍ତି । ତଦ୍ୱାରା ଶ୍ୱାସନଳୀ-ଅନ୍ତର୍ଗତ ବାୟୁମଣ୍ଡଳ କମ୍ପିତ ହୁଏ ଓ ମୁଖବିବରରେ ନାନା ସ୍ଥାନରେ ଆଘାତ ପାଇ ଭାଷାଧ୍ୱନି ସୃଷ୍ଟି ହୁଏ । କିନ୍ତୁ ଆମେମାନେ ଯେତେବେଳେ ହାଇ ମାରୁ କିମ୍ବା କ, ଚ, ଟ, ତ, ପ ପ୍ରଭୃତି ଅଘୋଷବର୍ଣ୍ଣ ଶବ୍ଦ ଉଚ୍ଚାରଣ କରୁ, ସେତେବେଳେ ମୁକୁଳା କବାଟ ପରି ଦୁଇଟିଯାକ ପର୍ଦ୍ଦା ସଂପୂର୍ଣ୍ଣ ଖୋଲିଯାନ୍ତି । କିନ୍ତୁ କାଶିଲାବେଳେ ଦୁଇଟିଯାକ କବାଟ ହଠାତ୍ ଲାଗିଯାଇ ଫଟ୍‌କରି ଫିଟିଯାନ୍ତି । କଥାବାର୍ତ୍ତାବେଳେ ଲାରିଙ୍କ୍‌ସ ପର୍ଦ୍ଦା ବା ଶ୍ଳୈଷ୍ମିକ ଝିଲ୍ଲୀରେ ଯେଉଁ କମ୍ପନ ହୁଏ, ମେସିନ୍ ସାହାଯ୍ୟରେ ତାର ଗଣନା କରାଯାଇଛି । ଧୀର କଥାବାର୍ତ୍ତା ବେଳେ ଏକ ସେକେଣ୍ଡରେ ୪୧ ଥରରୁ ଆରମ୍ଭ କରି ଚଞ୍ଚଳ କଥାରେ ୨୦୦୦ ଥର ପର୍ଯ୍ୟନ୍ତ ଏହାର କମ୍ପନ ହୁଏ । ପୁରୁଷମାନଙ୍କର ସାଧାରଣ କଥାବାର୍ତ୍ତାବେଳେ ଲାରିଙ୍କ୍‌ସ ପର୍ଦ୍ଦା ଏକ ସେକେଣ୍ଡରେ ୧୦୯ରୁ ୧୬୩ ଥର ପର୍ଯ୍ୟନ୍ତ କମ୍ପିଥାଏ । ନାରୀମାନଙ୍କର ଏହି ପର୍ଦ୍ଦା ବୋଧହୁଏ କୋମଳ ଓ ପତଳା ହୋଇଥିବାରୁ ଅଧିକ କ୍ଷିପ୍ର ଗତିରେ କମ୍ପିତ ହୁଏ । ଏକ ସେକେଣ୍ଡରେ ସେମାନଙ୍କର ପର୍ଦ୍ଦା କମ୍ପନ ୨୧୮ରୁ ୩୨୬ ଥର ଭିତରେ ହୋଇଥାଏ । ସାଧାରଣ ଆମେରିକାନ୍ ଇଂରାଜୀ କହିଲାବେଳେ ଏହି କମ୍ପନ ୮୦ରୁ ୧୫୦ ଭିତରେ ହୋଇଥାଏ । ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ୍ ଯେତେବେଳେ ୧୯୪୩ ମସୀହାରେ ଆମେରିକାରେ ବକ୍ତୃତା ଦେଉଥିଲେ, ସେତେବେଳେ ତାଙ୍କର ଲାରିଙ୍କ୍‌ସ ପର୍ଦ୍ଦା ସେକେଣ୍ଡରେ ୧୧୫ରୁ ୨୩୦ ଥର କମ୍ପିତ ହୋଇଥିବାର ବୈଜ୍ଞାନିକମାନେ ଗଣନା କରିଥିଲେ ।

ବଡ଼ ପାଟିରେ ବକ୍ତୃତା ଦେଲେ କିମ୍ବା ପାଟି କରି ବେଶୀ ସମୟ ପଢ଼ିଲେ ଆପଣ ବେଦମ ହୋଇଯାନ୍ତି । ତାର କାରଣ ହେଉଛି କଥା

କହିବାପାଇଁ ଜିଭ, ଦାନ୍ତ, ଓଠ, କଣ୍ଠତନ୍ତ୍ରୀ ପ୍ରଭୃତି ପ୍ରଶ୍ୱାସପବନର ଗତିପଥରେ ଏମିତି ବାଧା ସୃଷ୍ଟି କରନ୍ତି ଯେ, ନିଶ୍ୱାସ ପ୍ରଶ୍ୱାସର ଗତି ବିଶେଷଭାବରେ ପ୍ରତିହତ ହୁଏ । ଭିନ୍ନ ଭିନ୍ନ ଡ୍ରାମ୍ ଉପରେ ଦେଇ ଗଲାବେଳେ ନଈପାଣିର ଅବସ୍ଥା ଯାହା, କଥା କହିଲାବେଳେ ପାଟି-ଭିତରେ ପବନର ଅବସ୍ଥା ସେୟା । ସେଥିପାଇଁ ଗାୟକ ଓ ବକ୍ତାମାନେ ପବନ ସାଧନାରେ ବହୁ ସମୟ ବ୍ୟୟ କରିଥାନ୍ତି । ସମୁଦାୟ ବାଗ୍‌ଯନ୍ତ୍ରଭିତରେ ଫୁସ୍‌ଫୁସ୍‌ରୁ ମୁଖାଗ୍ର ପର୍ଯ୍ୟନ୍ତ ୪୦୦୦ଘନ ସେଣ୍ଟିମିଟର (c.c.) ପବନ ଧରେ । ଆପଣ ଗୋଟିଏ ୪ ସେରିଆ ପାତ୍ର ଅନୁମାନ କଲେ ୪୦୦୦ ଘନ ସେଣ୍ଟିମିଟରର ଧାରଣା ପାଇବେ । ଫୁସ୍‌ଫୁସ୍ କେବେହେଲେ ସମ୍ପୂର୍ଣ୍ଣ ପବନଶୂନ୍ୟ ହୋଇ ରହେ ନାହିଁ । ପଙ୍କ୍ଚର୍ ଫିଟିଗଲେ ମଧ୍ୟ ସାଇକେଲ ଟ୍ୟୁବ୍‌ରେ ଯେମିତି କିଛି ନା କିଛି ପବନ ଥାଏ, ସେମିତି ଯେତେ ଜୋରରେ ପବନ ବାହାର କରିଦେଲେ ମଧ୍ୟ ଫୁସ୍‌ଫୁସ୍‌ରେ ସାତ ଶହ ଘନ ସେଣ୍ଟିମିଟର ପବନ ଥାଏ । କିନ୍ତୁ ସାଧାରଣଭାବରେ ପ୍ରଶ୍ୱାସ ଛାଡ଼ିଲାବେଳେ ଫୁସ୍‌ଫୁସ୍‌ରେ ୨୧୦୦ ଘନ ସେଣ୍ଟିମିଟର ପବନ ଥାଏ । ଏହାକୁ ରିଜର୍ଭ ପବନ କହନ୍ତି । ଏହି ପବନ ସାହାଯ୍ୟରେ କଥାବାର୍ତ୍ତା କରାହୁଏ । ଆମେମାନେ ନିଶ୍ୱାସ ପ୍ରଶ୍ୱାସରେ ଯେତେ ପବନ ବ୍ୟବହାର କରୁ, କଥା କହିବାରେ ତାଠୁ ଟିକିଏ ବେଶୀ ବ୍ୟବହୃତ ହୁଏ । ସାଧାରଣ କଥାବାର୍ତ୍ତାରେ ଗୋଟାଏ ବାକ୍ୟ ଦୁଇ ତିନି ସେକେଣ୍ଡରୁ ବେଶୀ ସମୟ ନିଏ ନାହିଁ । କିନ୍ତୁ କଥାବାର୍ତ୍ତାବେଳେ ନିଶ୍ୱାସ ଗ୍ରହଣ କରିବା ଯେତେ ସହଜ ପ୍ରଶ୍ୱାସ ଛାଡ଼ିବା ସେତେ ସହଜ ନୁହେଁ । ଅ, ଆ, ଇ, ଈ ପ୍ରଭୃତି ସ୍ୱର ଓ ଗ, ଘ, ଡ, ଢ ପ୍ରଭୃତି ଘୋଷବତ୍ ଶବ୍ଦ ଉଚ୍ଚାରଣ କଲାବେଳେ କଣ୍ଠତନ୍ତ୍ରୀ (larynx) ର ପର୍ଦ୍ଦା ଦୁଇଟି ଏତେ ପାଖାପାଖି ହୋଇଯାନ୍ତି ଏବଂ କ, ଚ, ଟ, ତ, ପ ପ୍ରଭୃତି ଅଘୋଷବତ୍ ବ୍ୟଞ୍ଜନ ଉଚ୍ଚାରଣବେଳେ ମୁଖବିବର ଭିନ୍ନ ଭିନ୍ନ ସ୍ଥାନରେ ପବନକୁ ଏମିତି ବନ୍ଦ କରିଦିଏ ଯେ, ନିର୍ବାଧରେ ବାହାରିଯିବାପାଇଁ ପବନର ଉପାୟ ନ ଥାଏ । ଉଦାହରଣସ୍ୱରୂପ-'ପ' ପାଇଁ ଓଠରେ ଓ 'ତ' ପାଇଁ ଜିହ୍ୱା ଓ ଦାନ୍ତର ସାହାଯ୍ୟରେ ପବନକୁ ବନ୍ଦ କରିଦିଆଯାଏ । ତେଣୁ ବକ୍ତା ଶୀଘ୍ର ଶୀଘ୍ର

ବହୁତ କଥା କହିଲାବେଳେ ଶୀଘ୍ର ବେଦମ ହୋଇପଡ଼େ; କାରଣ କଥା କହିଲାବେଳେ ପବନ ଛାଡ଼ିବାକୁ ବହୁତ ସମୟ ଲାଗିଥାଏ । ପବନ ନେବା ଓ ଛାଡ଼ିବାର ସମୟ ଅନୁପାତ ୧:୭୦ ବ ହୋଇପାରେ ଅର୍ଥାତ୍ ଏକ ସେକେଣ୍ଡରେ ଯେତେ ପବନ ନିଆଯାଇପାରିବ ତାକୁ ଛାଡ଼ିବାପାଇଁ ୭୦ ସେକେଣ୍ଡ ଲାଗି-ଯାଇପାରେ (General Phonetics, p. 13) । ଉପରୋକ୍ତ ସମସ୍ତ ବିଚାରରୁ ବେଶ୍ ଜଣାଯିବ ଯେ, ଆମେ ଯେଉଁ କଥା କହୁ ତାର ମୌଳିକ ଉପାଦାନହିଁ ଆମର ଜୀବନ, ଆମର ଦେହର ପବନ । ସେଥିପାଇଁ ପୁରାତନ ସାଧୁମାନେ ଏହି ପବନ ସାଧନାପାଇଁ ଏତେ ଚେଷ୍ଟା କରିଛନ୍ତି ।

ବର୍ତ୍ତମାନ ଶ୍ୱାସନଳୀର ଉପର ଓ ମୁହଁ ଭିତରର କେତେକ ଅଙ୍ଗର ଭାଷା-ସମ୍ପର୍କ ବିଚାର କରାଯାଉ । କଣ୍ଠଦେଶରୁ ପବନ ବାହାରି-ଯିବାପାଇଁ ଦୁଇଟି ବାଟ—ଗୋଟିଏ ପାଟି ଓ ଗୋଟିଏ ନାସାରନ୍ଧ୍ର ।

ପାଟି ଆଁ କରି ଦର୍ପଣରେ ଦେଖିଲେ ଜାଣିପାରିବେ, ଆମ ପାଟି-ଭିତରେ ଖଣ୍ଡେ କଅଁଳ ମାଂସ ଦୋଳାୟମାନ ଅଛି ଏବଂ ତାର ଶେଷରେ ଘଣ୍ଟିକା ବୋଲି ଗୋଟିଏ ଛୋଟ ଗୋଟି ପରି ମାଂସଖଣ୍ଡ ଅଛି । ଏହି ଦୋଳାୟମାନ ମାଂସଖଣ୍ଡକୁ ସଫ୍ଟ ପାଲେଟ୍ (soft palate) କହନ୍ତି । ତାହା ଟେକ ହୋଇଗଲେ ନାକର ରାସ୍ତା ବନ୍ଦ ହୋଇଯାଏ ଓ ପଡ଼ିଗଲେ ନାକର ରାସ୍ତା ଖୋଲିଯାଏ । ଙ, ଞ, ଣ, ନ, ମ ପ୍ରଭୃତି ଅନୁସ୍ୱାର ଧ୍ୱନି ଉଚ୍ଚାରଣ କରିବାପାଇଁ ଏହି ନାସାରନ୍ଧ୍ର ଉନ୍ମୁକ୍ତ ରହେ । ପରୀକ୍ଷା କରି ଦେଖାଯାଇଅଛି, ଶର୍ଦ୍ଦି ସମୟରେ ଯେତେବେଳେ ନାକ ରୁନ୍ଧି ହୋଇଯାଏ, ସେତେବେଳେ ନାକର ବାଟ ବନ୍ଦ ହୋଇଯିବାରୁ ଅନୁସ୍ୱାର ଧ୍ୱନି ସ୍ପଷ୍ଟ ଶୁଣାଯାଏ ନାହିଁ । 'ଗୁଡ୍‌ମର୍ଣ୍ଣିଂ'ରୁ ସବୁ 'ନ'କାର କଟିଯାଇ ତାହା 'ଗୁଡ୍‌ବର୍ଡ଼ିଗ୍' ପରି ଶୁଣାଯାଏ ।

ତାପରେ ଜିହ୍ୱା କଥା ବିଚାର କଲେ ଦେଖାଯିବ, ଭାଷାରାଜ୍ୟରେ ଜିହ୍ୱାର ଆଧିପତ୍ୟ ଖୁବ୍ ବେଶୀ । ଜିହ୍ୱାର ଅଗରୁ ମୂଳପର୍ଯ୍ୟନ୍ତ କାହିଁ ଟିକିଏ ହଲିଗଲେ କୌଣସି ନା କୌଣସି ଗୋଟିଏ ଶବ୍ଦ ବାହାରିଯାଏ । ପୃଥିବୀର

ସବୁ ଜାତିର ଲୋକେ ଜିଭକୁ ସମାନଭାବରେ ବ୍ୟବହାର କରିପାରନ୍ତି ନାହିଁ । ଭାଷାରାଜ୍ୟର ବୈଚିତ୍ର୍ୟ ହେଉଛି ଜଣକପାଇଁ ଯାହା ଅତି ସହଜ ମନେ ହୁଏ, ଅନ୍ୟପାଇଁ ତାହା ସାରା ଜୀବନର ସାଧନା । 'ର' ଉଚ୍ଚାରଣ କରିବାପାଇଁ ଆମେ ଜିଭ ଅଗକୁ ଯେମିତି ର୍ ର୍ ର କରି ଥରାଇ-ପାରୁ, ଇଂଲଣ୍ଡର ଦକ୍ଷିଣ ଅଞ୍ଚଳର ଲୋକେ ତା କରିପାରନ୍ତି ନାହିଁ । ଫରାସୀ ଲୋକେ ଯେମିତି ଘଣ୍ଟିକା ନଗ୍ରଇ 'ପାରିସ' ଶବ୍ଦର 'ର'କୁ ଉଚ୍ଚାରଣ କରନ୍ତି ତାହା ଇଂରାଜୀ ଓ ଭାରତୀୟ ଉଭୟଙ୍କ ପାଇଁ ଜୀବନ-ବ୍ୟାପୀ ସାଧନାର କଥା । ଓଡ଼ିଆମାନେ ଯେମିତି ସହଜରେ ତାଡ଼ିତ (flapped) 'ଡ' ଉଚ୍ଚାରଣ କରିପାରନ୍ତି, ସାହେବମାନେ ତାହା ପାରନ୍ତି ନାହିଁ । ସୂକ୍ଷ୍ମ ପରୀକ୍ଷା କରି ଦେଖିଲେ ଇଂରାଜୀରେ ଟିନ୍ ଶବ୍ଦର ଟ ଓ ଓଡ଼ିଆ 'ଟିଣ' ଶବ୍ଦର 'ଟ' ଆଦୌ ଏକା ନୁହନ୍ତି । ଏସବୁ ଜିଭର କାରସାଦି ବୋଲି ମନେ ରଖିବାକୁ ହେବ ।

ଭାଷାରାଜ୍ୟରେ ଅନ୍ୟ ଏକ ଉପକରଣ ଦାନ୍ତ । ଦାନ୍ତ ଥିବା ଓ ନ ଥିବା ଲୋକର ଭାଷାଭିତରେ ପାର୍ଥକ୍ୟ ଥିବାର କୌଣସି ବୈଜ୍ଞାନିକ ବିଶ୍ଳେଷଣ ମୋତେ ଜଣା ନାହିଁ । ମାତ୍ର ଯେଉଁ ଲୋକର ଦାନ୍ତ ଟିକିଏ ବେଶୀ ଉପରକୁ ଉଠି ଯାଇଥାଏ, ତାର 'ସ' ଉଚ୍ଚାରଣ ଅନ୍ୟଠାରୁ କେତେକାଂଶରେ ତଫାତ୍ ବୋଲି ପରୀକ୍ଷା କରାଯାଇଛି ।

ବାଗ୍‌ଯନ୍ତ୍ରରେ ଯେତେ ବିଭାଗ ଅଛି ସବୁଠାରୁ ସୁବିଧା ଓ ସହଜରେ ବ୍ୟବହୃତ ହୁଏ ଓଷ୍ଠ । ସ୍ତନ୍ୟଶୋଷଣପାଇଁ ଶିଶୁ ପ୍ରଥମେ ଓଷ୍ଠ ସଞ୍ଚାଳନ କରେ । କେତେକ ଭାଷାତତ୍ତ୍ୱବିତ୍‌ଙ୍କ ମତରେ ପାପା, ବାପା, ପା, ମା, ମାମା, ଏହି ଶବ୍ଦଗୁଡ଼ିକ ପୃଥିବୀର ସବୁ ଦେଶର ଶିଶୁ ପ୍ରଥମେ ସହଜରେ ଉଚ୍ଚାରଣ କରିଥାନ୍ତି; କାରଣ ଏଗୁଡ଼ିକ ଓଷ୍ଠ ସାହାଯ୍ୟରେ ଉଚ୍ଚାରିତ ହୋଇଥାଏ । କିନ୍ତୁ ମନେ ରଖିବେ, ପିଲାଙ୍କ ପକ୍ଷରେ ପା, ପାପା କହିବା ଯେତେ ସହଜ ବା, ବାବା କହିବା ସେତେ ସହଜ ନୁହେଁ । କାରଣ ପା, ପାପା ପାଇଁ କେବଳ ଓଷ୍ଠ ଓ ସଫ୍ଟ ପାଲେଟର କାରସାଦି ଦରକାର । ମାତ୍ର

ବା, ବାବା କହିବାପାଇଁ କଣ୍ଠତନ୍ତ୍ରୀସ୍ଥ ପର୍ଦ୍ଦାକମ୍ପନ ଦରକାର। କେତେକ ଶିଶୁଙ୍କ ପକ୍ଷରେ ତାହା ବୋଧହୁଏ ସହଜ ନୁହେଁ ।

ଶରୀର ସହିତ ଧ୍ୱନିର ଯେ ସମ୍ପର୍କ ତା କେବଳ ସ୍ଥୂଳରେ ଦର୍ଶାଇ ଦିଆଯାଇଛି। ଯେକୌଣସି ଭାଷାରେ ଏହି ବିଭିନ୍ନ ଅଙ୍ଗମାନଙ୍କର ଏକ ବିଧିନିର୍ଦ୍ଦିଷ୍ଟ ସମ୍ମିଳିତ ସମ୍ପର୍କ ( co-ordinated relationship ) ଅଛି। କୌଣସି ଏକ ନିର୍ଦ୍ଦିଷ୍ଟ ଭାଷାରେ ଦଶ ପନ୍ଦର ବର୍ଷ କହିଲା ପରେ ଜିହ୍ୱା ପ୍ରଭୃତିର ମାଂସପେଶୀ ଓ ଏହି ମାଂସପେଶୀମାନଙ୍କର ସ୍ମରଣଶକ୍ତି ଏମିତି ସ୍ଥିର ହୋଇଯାଏ ଯେ, ସେସବୁ ଭୁଲିଯାଇ ପୁଣି ନୂତନ ଭାଷାର ଗ୍ରହଣ କେବେ କଠିନ ହୋଇପଡ଼େ । ମାତ୍ର ଏକ ଭାଷାରୁ ଅନ୍ୟ ଭାଷାକୁ ଯିବାପାଇଁ ମାର୍ଗ ଯେତେ ସରଳ ଓ ସୁଗମ କରାଯାଇପାରେ, ଧ୍ୱନିବିଜ୍ଞାନବିତ୍‌ମାନେ ତହିଁରେ ଲାଗିପଡ଼ିଛନ୍ତି। ଯେଉଁ ଦେଶରେ ଶବ୍ଦକୁ ବ୍ରହ୍ମ କୁହାଯାଏ, ଧ୍ୱନିରୁ ସୃଷ୍ଟି, ସ୍ଥିତି, ପ୍ରଳୟର କଳ୍ପନା କରାଯାଏ, ସେହି ପାଣିନି ପାତଞ୍ଜଳି ଦେଶରେ ଆଧୁନିକ ଧ୍ୱନିତତ୍ତ୍ୱର ବିଷୟ ବହୁତ ପଛରେ ପଡ଼ିରହିଛି—ଏହି ମାତ୍ର କ୍ଷୋଭର କଥା ।

(ସମ୍ବଲପୁରସ୍ଥ ଜ୍ଞାନବିଜ୍ଞାନ ସମିତିର ୬ଷ୍ଠ ଅଧିବେଶନରେ ପଠିତ)

---

# କହିବା କଥାର ବ୍ୟଥା

କଥା ଅଛି 'କାନ ଦେବ କିନ୍ତୁ ଜିଭ ଦେବ ନାହିଁ ।' ସାଦା କଥାରେ କହିବାକୁ ଗଲେ ଅନ୍ୟଠାରୁ ସବୁ କଥା ଶୁଣିବ କିନ୍ତୁ ସହଜରେ କିଛୁ କହିବ ନାହିଁ । କଥା (speech) ହେଉଛି ପବନ, କିନ୍ତୁ ଥରେ ପାଟିରୁ ଖସିଲେ ସେ ବାତ୍ୟା ସୃଷ୍ଟି କରିବ । ମଣିଷ ଆଜି ଯେତେ ଗଣ୍ଡଗୋଳରେ ପଡ଼ୁଛି, ସବୁ ବୋଧହୁଏ ତାର କଥା କହିବାର ଶକ୍ତିରୁ ଜାତ । ମଣିଷକୁ ଦେବତା ଯାହା ଆଶୀର୍ବାଦ ବୋଲି ଦେଇଥିଲେ, ତାହା ଅନେକ ସମୟରେ ଅଭିଶାପ ପରି ମନେ ହୁଏ । ମଧୁର କଥା ମଣିଷକୁ ଯେତେ ଉଲ୍ଲସିତ କରେ, କଟୁ କଥା ସେତିକି ଅବସନ୍ନ କରେ । ମଣିଷ ଯୁଗ ଯୁଗ ଧରି କଥା କହୁଥିଲା, ଅଥଚ ଏଇ ଅଳ୍ପ ହଜାରେ ଦୁଇ ହଜାର ବର୍ଷ ହେଲି ସେ 'କଥା' ବିଷୟରେ ବିଚାର ଆରମ୍ଭ କରିଛି । ଆଦିମ ମନୁଷ୍ୟ ସବୁ କଥାକୁ ସ୍ୱତଃସିଦ୍ଧ ବୋଲି ଧରିନିଏ; ମାତ୍ର ସଭ୍ୟ ମଣିଷ ପ୍ରତି ପଦକ୍ଷେପରେ ପ୍ରଶ୍ନ ପଚାରେ କାହିଁକି ସ୍ତ୍ରୀ ବା ତା ହୋଇଛି ।

ସଭ୍ୟତା ଯେତିକି ଆଗେଇଯାଉଛି, ଜୀବନ ଏକ ଦୃଷ୍ଟିରୁ ସେତିକି ଜଟିଳ ହୋଇପଡ଼ୁଛି । ପୃଥିବୀ ଶ୍ରେଷ୍ଠ ହେବା ସଙ୍ଗେ ସଙ୍ଗେ ଭାଷାର ଜଟିଳତା ବଢ଼ିଚାଲିଛି । ଭାଷା କଥା ଆଜି ବିଚାର କଲେ କବିଙ୍କର "ତମେ କାହିଁ ଥିଲ ମୁଁ କାହିଁ ଥିଲି ନ ଥିଲା ଚହ୍ନା" କଥାଟା ଭାରି ମନରେ ଉଦୟ ହୁଏ । ଦିନ ଥିଲା ନଇ ସେପାରିର ଲୋକଙ୍କ କଥା ବି କାନରେ ବାଜୁ ନ ଥିଲା, ଏବେ ଗଛରୁ ଫୁଲ ତୋଳିଲା ପରି ମଣିଷ ପବନରୁ ତୋଳି-ଆଣୁଛି ସଂସାରଯାକର କଥା । କାହିଁ ରୁଷିଆ, କାହିଁ ଆମେରିକା, କାହିଁ ଚର୍ଚ୍ଚିଲ୍, କାହିଁ ମ୍ୟାଲେନ୍କୋଭ୍ । ଇଚ୍ଛା କଲାମାତ୍ରେ ସେମାନେ କାନ ପାଖରେ କଥା କହୁଛନ୍ତି, ଠିକ୍ ସତେ ଯେମିତ ଏକା ଟେବୁଲଉପରେ ।

ମଣିଷ ପରସ୍ପରର ପାଖାପାଖି ହେବା ଫଳରେ ଅନେକ ସମସ୍ୟା ଉପୁଜିଲା । ମନୁଷ୍ୟ ସଂସ୍କୃତିରେ ଖାଦ୍ୟପାନୀୟ ଲୁଗାପଟାକୁ ଯେମିତି ବିଗୃହ କରାଯାଏ, ଭାଷାକୁ ଏବେ ସେହିପରି ବିଗ୍ରହ କରାଯାଉଛି । ସବୁ କଥାରେ ଯେମିତି ଭଲ-ମନ୍ଦ, ଠିକ୍-ଭୁଲ୍ ଅଛି, ଭାଷାରେ ମଧ୍ୟ ସେହିପରି ଅଛି । ଆମେ ବରାବର ଶୁଣିଆସୁଛେ ଓଡ଼ିଆ ଭାଷାରେ ଆଗ କର୍ତ୍ତା, ପରେ କ୍ରିୟା ବସେ । ଉଦାହରଣସ୍ୱରୂପ 'ସେ ଯାଉଛି'; ମାତ୍ର କଥା କହିଲାବେଳେ କହୁଛୁ 'ଏଇ ତ ଯାଉଛି ସେ' । ଏସବୁ ଦେଖି ବ୍ୟାକରଣକାର କହନ୍ତି ଭାଷା ମାଟି ହୋଇଯାଉଛି । ଆଜିକାଲି ଲୋକେ ଆଗ କ୍ରିୟା, ପଛେ କର୍ତ୍ତା ଲେଖି ବାକ୍ୟ ଲେଖୁଛନ୍ତି । ଗଳ୍ପ ସ୍ୱଳ୍ପରେ ଯେଉଁ ଶୈଳୀ ଜାଗି-ଉଠିଛି, ସେଥିରେ ଲୋକେ କଥା କହିଲା ପରି ଲେଖିବାକୁ ଚେଷ୍ଟା କରୁଛନ୍ତି । ଆଜିକୁ ପଚିଶ ବର୍ଷ ତଳେ "ଯାଉଛି ସେ" ବୋଧହୁଏ ସମ୍ଭବ ହୋଇ ନ ଥାନ୍ତା; ମାତ୍ର ଆଜି ଆମକୁ ଟିକିଏ ବେଖାପ ଲାଗିଲେ ବି ଗଳ୍ପସାହିତ୍ୟରେ ସେମିତି ଲେଖିଲେ ଚାଲିଯାଉଛି । ସଂସ୍କୃତରେ ଯାହା 'ଗ୍ରାମଂ ଗଚ୍ଛତି' ସାଧାରଣ ଓଡ଼ିଆରେ ତାହା 'ଗାଁକୁ ଯାଉଛି' । ଅତ୍ୟାଧୁନିକ ଓଡ଼ିଆରେ "ଗାଁ ଯାଉଛି" ବି ଚାଲୁଛି । ନୂତନପନ୍ଥୀମାନେ ଯାହାକୁ ଅଗ୍ରଗତି କହୁଛନ୍ତି, ପ୍ରାଚୀନପନ୍ଥୀମାନେ ତାକୁ ବ୍ୟଭିଚାର ବୋଲି ମନେ କରୁଛନ୍ତି । ପୋଷାକରେ ମଣିଷର ଯେମିତି ରୁଚି, ଭାଷାରେ ମଣିଷର ଠିକ୍ ସେଇପ୍ରକାର ରୁଚି । ପୁରୁଣାକାଳିଆ ବୁଢ଼ାଙ୍କୁ ନୂଆ ଫେସନର ପୋଷାକ ଯେମିତି ଅସଜ, ନୂଆ ଲୋକଙ୍କୁ ପୁରୁଣା ପୋଷାକ ସେମିତି ଅସହ୍ୟ । ସ୍ୱାକୁଇ ନେଇ ଭାଷାରାଜ୍ୟରେ ଗଣ୍ଡଗୋଳ ।

ଅନେକ ଦିନ ଧରି ମନୁଷ୍ୟ ଲିଖିତ ଭାଷାର ଦାସତ୍ୱ କରି-ଆସିଛି । ଏ ଦାସତ୍ୱ ଏତେ କଠିନ ଯେ ଆଧୁନିକ ଯୁଗର ସମସ୍ତ ବୈଜ୍ଞାନିକ ବିଶ୍ଳେଷଣ ପରେ ବି ମନୁଷ୍ୟ ତା ଉପରକୁ ଉଠିପାରୁ ନାହିଁ । ଓଡ଼ିଆ ଭାଷାରେ ସ୍ତ୍ରୀର ମାଆକୁ ଆମେ ଯାହା ଡାକୁ ତା ହୁଅନ୍ତା 'ସାସୁ'; ମାତ୍ର ଆମେ ଲେଖୁ 'ଶାଶୁ' । ବଙ୍ଗଳାର ଲୋକେ ଲେଖନ୍ତି ସକ୍ଷମ, କ୍ଷଣ; ମାତ୍ର କହନ୍ତି

'ସଖେମ୍' ଆଉ 'ଖେନ୍' । ଲେଖନ୍ତି ବସ୍ତୁସ୍ୱ, ବୃତ, କୃତ, କୃଷ୍ଣ; ମାତ୍ର କହନ୍ତି ବସତ୍ୱ, ବ୍ରିତ, କ୍ରିତ, କ୍ରିଷ୍ଣ । ହିନ୍ଦୀ ଲୋକେ ଲେଖନ୍ତି ସକ୍ଷମ, ରକ୍ଷା; କିନ୍ତୁ କହନ୍ତି ସକ୍‌ଷ୍‌ମ ବା ସଚ୍ଛମ (dialectal), ରକ୍‌ଷା ବା ରଚ୍ଛ୍ୟା । ଇଂରାଜୀ, ଫରାସୀ କଥା ଛାଡ଼ନ୍ତୁ । ସେମାନେ ଲେଖନ ପ୍ରଣାଳୀରେ କୌଣସି ନିୟମଶୃଙ୍ଖଳର ଧାର ଧାରନ୍ତି ନାହିଁ । ଏହିସବୁ କାରଣରୁ ଆମେମାନେ ଯେତେବେଳେ ବଙ୍ଗଳା ବା ହିନ୍ଦୀ ପଢ଼ୁ, ସେତେବେଳେ ଆମେମାନେ ବଙ୍ଗଭାଷୀ ଓ ହିନ୍ଦୀଭାଷୀଙ୍କଠାରୁ ପୃଥକ୍ ଉଚ୍ଚାରଣ କରିଥାଉ ।

ଆଗେ ଦୂରତା ଯୋଗୁ କେହି କାହା କଥା ଜାଣିବା ସହଜ ହେଉ ନ ଥିଲା; ମାତ୍ର ଏ ଯୁଗରେ ଛାପାଖାନାର ଶକ୍ତି ଯଥେଷ୍ଟ ଥିଲେ ମଧ୍ୟ କଥା-ପ୍ରେସ (ରେଡ଼ିଓ)ର ଶକ୍ତି ଓ କାର୍ଯ୍ୟକାରିତା ଏତେ ବଢ଼ିଯାଇଛି ଯେ, ମନୁଷ୍ୟ ପ୍ରତି ମୁହୂର୍ତ୍ତରେ ଏକ ଭାଷାତାତ୍ତ୍ୱିକ ବ୍ୟାପାର ସମ୍ମୁଖୀନ ହେଉଛି । ବଙ୍ଗଳା କହ, ହିନ୍ଦୀ କହ, ଇଂରାଜୀ କହ, ବହି ଧରି ପଢ଼ିଲାବେଳେ ଆଖି ଆଗରେ ଯେଉଁ ଅକ୍ଷରଦୃଶ୍ୟ ଭାସିଉଠୁଛି, ତାକୁ ମନେ ରଖି ରେଡ଼ିଓ ପାଖରେ କାନ ଦେଲାବେଳକୁ ବିସ୍ମୟ ସୃଷ୍ଟି ହେଉଛି । ଜୀବନରେ କୌଣସି ରୋମାଞ୍ଚକର ଅନୁଭୂତିର ଆବଶ୍ୟକତା ଥିଲେ ନିଜ କଥାର ଏକ ରେକର୍ଡ଼ କରି ଶୁଣନ୍ତୁ, ନଚେତ୍ ସବୁଠାରୁ ବେଶୀ ମଜା କରିବାପାଇଁ କୌଣସି ବିଦେଶୀକୁ ଶୁଣାନ୍ତୁ । ଆପଣ ଏହି ସାମାନ୍ୟ ଘଟଣାରେ ଯେତେ ଆଶ୍ଚର୍ଯ୍ୟାନ୍ୱିତ ହେବେ, ଜୀବନରେ ଅନ୍ୟ କେଉଁଠି ହୋଇଥିବେ କି ନା ସନ୍ଦେହ । ଦେଖିବେ, ଆପଣ ଯାହା କହୁଛନ୍ତି ତା ନେମିତି ଆପଣଙ୍କ କଥାଠାରୁ ଅନେକ ଭିନ୍ନ । ହୁଏତ ସମୟସମୟରେ ଆପଣ ବି ସ୍ୱୀକାର କରିବେ ନାହିଁ ଯେ, ଆପଣ ପ୍ରକୃତରେ ସେଇ କଥା କହୁଛନ୍ତି ।

ଆମ ଦେଶରେ ରେଡ଼ିଓ ଅନୁଷ୍ଠାନମାନ ଏବେ ଖୋଲୁଛି । ସେଥିପାଇଁ ଭାଷା ଗଣ୍ଡଗୋଳର ଅବସର ବେଶୀ ମିଳି ନାହିଁ । ଆପଣ ଯଦି B.B.C.ର

ଇତିହାସ ଦେଖିବେ ତାଜୁବ୍ ହେବେ । ସାମାନ୍ୟ ଗୋଟିଏ ଶବ୍ଦର ଉଚ୍ଚାରଣଉପରେ କେତେ ବୁଦ୍ଧି, କେତେ ସମୟ ନଷ୍ଟ କରାଯାଇଛି । B. B. C. ର ଭାଷା ନିୟନ୍ତ୍ରଣ କରିବାପାଇଁ ଇଂଲଣ୍ଡର ବଡ଼ ବଡ଼ କବି ଓ ଭାଷାବିତ୍‌ଙ୍କୁ ନେଇ ବୋର୍ଡ଼ ଗଢ଼ା ହୋଇଥାଏ । କବି ରବର୍ଟ୍‌ବ୍ରିଜ୍, ଲେଖକ ବାର୍ନାର୍ଡ଼ଶ ଓ ଧ୍ୱନିବିତ୍ ଡାନିଅଲ୍ ଜୋନ୍ ପ୍ରଭୃତି ପ୍ରବୀଣ ଲୋକମାନେ ଏହି ବୋର୍ଡ଼ରେ ଥାନ୍ତି । ଲଣ୍ଡନରେ ଗୋଟିଏ ଷ୍ଟ୍ରୀଟ୍ ଅଛି, ତାର ନାଁ ହେଉଛି Conduit Street । ସେଇଟା କଣ୍ଡ୍ୟୁଟ୍ ହେବ ନା କଣ୍ଡିଟ୍ ହେବ, ଏଥିପାଇଁ ଦେଶସାରା ଚହଳ ପଡ଼ିଥିଲା । ଶେଷରେ କେହି ଜଣେ କହିଥିଲେ, ଏତେ ଗୋଳମାଳ କରିବା ଅପେକ୍ଷା ଭାରତୀୟ-ମାନଙ୍କର ଯେଉଁ Pandit ଶବ୍ଦ ଅଛି କଣ୍ଡିଟ୍‌କୁ ପଣ୍ଡିଟ୍ ବୋଲି କହିଦେଲେ କାମ ଛିଣ୍ଡନ୍ତା । ସେ ଯାହା ହେଉ, ଭାଷାପାଇଁ ଆଜି ଦୁନିଆରେ ଗଣ୍ଡଗୋଳ ଯେ ଅନେକ, ଭାରତବର୍ଷରେ ସେଟା କାହାକୁ ବୁଝାଇବାର ଆବଶ୍ୟକତା ନାହିଁ, ଯେଉଁଠି ଶହ ଶହ ଭାଷା ଓ ହଜାର ହଜାର ଉପଭାଷା ବ୍ୟବହୃତ ହୁଏ ।

ଅବଶ୍ୟ ଇଂରାଜୀ ଭାଷାର ସମସ୍ୟା ସ୍ୱତନ୍ତ୍ର । କାରଣ ଏହା ପୃଥିବୀର ଏକମାତ୍ର ଭାଷା, ଯାହାର ସୀମାଉପରେ ସୂର୍ଯ୍ୟ କେବେ ଅସ୍ତ ହୁଏ ନାହିଁ । ଆର୍କେଣ୍ଟାଇନାଠାରୁ ଅଷ୍ଟ୍ରେଲିଆ ପର୍ଯ୍ୟନ୍ତ ସମସ୍ତେ ଏହି ଭାଷା କହୁଛନ୍ତି । ଦେଶ ଓ କାଳର ବିସ୍ତୃତିର ବ୍ୟବଧାନ ହେତୁ ଭାଷାର ବ୍ୟବଧାନ ଏତେ ବେଶୀ ବଢ଼ିଯାଇଛି ଯେ, ଆମେରିକାନ୍ ଇଂରାଜୀ ଓ ଇଂରାଜଙ୍କ ଇଂରାଜୀ (ବିଲାତି ଇଂରାଜୀ) ଦୁଇଟି ସ୍ୱତନ୍ତ୍ର ଭାଷାରେ ପରିଣତ ହୋଇଛି ।

ମନୁଷ୍ୟର ସାମାଜିକ ଜୀବନରେ ଭାଷା ବହୁ ବ୍ୟବଧାନ ସୃଷ୍ଟି କରୁଛି । ନିଜ ଭାଷାପ୍ରତି ମନୁଷ୍ୟର ଏପରି ଆତ୍ୟନ୍ତିକ ମମତା ଯେ, ଅନ୍ୟ ଭାଷାପ୍ରତି ସଦୟ ଓ ନ୍ୟାଯ୍ୟ ବ୍ୟବହାର କରିବା ସମ୍ଭବ ହୁଏ ନାହିଁ । ଇଂରାଜୀ ଲୋକେ ଚୀନ ଭାଷା ଶୁଣି ଯେମିତି ନାକ ଟେକନ୍ତି, ଢେଙ୍କାନାଳ

ଲୋକେ ହିନ୍ଦୋଲ ଭାଷା ଶୁଣି ସେହିପରି ମନେ ମନେ ହସନ୍ତି । ବ୍ୟକ୍ତି ବ୍ୟକ୍ତିମଧ୍ୟରେ ଭାଷା ଅସଲ ବନ୍ଧନ । ଆଧୁନିକ ମନୁଷ୍ୟର ମାତୃଭାଷା-ଚେତନା ଏତେ ପ୍ରବଳ ଯେ, ସେ ଚେତନାର ଅନୁସରଣରେ ରାଷ୍ଟ୍ର ବିଖଣ୍ଡିତ ହେଉଛି ।

ଏହିପ୍ରକାର ଭାଷାଗତ ବିଦ୍ୱେଷ ଅଧିକ ଅନୁସନ୍ଧାନପାଇଁ ଭାଷାବିତ୍-ମାନଙ୍କୁ ପ୍ରେରଣା ଯୋଗାଇଛି । ସମସ୍ତବିଦ୍ୱେଷକୁ ବିନାଶ କରିବାପାଇଁ ଭାଷାବିତ୍‌ମାନେ କେତେକ ଆଧୁନିକ ମୌଳିକ ଧାରଣାଉପରେ ଆସ୍ଥା ସ୍ଥାପନ କରିବା ନିମନ୍ତେ ପାଠକମାନଙ୍କୁ ଆହ୍ୱାନ କରୁଛନ୍ତି । ଭାଷା କହିଲେ ମୁଖନିଃସୃତ ଭାଷା (phonetic language) ବୋଲି ବୁଝିବାକୁ ହେବ । ବୈଜ୍ଞାନିକ ଅର୍ଥରେ ଲିଖିତ ଭାଷା (written language) ବୋଲି କୌଣସି ଜିନିଷ ନାହିଁ । ପୁସ୍ତକଲିଖିତ ଅକ୍ଷର ପଙ୍‌କ୍ତିକୁ ଲିଖିତ ରେକର୍ଡ଼ (written record) କୁହାଯିବା ସମୀଚୀନ । ଯାହା ଭାଷା ତାହା ସର୍ବଦା ମୁଖନିଃସୃତ । ଯାହା ଲିଖିତ ତାହା ରେକର୍ଡ଼ ମାତ୍ର । ଆଜିପର୍ଯ୍ୟନ୍ତ ସାଧାରଣ ମନରେ ଭାଷାର ଏହି ଦୁଇ ବିଭାଗ ସ୍ପଷ୍ଟୀକୃତ ହୋଇ ନାହିଁ ବୋଲି ଭଲଭାଷା ମନ୍ଦଭାଷା, ସଭ୍ୟଭାଷା ଅସଭ୍ୟଭାଷା ଏହିପରି ନାନାପ୍ରକାର ଭ୍ରାନ୍ତ ଧାରଣା ମଣିଷକୁ ଉଦ୍‌ଭ୍ରାନ୍ତ କରିଛି । ଭଲମନ୍ଦର ବିଚାର କେବଳ ସାହିତ୍ୟ ଦୃଷ୍ଟିରୁ କରାଯିବା ଉଚିତ ବୋଲି ଆଧୁନିକ ଭାଷାବିତ୍‌ମାନଙ୍କର ମତ ।

ଆଧୁନିକ ଭାଷାବିଜ୍ଞାନ ବିଚାରରେ କଥିତ ଭାଷାକୁ ମୌଳିକରୂପେ ଗ୍ରହଣ କରି ଆଲୋଚନା କରାଯାଉଛି । ଏହି ଆଲୋଚନାଦ୍ୱାରା ବହୁ ବିବାଦର ଅବସାନ ହେବା କଥା । ଉଦାହରଣସ୍ୱରୂପ ଗୋଟିଏ ଓଡ଼ିଆ ଶବ୍ଦ ଓ ଗୋଟିଏ ଇଂରେଜୀ ବାକ୍ୟ ନିଆଯାଉ । ଓଡ଼ିଆରେ ସକ୍ଷମ ଶବ୍ଦ ସଂସ୍କୃତ ବ୍ୟାକରଣାନୁଯାୟୀ ଭୁଲ୍ । ମାତ୍ର ଅଧିକାଂଶ ଓଡ଼ିଆ ଆଜି ସକ୍ଷମ ଶବ୍ଦ ବ୍ୟବହାର କରନ୍ତି । ଇଂରେଜୀ ବ୍ୟାକରଣ ଅନୁସାରେ It is me

ଭୁଲ୍ । ଏହା It is I ହେବା ଉଚିତ । କାରଣ It is me ଫରାସୀ C'est moi ଅନୁସରଣରେ ହୋଇଛି । ମାତ୍ର ସମସ୍ତ ଇଂରାଜୀ ଜାତି It is me ବୋଲି କହିଥାନ୍ତି । ମଣିଷ ଯାହା କହେ ତା ଭାଷା, ଏବଂ ଯାହା କହିବାଦ୍ୱାରା ତାର କାମ ହାସଲ ହୁଏ ତାହା କାର୍ଯ୍ୟକାରୀ ଭାଷା । ଆଗେ ଯାହା କାର୍ଯ୍ୟକାରୀ ବୋଲି ବିବେଚିତ ହେଉଥିଲା, ଲୋକେ ତାକୁ ଠିକ୍ ବୋଲି କହୁଥିଲେ । କାରଣ ବହୁ ଲୋକ ତାକୁ ବ୍ୟବହାର କରୁଥିଲେ । ଆଜି ସେହିପରି ଯାହା ବହୁ ଲୋକଙ୍କଦ୍ୱାରା କାର୍ଯ୍ୟସାଧନା-ପାଇଁ ନିରାପଦରେ ବ୍ୟବହୃତ ହେଉଛି ତାହାକୁ ଭୁଲ୍ ବୋଲି କହିବାର କୌଣସି କାରଣ ନାହିଁ ବୋଲି ଭାଷାବିତ୍‌ମାନଙ୍କର ମତ । କାରଣ ମଣିଷର କହିବା ଭାଷା ଆଗ, ବ୍ୟାକରଣ ପଛ । ମଣିଷ ଯାହା କହେ ବ୍ୟାକରଣ ତାକୁ ବୈଜ୍ଞାନିକ ରୀତିରେ ବର୍ଣ୍ଣନା କରେ । ମାତ୍ର ବ୍ୟାକରଣରେ ଯେଉଁ ନିୟମ ଥାଏ ତାକୁ ଅନୁସରଣ କରି ଭାଷାସୃଷ୍ଟି ହୁଏ ନାହିଁ । ଭାଷା ଏକ ଜୀବନ୍ତ ବସ୍ତୁ । ଜୀବ ଥିବା ଲୋକ ବଢ଼ିଗଲେ ପୋଷାକଟା ତାକୁ ମାନିଲା ଭଳି ଗଢ଼ା ହେବ । ମାତ୍ର ପୋଷାକକୁ ଠିକ୍ ହେବ ବୋଲି ମଣିଷ କେଉଁଠି ଗଢ଼ା ହୁଅନ୍ତି ନାହିଁ ।

ଆହୁରି ଅନେକେ ପ୍ରଶ୍ନ କରନ୍ତି କେଉଁ ଭାଷା ଭଲ ? ସମ୍ବଲପୁରୀ ନା କଟକୀ ? ଗୃଇଜିନ୍ ନା ଇଂରାଜୀ ? ଆଧୁନିକ ଭାଷାତତ୍ତ୍ୱରେ ଏପ୍ରକାର ପ୍ରଶ୍ନର ଆଲୋଚନା କରାଯାଏ ନାହିଁ । ଏକ ଦୃଷ୍ଟିରୁ ସମସ୍ତେ ଭଲ ଭାଷା, ଯେପର୍ଯ୍ୟନ୍ତ ଭାଷା ହିସାବରେ ବିଚାର କରାଯାଉଛି । କୌଣସି ଭାଷାର ଉନ୍ନତ ସାହିତ୍ୟ ଥାଇପାରେ, ଆଉ କେଉଁ ଭାଷାର ଉନ୍ନତ ସାହିତ୍ୟ ନ ଥାଇପାରେ । ମାତ୍ର ସାହିତ୍ୟ ଦୃଷ୍ଟିକୋଣରୁ ଆଧୁନିକ ଭାଷାତତ୍ତ୍ୱରେ ଭାଷାର ଉତ୍କର୍ଷ ଅପକର୍ଷ ବିଚାର କରାଯାଏ ନାହିଁ । କାରଣ ଭାଷା ଓ ସାହିତ୍ୟ ବିଜ୍ଞାନ ଦୃଷ୍ଟିରୁ ଦୁଇ ସ୍ୱତନ୍ତ୍ର ବସ୍ତୁ । ସାହିତ୍ୟ ଦୃଷ୍ଟିରୁ କୌଣସି ଭାଷାକୁ ନୀଚ-ଉଚ୍ଚ, ସଭ୍ୟ-ଅସଭ୍ୟ ଆଖ୍ୟାରେ ଆଖ୍ୟାୟିତ କରିବା

ଅବୈଜ୍ଞାନିକ । ଭାଷାବିତ୍‌ମାନେ ଦେଖିଛନ୍ତି ପ୍ରାଚୀନ ଆମେରିକାନ, ଇଣ୍ଡିଆନ୍ ଓ କୋରିଆନ୍ ଭାଷାମାନଙ୍କରେ ଏମିତି ଉପାଦାନ ଅଛି ଯାହା ତଥାକଥିତ ସଭ୍ୟ ଭାଷାମାନଙ୍କରେ ନାହିଁ । ତେଣୁ କହିବା କଥାରେ ଯେତେପ୍ରକାର ବ୍ୟଥା ଅଛି ସେସବୁର ସମାଧାନପାଇଁ ଭାଷାତତ୍ତ୍ୱର ସମ୍ପୂର୍ଣ୍ଣ ନୂତନ ଦୃଷ୍ଟିକୋଣ ଆବଶ୍ୟକ ଓ ସେହି ଦୃଷ୍ଟିରୁ ପୁରାତନ ଭାଷାତତ୍ତ୍ୱ ସମ୍ପୂର୍ଣ୍ଣ ସଂସ୍କୃତ ହେବା ଆବଶ୍ୟକ ।

---

# ଆପଣ କେତୋଟି ଭାଷା ଜାଣନ୍ତି ?

ଭାଷାତତ୍ତ୍ୱ ଅନୁଷ୍ଠାନମାନଙ୍କରେ ସାଧାରଣତଃ ଏକାଧିକ ଭାଷା ପଢ଼ାଯାଏ । ଏହି ଅନୁଷ୍ଠାନମାନଙ୍କରେ ଯେ ପଢ଼ାନ୍ତି, ସାଧାରଣ ଲୋକେ ଅନୁମାନ କରନ୍ତି, ଯେ ବହୁତ ଭାଷା ନିଶ୍ଚୟ ଜାଣିଥିବେ । ସୁତରାଂ ଭାଷାତତ୍ତ୍ୱବିତ୍ ବୋଲି କହିଦେଲା ମାତ୍ରେ ଲୋକେ ପଚାରନ୍ତି, "ଆପଣ କେଇଟା ଭାଷା ଜାଣନ୍ତି ? ନିଶ୍ଚୟ ଅନେକ ଭାଷା ଜାଣିଥିବେ ।" ଜାଣିଥିଲେ ତ ଭଲ, ନ ଜାଣିଥିଲେ ମୁଣ୍ଡ ଟିଙ୍ଗାରିବା ଛଡ଼ା ଆଉ ଉପାୟ କଣ ? ଏମିତିଆ ପ୍ରଶ୍ନ ଶୁଣିଲେ ସେ ପଶ୍ଚିମା ସାହେବମାନଙ୍କ କଥା ଭାରି ମନେ ପଡ଼େ, ଦୟା ହୁଏ, ହସ ବି ମାଡ଼େ । ଭାରତୀୟ ଦେଖିଲା ମାତ୍ରେ ସେମାନେ ପଚାରନ୍ତି, "ତମେ ଦଉଡ଼ିରେ ଗଣ୍ଠି ହାତ୍ ମାରିପାରିବ, ସାପ ଖେଳାଇ-ପାରିବ ?" ତା ଛଡ଼ା ବେଦ ଉପନିଷଦ ତ ଜିଭ ଅଗରେ ନଖ କୋଣରେ ଲାଗିଥିବା କଥା । "ଆପଣ କେଇଟା ଭାଷା ଜାଣନ୍ତି ?" ଭାଷାତତ୍ତ୍ୱ-ବିତ୍‌ମାନଙ୍କ ପ୍ରତି ଠିକ୍ ସେହିଭଳି ଗୋଟିଏ ପ୍ରଶ୍ନ । ଭାଷାତତ୍ତ୍ୱବିତ୍‌ମାନଙ୍କ ସମ୍ପର୍କରେ ସାଧାରଣଙ୍କର ଯେଉଁ କାଳ୍ପନିକ ଧାରଣା ଥାଏ, ତାକୁ ଭାଙ୍ଗିଦେବାପାଇଁ ଏ ପ୍ରବନ୍ଧର ଅବତାରଣା ।

ଭାଷା ଏମିତି ଗୋଟାଏ ଜିନିଷ, ଭାବ ବସିଲେ ଭାରି ଅଡ଼ୁଆ ଲାଗେ । ହିନ୍ଦୁସ୍ଥାନୀ ଲୋକେ ଏତେ ପାଟିରେ କଥା କହୁଛନ୍ତି କାହିଁକି, ସାହେବଗୁଡ଼ା ଏମିତି ଦାନ୍ତ ଚପି କଥାଗୁଡ଼ା ଗିଳି ପକାଉଛନ୍ତି କାହିଁ ? ଆଫ୍ରିକା ଲୋକ କଥା କହିଲାବେଳେ ତା କଣ୍ଠଟା ଏତେ ନାଚୁଛି କାହିଁ ? ହିନ୍ଦୀଭାଷା ଏତେ ଟାଣ ଅଥଚ ବଙ୍ଗଳା ଭାଷା ନାସିକଣ୍ଠ-କୂଜିତ ମଧୁ ସଙ୍ଗୀତ ପରି ଏତେ ମଧୁର କାହିଁକି ? ଶହେ ବର୍ଷ ତଳେ ସାହେବମାନେ ଯଦି thou କହୁଥିଲେ ଆଜି you କହୁଛନ୍ତି କାହିଁକି ? ଶହ ଶହ ବର୍ଷ ଧରି night, through, though ଲେଖି ଆସିଲେ,

କିନ୍ତୁ ଆଜି କାହିଁକି nite, thru, tho ଲେଖିବାପାଇଁ ଆମେରିକାନ୍‌ମାନେ ଧାଇଁଛନ୍ତି, ଅଥଚ ଇଂରେଜୀପଢ଼ୁଆ ଲୋକେ ତାକୁ ଗ୍ରହଣ କରିବେ ନାହିଁ ବୋଲି ପାଟି କରୁଛନ୍ତି ? ହାତରେ ଶଙ୍ଖା ଥାଉ ଦର୍ପଣ ଆଡ଼େ ଯିବା କିଆଁ ? 'ଗ୍ରାମସେବକ' କାଗଜର ଓଡ଼ିଆ ଲିପି ଦେଖୁ ନାହାନ୍ତି ? ହ୍ରସ୍ୱ 'ଇ'ଟାକୁ ଦୀର୍ଘ 'ଈ' ପରି ଲେଖାଯାଇଛି । ପୁଣି କିଏ କହୁଛି ସବୁ ସ, ଷ, ଶ ଉଠାଇଦେଇ ଖାଲି ଦନ୍ତ୍ୟ 'ସ' ରଖ । ଦୀର୍ଘ 'ଈ' ଦୀର୍ଘ 'ଊ' ଉଠାଇ ଖାଲି ଇ, ଉ ରଖ । ସେ କଣ ସହଜରେ ହେବ ? ତାର ଉତ୍ତର ହେଉଛି କେଉଁଠି ସହଜରେ ହୋଇନ । ଭାଷାତତ୍ତ୍ୱ ସମ୍ପର୍କରେ ଏହିସବୁ ସମସ୍ୟା ସମାଲୋଚନା କରିବା ଓ ବହୁ ବୈଷମ୍ୟ ଭିତରେ ସାମ୍ୟ ଦର୍ଶନ କରିବା ଭାଷାତତ୍ତ୍ୱବିତ୍‌ର କାମ; ତାର କାମ ନୁହେଁ ବହୁ ଭାଷା ଜାଣିବା ( ଜାଣିଲେ ଅବଶ୍ୟ ଭଲ ) ବା କହିପାରିବା । ଯେକୌଣସି ଗୋଟିଏ ଉପଭାଷାର ବୈଜ୍ଞାନିକ ବିଶ୍ଳେଷଣ କରି ଜଣେ ବିଶିଷ୍ଟ ଭାଷାତତ୍ତ୍ୱବିତ୍ ବୋଲାଇ-ପାରନ୍ତି । ସେଥିପାଇଁ ଇଂରାଜୀରେ କହନ୍ତି A linguist is not a polyglot ।

ପୁସ୍ତକଲିଖିତ ଭାଷାକୁ ଦେଖି ଦେଖି ମଣିଷ ଭାଷା ସମ୍ପର୍କରେ ଏପରି ଏକ ବଦ୍ଧମୂଳ ଧାରଣାରେ ଉପନୀତ ହୋଇଛି ଯେ, ଭାଷା କହିଲା ମାତ୍ରେ ସେ କାଗଜଲିଖିତ ଭାଷାକୁ ମନଶ୍ଚକ୍ଷୁରେ ବେଶୀ ପ୍ରାଧାନ୍ୟ ଦେଇଥାଏ । ଶବ୍ଦ କହିଲେ ବହିର ଧାଡ଼ିରେ ଛଡ଼ା ଛଡ଼ା ହୋଇ ଲେଖା ହୋଇଥିବା ପଦଗୁଡ଼ିକୁ ମନଶ୍ଚକ୍ଷୁରେ ସ୍ମରଣ କରେ । ଚକ୍ଷୁର ଏହି ଭାଷାସ୍ମୃତି ଏତେ ଗଭୀର ଯେ, ଜଣେ ଲୋକ କଥା କହିଲାବେଳେ ଶୁଣିଲା ଲୋକ ମନଶ୍ଚକ୍ଷୁରେ କଥିତ ପଦଗୁଡ଼ିକର ଚେହେରା ଦେଖିପାରେ । ମନେ ହୁଏ ବହିରେ ଯେମିତି ପଦଗୁଡ଼ିକ ଭିନ୍ନ ଭିନ୍ନ ହୋଇ ଲେଖା ହୋଇଛନ୍ତି, କହିଲାବେଳେ ସେମାନେ ସେହିପରି ମୁହଁରୁ ନିଃସୃତ ହେଉଛନ୍ତି । ସତେ ଯେମିତି "ତମେ କେବେ ଗାଁକୁ ଯାଉଛ" ବାକ୍ୟଟି କହିଲାବେଳେ 'ତମେ' 'କେବେ' 'ଯାଉଛ' ପ୍ରଭୃତି ପ୍ରତ୍ୟେକ ପଦ

ଗୋଟି ଗୋଟି ହୋଇ ମଣିଷତୁଣ୍ଡରୁ ଗଳିପଡ଼ୁଛନ୍ତି । କିନ୍ତୁ ମନେ ରଖିବାର କଥା, ମୁଖନିଃସୃତ କଥାରେ କୌଣସି ଦୁଇ ଶବ୍ଦ ବା ପଦଭିତରେ କିଛି ତଫାତ୍ (space) ନାହିଁ । ଧରନ୍ତୁ ଏତ 'ତୁମେ କେବେ ଗାଁକୁ ଯାଉଛ ?' ବାକ୍ୟର ଚିତ୍ର ଉଠାହେଲେ ତାହା କାଇମୋଗ୍ରାଫ୍ ଯନ୍ତ୍ରରେ ଏକ ନିରବଚ୍ଛିନ୍ନ ଶବ୍ଦସ୍ରୋତ ପରି ଏକ ଗାର ____________ ରୂପରେ ଦେଖା ପଡ଼ିବ । ଅବଶ୍ୟ ଛାପାର ସୁବିଧାପାଇଁ ମୁଁ ଏକ ସରଳ ରେଖା ଟାଣିଛି । ଏହି କଥାଟା ଉପଲବ୍‌ଧି କରିବା ପାଇଁ ବେଶୀ ଭିଡ଼ ନାହିଁ । ଯେଉଁ ଭାଷା ଆପଣ ମୋଟେ ଜାଣନ୍ତି ନାହିଁ, ସେହିପରି ଏକ ଭାଷା ଶୁଣନ୍ତୁ, ତେବେ ଜାଣିବେ ଭାଷା ଅନୁଭୂତ ପ୍ରକୃତରେ କଣ ? ଆପଣ ଖାଲି ଶୁଣିବେ ଇକିରମିକିର ଗୁଡ଼ାଏ ଶବ୍ଦ । ସେମାନଙ୍କ ଭିତରେ ସମ୍ପର୍କ କଣ, କେଉଁ ଶବ୍ଦ କାହାଠାରୁ ଭିନ୍ନ, କିଛି ଜାଣିପାରିବେ ନାହିଁ । ଧରନ୍ତୁ ଆପଣ ଗୋଟିଏ ଆଫ୍ରିକାନ୍ ଭାଷା ଶୁଣୁଛନ୍ତି chedlemakeytat । ଯଦି ଆପଣ ଏହି ଆଫ୍ରିକାନ୍ ଭାଷା ଜାଣି ନ ଥାନ୍ତି, ଆପଣ ମନେ ମନେ ଠିକ୍ କରିପାରିବେ ନାହିଁ ଏହି ବାକ୍ୟଟି ଗୋଟିଏ ପଦ କି ଦୁଇଟି ପଦ କି ବେଶୀ ପଦରେ ଗଢ଼ା । ଓଡ଼ିଆ ଶୁଣିଲା ମାତ୍ରେ ଆଖି ଆଗରେ ଯେମିତି ଶବ୍ଦ ଓ ପଦଗୁଡ଼ିକ ଭାସିଯାଆନ୍ତି, ଏଥିରେ ସେମିତି ଦେଖାଯିବ ନାହିଁ । କଥା କହିଲାବେଳେ ମୁହଁର ଚିତ୍ର ଯଦି ଫିଲ୍ମଷ୍ଟ୍ରିପ୍ ସାହାଯ୍ୟରେ ଉଠାଇ ନିଆଯାଏ, ତେବେ ଦେଖାଯିବ ଗୋଟିଏ ଶବ୍ଦ ଉଚ୍ଚାରଣ ନ ସରୁଣୁ ଆଉ ଗୋଟାଏ ଶବ୍ଦପାଇଁ ମୁହଁ ପ୍ରସ୍ତୁତ ହୋଇସାରିଲାଣି । 'ପି' କହିବାକୁ ହେଲେ 'ପ' ପାଇଁ ଓ 'ଇ' ପାଇଁ ମୁହଁର ଉଚ୍ଚାରଣ କାର୍ଯ୍ୟ କେଉଁଠି ଆରମ୍ଭ ପୁଣି କେଉଁଠି ଶେଷ ଜାଣିବା ଭାରି କଠିନ । ମୋଟ ଉପରେ କାଇମୋଗ୍ରାଫ୍ ଓ ଫିଲ୍ମଷ୍ଟ୍ରିପ୍ ମେସିନ୍ ଆଖିଆଗରେ ଦର୍ପଣ ଧରି ଦେଖାଇଦେବ ଯେ କଥିତ ଭାଷା ଶବ୍ଦର ଏକ ନିରବଚ୍ଛିନ୍ନ ସ୍ରୋତ । ଏହି ଯନ୍ତ୍ରଯୁଗରେ ଭାଷାତତ୍ତ୍ୱବିତ୍‌ର ପହିଲା କାମ ହେଉଛି ଏହି ନିରବଚ୍ଛିନ୍ନ ଶବ୍ଦସ୍ରୋତ ଭିତରୁ ବିଜ୍ଞାନ ସାହାଯ୍ୟରେ ଶବ୍ଦମାନଙ୍କୁ କାଢ଼ିପାରିବା । ପୂର୍ବୋକ୍ତ ଆଫ୍ରିକାନ୍ ଉଦାହରଣ ନିଆଯାଉ । ଭାଷାତତ୍ତ୍ୱବିତ୍ ଆଫ୍ରିକାନ୍ ଭାଷା ବରାବର ଶୁଣି

ଶୁଣି ଯେତେବେଳେ ଭାଷାତାତ୍ତ୍ୱିକ ମିଶାଣ, ଫେଡ଼ାଣ, ହରଣ, ଗୁଣନ ସାହାଯ୍ୟରେ ଶବ୍ଦସ୍ଥିତି ( sound distribution in the linguistic system) ଜାଣିପାରିବେ, ସେତେବେଳେ ସେ ଏହି ଶବ୍ଦ-ସ୍ରୋତକୁ ଠିକ୍‌ଠିକ୍ କରି ବିଶ୍ଲେଷଣ କରି ସେଥିରୁ ଶବ୍ଦ ଓ ପଦମାନଙ୍କୁ ଧରିପାରିବେ । ସେତେବେଳେ ସେ ଏହି ସାଧା ଗାର ___________ କୁ ଭିନ୍ନ ଭିନ୍ନ ଛେଦଦ୍ୱାରା ସୀମିତ କରି ସେଥିରୁ ସେହି ଭାଷାର ଶବ୍ଦ ଓ ପଦ ବାହାର କରିପାରିବେ । ଶେଷରେ chedlemakeytat ବାକ୍ୟକୁ chedlema key tat (dark red finger) ପଦରେ ବିଭକ୍ତ କରିପାରିବେ । ଯାକୁଇ ଆଜକାଲି କହୁଛନ୍ତି ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ ବା descriptive linguistics । ଆଧୁନିକ ଭାଷାତତ୍ତ୍ୱବିତ୍‌ମାନେ ଏହି କାମରେ ଜୋରସୋରରେ ହାତ ଦେଇଛନ୍ତି । ବହୁ କଥିତ ଭାଷାକୁ ଆମେରିକାନ୍ ଭାଷାବିତ୍‌ମାନେ ଏହି ପ୍ରଣାଳୀଦ୍ୱାରା ବିଶ୍ଲେଷଣ ଓ ଲିଖନ କରିବାରେ ଲାଗିଛନ୍ତି । ଭାଷାବିଜ୍ଞାନପାଇଁ ଏହି ମୌଳିକ ଜ୍ଞାନ ଲୋଡ଼ା । ଏସବୁଭିତରେ କହିବାର ଲକ୍ଷ୍ୟ ହେଉଛି ଏକ ଭାଷାତତ୍ତ୍ୱବିତ୍ ବହୁଭାଷିକ କୌଣସି ବ୍ୟକ୍ତି ବା ଯନ୍ତ୍ର ନୁହନ୍ତି । ଭାଷାମଧ୍ୟରେ ଥିବା ବିଭିନ୍ନ ବିଭାଗ-ମାନଙ୍କର ସମ୍ପର୍କ କଣ ସେତିକିମାତ୍ର ସେ ଜାଣନ୍ତି । ଗୃହିଲେ ଅନ୍ୟ ଉଦାହରଣ ନିଅନ୍ତୁ । ଦେଖିବେ ଆଇନ ସର୍ବତ୍ର ସମାନ । ଯେମିତି ବସନ୍ତ ହେଲେ ଫୁଲ ଫୁଟେ, ଫୁଲ ଫୁଟିଲେ ଭ୍ରମର ଲୋଟେ, ଠିକ୍ ସେମିତି ।

ତିନି ଜାଗାର ତିନୋଟି ଉଦାହରଣ ନିଆଯାଉ—

ଢେଙ୍କାନାଳର ଗ୍ରେରେଷ୍ଟା (ଗ୍ରେରି+ଚେଷ୍ଟା)
ସୁନ୍ଦରଗଡ଼ର ବାଲ୍‌ଟିନ୍ (ବାଲ୍‌ଟି+ଟିଣ)
ଆମେରିକାର motel (motor+hotel)

ଦେଖନ୍ତୁ ତିନୋଟି ଶବ୍ଦ ତିନି ଜାଗାର । ମାତ୍ର ସେମାନଙ୍କର ଗଠନ ଏକପ୍ରକାର । ହେଉ ଓଡ଼ିଶାରେ, ହେଉ ଆମେରିକାରେ, ଆଇନ ସମାନ ।

ଢେଙ୍କାନାଳର କେତେକ ଗାଁରେ କହନ୍ତି ସେ ଗ୍ରେଷ୍ଟା ଭାବରେ ନେଇଗଲା । ଗ୍ରେସ ଓ ଚେଷ୍ଟା ଦୁଇ ଶବ୍ଦକୁ ଏକ କରି କହିବା ଇଚ୍ଛାରୁ ଏହି ଶବ୍ଦ ନିଷ୍ପନ୍ନ ବୋଲି ମନେ ହୁଏ । ଆମେ ବାଲ୍‌ଟିକୁ କହୁ ବାଲ୍‌ଟି; ମାତ୍ର ଏହି ବାଲ୍‌ଟି ଟିଣଜାତୀୟ ପଦାର୍ଥରେ ତିଆରି ହୋଇଥିବାରୁ କେହି ହୁଏତ ବାଲ୍‌ଟି ଅର୍ଥରେ ଖାଲି ଟିଣକୁ ବ୍ୟବହାର କରିପାରିଥାନ୍ତି । କେହି ପୁଣି ବାଲ୍‌ଟି+ଟିଣ ଦୁଇ ପଦକୁ ଏକାଠି ମିଶାଇ ବାଲ୍‌ଟିନ୍ କରିଥାନ୍ତି । ଆମେରିକାରେ ଏକପ୍ରକାର ପାନ୍ଥନିବାସ ଅଛି ଯେଉଁଠି ହୋଟେଲ ପରି ଲୋକ ରହନ୍ତି, ଲୋକଙ୍କ ସଙ୍ଗେ ତାଙ୍କ ମଟର ବି ରହିପାରେ । ତେଣୁ ମଟର ଆଉ ହୋଟେଲ ମିଶାଇ motel କରାଯାଇଛି । ଇଂରାଜୀର ଅନ୍ୟତମ ଶବ୍ଦ brunch (ବ୍ରଞ୍ଚ) breakfast+lunch ସମ୍ମିଶ୍ରଣରୁ ଜାତ । ଭାଷାତତ୍ତ୍ୱବିତ୍ (linguist) ବହୁ ଭାଷା କହିବାରେ ପାରଗ ନ ହୋଇ ମଧ୍ୟ ଏକ ଭାଷାଭିତରେ ବହୁ ଶବ୍ଦ କେମିତି ଏକ ନିୟମର ବଶବର୍ତ୍ତୀ ହୋଇ କାମ କରନ୍ତି, ତାହା ଧରିବାପାଇଁ ଚେଷ୍ଟା କରନ୍ତି, ସେମାନଙ୍କର ବ୍ୟାପ୍ତି ଦେଶ ଓ କାଳ ଦେହରେ ଯେତେଦୂର ବିକ୍ଷିପ୍ତ ହେଉ ପଛେ ।

ମଧ୍ୟପ୍ରଦେଶ-ପ୍ରଭାବିତ ସମ୍ବଲପୁର ଓ ବଙ୍ଗ-ପ୍ରଭାବିତ ବାଲେଶ୍ୱରରେ ଭାଷାମିଶ୍ରଣର ଯେଉଁ ଅବସ୍ଥା, ପ୍ରତି ପ୍ରଦେଶର ସୀମାସ୍ଥଳରେ ପ୍ରାଦେଶିକ ଭାଷାମାନଙ୍କର ସେହି ଅବସ୍ଥା । ସଂସ୍କୃତ-ପ୍ରଭାବିତ ଉତ୍ତରଭାରତୀୟ ଭାଷା-ମାନଙ୍କରେ କ, ଚ, ଟ, ତ, ପ ଗୋଟିଏ ସିରିଜ୍ । ଯଦି ଅନୁସନ୍ଧିତ୍ସୁ କୌଣସି ନୂତନ ଭାଷାରେ ପ୍ରଥମେ ପ୍ରଥମେ କେବଳ 'କ×ଟ×ପ'ର ସନ୍ଧାନ ମିଳେ, ଅଥଚ 'ଚ' ଓ 'ତ'ର ସନ୍ଧାନ ମିଳେ ନାହିଁ । ଯେହେତୁ ସେମାନେ କ, ଚ, ଟ, ତ, ପ ସିରିଜର ଶବ୍ଦ ତେଣୁ ଚ ଓ ତ ଥିବେ ବୋଲି ସନ୍ଦେହ କରି ଅନୁସନ୍ଧାନ କରିବା ଉଚିତ । ବହୁ କ୍ଷେତ୍ରରେ ଅନୁସନ୍ଧାନକାରୀମାନେ ସଫଳ ହୁଅନ୍ତି । ସେମିତି ଇଂରାଜୀରେ P, T, K ଏକ ସିରିଜର ଶବ୍ଦ; ତେଣୁ ଯଦି କେଉଁ ଭାଷାରେ P, K ର ସନ୍ଧାନ

ମିଳେ, ତେବେ ସେହି ଭାଷାରେ T ପାଇଁ ଅବଶ୍ୟ ସନ୍ଧାନ କରିବାକୁ ହେବ ।

ମୋଟ କଥା ହେଉଛି, ଅନ୍ୟାନ୍ୟ ବିଜ୍ଞାନ ପରି ଭାଷାତତ୍ତ୍ୱ ବା ବିଜ୍ଞାନ ବହୁ ସାଧାରଣ ନିର୍ଦ୍ଦିଷ୍ଟ ନିୟମମାନଙ୍କର ସମାହାର । ସେହି ନିୟମମାନଙ୍କରେ ଦୀକ୍ଷିତ ବ୍ୟକ୍ତି ଭାଷାତତ୍ତ୍ୱବିତ୍ । ତେଣୁ ଭାଷାତତ୍ତ୍ୱବିତ୍ 'କେତେ ଭାଷା ଜାଣନ୍ତି' ଏ ପ୍ରକାର ପ୍ରଶ୍ନର ଉତ୍ତର ନାହିଁ ।

———

# ଆଧୁନିକ ଦୁନିଆରେ ଭାଷା ସମସ୍ୟା

ନଈକେ ବାଙ୍କେ, ଦେଶକେ ଫାଙ୍କେ । ତେଣୁ ନିଜ ଘରୁ ଗୋଡ଼ କାଢ଼ିଲେ ଆପଣ ପାଇପଡ଼ୋଶୀଙ୍କ ଘରେ ଆଉ ଜାତିଏ କଥା ଶୁଣିବେ । ସେଇଟା ଅବଶ୍ୟ ଆପଣଙ୍କୁ ବେଶୀ ଆଶ୍ଚର୍ଯ୍ୟ ଲାଗୁ ନ ଥିବ । ମାତ୍ର ଆପଣ ନିଜ ପ୍ରଦେଶ ଛାଡ଼ି ବିଦେଶ ଯାଇଥିବେ ନିଶ୍ଚୟ । କଲିକତା ସହରରେ ହଠାତ୍ ଓଡ଼ିଆ ତୁଣ୍ଡ ଶୁଣି କେବେ ଆପଣ ଚମକି ନାହାନ୍ତି ? ଲଣ୍ଡନ ବା ନିଉୟର୍କ ସହରରେ ହିନ୍ଦୀ ଭାଷା ଶୁଣି କେବେ ଅପ୍ରତିଭ ହୋଇ ନାହାନ୍ତି ? ସମ୍ବଲପୁର ଗାଁଗହଳରେ କଟକୀ ଭାଷା କିମ୍ବା ପୁରୀ ଗାଁଗହଳରେ ସମ୍ବଲପୁରୀ ଭାଷା ଶୁଣି ତାଜୁବ ହୋଇ ନାହାନ୍ତି ? ନିଶ୍ଚୟ ହୋଇଥିବେ । ମା ଆଉ ମା ପରକୁ ମାତୃଭାଷା ଉଭୟେ ପ୍ରିୟତମ । ଏହିସବୁ କଥା ଭାବି ବସିଲେ ମନରେ ଅନେକ ପ୍ରଶ୍ନ ଉଠେ ।

ଆଚ୍ଛା, ପୃଥିବୀ ତ ଆଜି ଏଡ଼େ ଛୋଟ ହୋଇଛି । ବିଜ୍ଞାନଶକ୍ତି ମନୁଷ୍ୟକୁ ଅକଳନ୍ତି ବଳ ଦେଇଦେଇଛି । ନିଉୟର୍କରେ ଛୁଞ୍ଚିଟାଏ ପଡ଼ିଲେ ଆମ ଗାଁ ନୂଆ ହାଟରେ ତାର ଶବ୍ଦ ପ୍ରତିଧ୍ୱନିତ ହେଉଛି । ଲୋକେ ଏବେ ଗ୍ରାମ ପଞ୍ଚାୟତରୁ ଆରମ୍ଭ କରି ପୃଥିବୀ ପଞ୍ଚାୟତ ପର୍ଯ୍ୟନ୍ତ ସବୁ କାର୍ଯ୍ୟକାରୀ କରି ସାରିଲେଣି । ଆପଣ ଯଦି ଓଡ଼ିଆ ହୋଇଥାନ୍ତି, ଆଉ ତାମିଲଭାଷା ଜାଣି ନ ଥାନ୍ତି, ତେବେ ପାଞ୍ଚଜଣ ତାମିଲ୍ ଲୋକ ଏକାଠି ପାଟିତୁଣ୍ଡ କଲାବେଳେ ଆପଣଙ୍କୁ କେମିତି ଲାଗେ ଭାବନ୍ତୁ । ସେହି [illegible]ଦରେ ଆପଣ ପୃଥିବୀ ପଞ୍ଚାୟତ କଥା ଟିକିଏ କଳ୍ପନା କରନ୍ତୁ ତ ? ଆମେରିକାଠାରୁ ଜାପାନ ପର୍ଯ୍ୟନ୍ତ କେଉଁ ଦେଶର ଲୋକ ସେଠି ନାହାନ୍ତି ? କାଳି, କଲମ, କାଗଜପତ୍ର ଏପରିକି ଟଙ୍କା ପର୍ଯ୍ୟନ୍ତ ସମୟେସମୟେ ସମାନ ହୋଇପାରେ; ମାତ୍ର ଭାଷା କଥା ଭାବିଲେ ଆପଣ କାହିଁକି, ଯେକୌଣସି ଲୋକ ଆଶ୍ଚର୍ଯ୍ୟ ହେବେ, କେମିତି ସେମାନେ କଥା କହୁଥିବେ । ଆମେରିକାନ୍‌ମାନଙ୍କର

ଗର୍ଜ-ସ୍ୱର, ଇଂରେଜମାନଙ୍କର ଅଧାଗିଲା କଥା, ଜାପାନୀ ସ୍ୱରର ଉତ୍ଥାନ-ପତନ, ସବୁ ବଡ଼ ମୁସ୍କିଲ କଥା । ଠିକ୍ ଏତିକବେଳେ ମନୁଷ୍ୟ ଭଗବାନଙ୍କ ଉପରେ ବିରକ୍ତ ହୁଏ । ସେଇ ଜିଭ, ସେଇ ଦାନ୍ତ, ଓଠ, ସେଇ କଣ୍ଠଯନ୍ତ୍ର ସମସ୍ତଙ୍କର ଅଛି ଅଥଚ ମଣିଷ ମଣିଷ ଭିତରେ କି ହିମାଳୟ ପାଚେରି ! ଯାହା କହନ୍ତି ଏକ ଅର୍ଥରେ 'man is born free but he is everywhere in chains' ।

ଆମ ଗାଁଗଣ୍ଡାଲରେ ତ ଏବେ ବହୁତ ଇଂରାଜ, ଆମେରିକାନ୍ ମିଶନାରୀ, କମ୍ୟୁନିଟି ପ୍ରୋଜେକ୍ଟ ସାହେବ ବୁଲୁଛନ୍ତି । ଆପଣ ତାଙ୍କୁ ଥରେ ପରୀକ୍ଷା କରନ୍ତୁ ତ ? ଯଦି ଭାଷା ସମ୍ପର୍କରେ ଆଗରୁ କେବେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ନାହାନ୍ତି ତେବେ ଏଥର ନିଶ୍ଚୟ ହେବେ, ଏଥିରେ ଏତେ ଟିକେ ସନ୍ଦେହ ନାହିଁ । ସାହେବ ଲୋକେ ଯେତେ ଶୀଘ୍ର ଓ ଯେତେ ସହଜରେ ଖାନା, ଖରା, ଖଣ୍ଡ ପ୍ରଭୃତି ଶବ୍ଦଗୁଡ଼ିକ କହିପାରିବେ କଖାରୁ, ଟଙ୍କା, ଟାଣ ପ୍ରଭୃତି ସେତେ ଶୀଘ୍ର କହିପାରିବେ ନାହିଁ, ବରଂ ଖଖାରୁ, ଠଙ୍କା, ଠାଣ ବୋଲି କହିବେ । ଆପଣ ଟିକିଏ ହସିବେ; ଅଥଚ ଭାବିବେ ନିଶ୍ଚୟ, କଥାଟା କଣ ?

ଏବେ କିଛିଦିନ ତଳେ ପୂର୍ବ-ପାକିସ୍ଥାନରେ ବଙ୍ଗଭାଷା ଏକ ରାଷ୍ଟ୍ରଭାଷା ହେବ ବୋଲି ପ୍ରଶ୍ନ ଉଠିବାରୁ କି ରକ୍ତାକ୍ତ କାଣ୍ଡକାରଖାନା ହୋଇଛି ଆପଣ ନିଶ୍ଚୟ ଭୁଲି ନ ଥିବେ । ତା ଛଡ଼ା ଆଜି ଆମ ପିଲାଏ ମାଟ୍ରିକ ଯାଏ ଓଡ଼ିଆ ପଢ଼ି କଲେଜଯାକ ଇଂରାଜୀ ପଢ଼ୁଥିବାରୁ ଶିକ୍ଷାର ଅବସ୍ଥା କେଉଁଠିକି ଗଲାଣି, ଆପଣ ନିଶ୍ଚୟ ଚିନ୍ତା କରିଥିବେ ।

ଆଜି ଆମେ ସବୁ କଥାରେ ଆଦିବାସୀଙ୍କ କଥା ଆଗେ ଉଠାଉଛୁ । ତାଙ୍କୁ ଅନ୍ନ ଦେବୁ, ବସ୍ତ୍ର ଦେବୁ, ବୁଦ୍ଧିବିଦ୍ୟା ବି ଦେବୁ; ତା ଯଦି ହୁଏ ତାଙ୍କ ଅଲିଖିତ ଭାଷାକୁ କେମିତି ବୈଜ୍ଞାନିକ ଙ୍ଗରେ ଲିଖିତ ରୂପ ଦେବୁ, ସେ କଥା ବି ଭାବନ୍ତୁ । ମୋଟଉପରେ ଯେତେ କଥାର ଅବତାରଣା କରାଗଲାଣି ସେସବୁର ଉଦ୍ଦେଶ୍ୟ ହେଉଛି ଏକା । କହିବାର କଥା, ଅନ୍ୟାନ୍ୟ ସମସ୍ୟା

ଏହି ଭାଷା ଏକ ବିରାଟ ସମସ୍ୟା ବୋଲି ଆପଣ ଯଦି ଏପର୍ଯ୍ୟନ୍ତ ଠିକ୍ କରି ନ ଥାନ୍ତି, ତାହେଲେ ଏବେ ଠିକ୍ କରିନିଅନ୍ତୁ । ପୁରୀର ମାଛବିକାଳି କେଉଟୁଣୀଙ୍କର ଡାମଚି ବାବୁ (dam cheap), ସୁନ୍ଦରଗଡ଼ର ଚପ୍ରାସୀମାନଙ୍କର ବାଲଟିନ୍ (ବାଲ୍ଟି),ବାଲେଶ୍ୱରର, ଖାଇତେ, ଯାଇତେ, (ଖାଇବାକୁ, ଯିବାକୁ), ହିନ୍ଦୋଳ, ଅନୁଗୁଳର ଗୁଡ଼ ଓ କୁଡ଼ଏ (ଗୋଡ଼ ଓ କୋଡ଼ିଏ) ଆପଣଙ୍କର ଚିନ୍ତାଧାରାକୁ ଟିକିଏ ଚଞ୍ଚଳ କରୁ ।

ଆମ ଦେଶର ଯେଉଁ ରକ୍ଷଣଶୀଳ ଲୋକେ ଯାଚି କରନ୍ତି ବାହାର ଭାଷାକୁ, ବାହାର ଶବ୍ଦକୁ ନିଜ ଭାଷାରେ ସ୍ଥାନ ଦେବେ ନାହିଁ ବୋଲି, ସେମାନେ ପୃଥିବୀର ଉନ୍ନତତମ ଇଂରାଜୀ ଭାଷାପ୍ରତି ଦୃଷ୍ଟି ଦେଇ ଦେଖନ୍ତୁ, ସେହି ଭାଷା କେମିତି ପରାଙ୍ଗପୁଷ୍ଟ ହୋଇ ବଳିଷ୍ଠ ହୋଇଛି । ସାମାଜିକ ଜୀବନରେ ପରାଙ୍ଗପୁଷ୍ଟି ଅଶୋଭନୀୟ, ସେଇଥିପାଇଁ ସାମ୍ରାଜ୍ୟବାଦ ବିରୁଦ୍ଧରେ ଆଜି ଏତେ ଲାଲ ମଶାଲର ଶିଖା ଜଳିଉଠୁଛି । ମାତ୍ର ଭାଷାରାଜ୍ୟରେ ସୀମା-ଭିତରେ ପରାଙ୍ଗପୁଷ୍ଟି ଏକାନ୍ତ ଆବଶ୍ୟକ । ଭାଷା ଓ ସଂସ୍କୃତିରେ ସଂଘର୍ଷର ସ୍ଥାନ ରହିବା ଉଚିତ ନୁହେଁ । କେତୋଟି ମାତ୍ର ଇଂରାଜୀ ବାକ୍ୟ ନିଆଯାଉ, ଦେଖିବା ତହିଁରେ କେତେ ପ୍ରକାର ଭାଷା ମିଶିରହିଛି । ଉଦାହରଣ—

Ii you do not relish now a lunch of beef or mutton, you may have a bottle of soda or cheri, if not brandy

Or would you like a cup of tea or coffee ?

With sugar or without ?

ଦେଖନ୍ତୁ ଏତିକି ଇଂରାଜୀ କଥାରେ କେତେ ବିଦେଶୀ ଶବ୍ଦ ମିଶି କରି ଅଛି ।

beef, mutton—ଫରାସୀ
soda—ଇଟାଲୀୟ
cheri—ସ୍ପେନୀୟ
brandy—ଡଚ୍ (ଓଲନ୍ଦାଜ)
tea—ଚୀନ
coffee—ଆରବୀ
sugar—ସଂସ୍କୃତ

ଏହିପରି ଭାବ ବସିଲେ ପାଟି ଫିଟାଇବାଠାରୁ ହାତରେ ଲେଖିବା ପର୍ଯ୍ୟନ୍ତ ଭାଷା ସମ୍ପର୍କରେ ବହୁ ସମସ୍ୟା ଅଛି । କହି ଅନୁବାଦ, କହି ଟାଇପ୍, କହି ଶର୍ଟ୍‌ହ୍ୟାଣ୍ଡ, କହି ବିଦେଶୀ ଭାଷାର ଶିକ୍ଷା, ସର୍ବତ୍ର ଭାଷା ଏକ ସମସ୍ୟା ।

ଆଜି ଯେମିତି ଲୋକେ ବହୁ ପୃଥିବୀ-ସମସ୍ୟାରେ ବ୍ୟାପୃତ ଅଛନ୍ତି, ଏକ ପୃଥିବୀରେ ଏକ ଶାସନ, ଏକ ଚନ୍ତାଧାରା ଖେଳାଇବାପାଇଁ ଚେଷ୍ଟା କରୁଛନ୍ତି, ସେମିତି ଏକ ଭାଷାର ଚନ୍ତା ମଧ୍ୟ ଭାଷାବିତ୍‌ମାନଙ୍କ ମନରେ ବହୁକାଳୁ ଜାଗ୍ରତ ଅଛି । ତେଣୁ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ପୃଥିବୀର ଅନେକ ଭାଷାବିତ୍ ସ୍ୱପ୍ନ ଦେଖିଲେ ଯେ, ସାରା ମନୁଷ୍ୟଜାତିପାଇଁ ଏକ ଶାସନ ପରି ଏକ ଭାଷା ମଧ୍ୟ ତିଆରି କରି ହେବ । ସେହି ସ୍ୱପ୍ନର ଅବଶ୍ୟମ୍ଭାବୀ ଫଳ ହେଲା କେତେକ ମଣିଷଗଢ଼ା କୃତ୍ରିମ ଭାଷା । ସେମାନଙ୍କର ନାମ ହେଉଛି ଏସ୍ପାରେଣ୍ଟୋ, ଆଇଡ଼ୋ, ଅକ୍‌ସିଡେଣ୍ଟାଲ୍, ନୋଭିଆଲ୍ ପ୍ରଭୃତି । ଏହି କୃତ୍ରିମ ଭାଷା-ମାନଙ୍କର ଉଦ୍ୟୋକ୍ତାମାନେ ଯୁଗ ଯୁଗର ବ୍ୟାକରଣ, ଶୃଙ୍ଖଳା ଓ ମନସ୍ତତ୍ତ୍ୱକୁ ବଦଳାଇଦେବାପାଇଁ ଚେଷ୍ଟା କରିଥିଲେ । ଏ କଥା ସମସ୍ତଙ୍କୁ ଜଣା ।

ପ୍ରକୃତରେ ୧୯୦୫ ମସିହାରେ ଫ୍ରାନ୍‌ସରେ ଏକ ଆନ୍ତର୍ଜାତିକ ସଭାରେ ଏକ କୃତ୍ରିମ ଭାଷାର କାରବାର ଚାଲିଲା । ମାତ୍ର ସମୟସ୍ରୋତରେ ଏହିସବୁ

ଠାକିଲା ନାହିଁ । ଭଗବାନଙ୍କୁ ଠକିଦେବାପାଇଁ ମନୁଷ୍ୟର ଯେ ଚେଷ୍ଟା ତାହା ଏକପ୍ରକାର ବିଫଳ ହେଲା । ମାତ୍ର ଏକ ପୃଥିବୀଭାଷାପାଇଁ ଏହା ଯେ ଏକ ବୈଜ୍ଞାନିକ ଚେଷ୍ଟା, ଏଥିରେ ଆଦୌ ସନ୍ଦେହ ନାହିଁ ।

କହିବା ଭାଷା କଥା ଛାଡ଼ିଦେଇ ଲେଖିବା ଭାଷା କଥା ବିଚାର କରାଯାଉ । ଏ କ୍ଷେତ୍ରରେ ଚୀନର ଚିତ୍ର ଅକ୍ଷରଠାରୁ ଆରମ୍ଭ କରି ଆରବୀ, ଫାରସୀ, ଡଚ୍, ରୋମାନ୍ ପର୍ଯ୍ୟନ୍ତ ନାନାପ୍ରକାର ଲିପି ଅଛି । ବିଭିନ୍ନ ଉଚ୍ଚାରିତ ଭାଷା ମଣିଷର ଗତିବିଧିକୁ ଯେମିତି ସୀମିତ କରୁଛନ୍ତି, ତାଠୁ କମ୍ କରୁ ନାହାନ୍ତି ଏହି ବିଭିନ୍ନ ଲିପିଗୁଡ଼ିକ । ଏହି ସଭ୍ୟ ସ୍ୱାଧୀନ ଯୁଗରେ ମଣିଷସବୁ ଗୁଣି-ଗାରେଡ଼ି, ମନ୍ତ୍ର-ଯନ୍ତ୍ରର ପ୍ରଭାବ ଭୁଲି ବିଜ୍ଞାନକୁ ଆସ୍ଥା କରିଛି, ମାତ୍ର ଭାଷାରାଜ୍ୟରେ ଏପର୍ଯ୍ୟନ୍ତ ଗୁଣି-ଗାରେଡ଼ି, ମନ୍ତ୍ର ଚାଲିଛି । କାରଣ ମଣିଷ ଏତେ ଯୁଗ ହେଲା ଏହି ଲିପିମାନଙ୍କର ପ୍ରଭାବରେ ରହିଆସିଛି ଯେ ନିଜର ଦୁର୍ଦ୍ଦଶା ବୁଝିବାର ଚେଷ୍ଟା ପର୍ଯ୍ୟନ୍ତ କରିପାରୁ ନାହିଁ । ଯେଉଁ ଲୋକେ ଅସନା ମଇଳା ଭିତରେ ରହିଆସିଛନ୍ତି, ତାଙ୍କୁ ସେଇଟା କିଛି ଖରାପ ଲାଗୁ ନାହିଁ, ଅଥଚ କେହି ଗ୍ରାମସେବକ ସେ କଥା ବୁଝାଇଦେଲେ ସଂସ୍କାର ପ୍ରଭାବରୁ ସେମାନେ ପ୍ରଥମେ ବୁଝିବାକୁ ରାଜି ହେଉ ନାହାନ୍ତି । କିନ୍ତୁ କାଳକ୍ରମେ ଅନେକେ ଶୁଣି ଶୁଣି ଦେଖି ଦେଖି ହୁଏ ତ ନୂତନ ଜୀବନପ୍ରତି ଆଗ୍ରହ ଦେଖାଉଛନ୍ତି । ଜୀବନର ସବୁ କ୍ଷେତ୍ରରେ ଏହା ମଣିଷର ପ୍ରକୃତି । ଦିନ ଥିଲା ଯେତେବେଳେ ରେଳଗାଡ଼ି ଚାଲିଲେ, ମେସିନ୍ ସାହାଯ୍ୟରେ ସୂତା କାଟିଲେ କ୍ଷତିକାରକ ବୋଲି ଲୋକେ ବୁଝୁଥିଲେ । ଅଥଚ ସେହି ଦେଶର ଲୋକେ ଏବେ ଆକାଶରେ ଉଡ଼ୁଛନ୍ତି, ମେସିନ୍ ଦେହରେ ସବୁ କରୁଛନ୍ତି । କ୍ଷଣକପାଇଁ ନୂତନ ସତ୍ୟର ପ୍ରତିରୋଧ ହେବ ସତ୍ୟ, କିନ୍ତୁ ଶେଷରେ ତାହା ଜୟୀ ହେବ ।

ଲିପିମାନଙ୍କର ଅନ୍ୟାନ୍ୟ କଥା କହିବା ପୂର୍ବରୁ ଲିପି ସାହାଯ୍ୟରେ ହେଉଥିବା ବନାନଗୁଡ଼ିକ କି ଅଯୌକ୍ତିକ, କି ଅବୈଜ୍ଞାନିକ, ତାହା ପୃଥିବୀର ସଭ୍ୟତମ ଲୋକେ ଜାଣି ମଧ୍ୟ ସଂସ୍କାରବଶତଃ ଛାଡ଼ିପାରୁ ନାହାନ୍ତି ।

ଉଦାହରଣ ଦେଇ ଲାଭ ନାହିଁ । ଫରାସୀ ଓ ଇଂରାଜୀ ବନାନ ପ୍ରଣାଳୀ କିପରି ଅଯୌକ୍ତିକ, ଅସାର, ତାହା ସମସ୍ତେ ଜାଣନ୍ତି । ଗଲା ପଚାଶ ବର୍ଷ ହେଲା ତା ବିରୁଦ୍ଧରେ ବହୁ ଅଭିଯୋଗ ହେଲେ ମଧ୍ୟ ପ୍ରଗତିଶୀଳ ଆମେରିକାନ୍‌ମାନେ ଯେଉଁ ଅଳ୍ପ କେତୋଟି ପରିବର୍ତ୍ତନ କରିଛନ୍ତି ତାହା ଅତି ନଗଣ୍ୟ । ତଥାପି ମଣିଷ ଯେ କ୍ରମେ ବିଜ୍ଞାନ ପ୍ରଭାବରେ ନିଜର ଭୁଲ୍ ବୁଝିବାକୁ ଆରମ୍ଭ କରିଛି, ସେହି ଯଥେଷ୍ଟ ଶୁଭ ନମୁନା । ଆମେମାନେ ଭାଷା-ବିଜ୍ଞାନ ଦୃଷ୍ଟିରୁ ପୃଥିବୀର ସଭ୍ୟତମ ଜାତି । ତେଣୁ ଆମର ଯେଉଁ ଅଳ୍ପ ଗଲତି କେଉଁଠି କେମିତି ହୋଇଛି, ତାକୁ ସୁଧାରିନେବା ଉଚିତ । ଉଦାହରଣସ୍ୱରୂପ ଆମେ ଗୋଟିଏ ଦନ୍ତ୍ୟ 'ସ' ଉଚ୍ଚାରଣ କରୁଥିବାରୁ ତିନୋଟି ସ, ଶ, ଷ ଲେଖିବାର ଆବଶ୍ୟକତା ନାହିଁ । କିମ୍ବା କ୍ଷ ପାଇଁ ଖ୍ୟ; ଯ, ଜ ଦୁଇଟି ପାଇଁ ଗୋଟିଏ ଜ; ଇ, ଈ ସ୍ଥାନରେ କେବଳ ଇ ଲେଖିବା ପାଇଁ ଆରମ୍ଭ କରିବା ଉଚିତ । ଏହି କଥା ଏତିକିରେ ଥାଉ ।

ବର୍ତ୍ତମାନ ଦେଖିବା ପୃଥିବୀରେ ବହୁ ଲିପି ହେବା ଫଳରେ ଆମର ଅସୁବିଧା କଣ ? ଲିପି ପ୍ରଥମେ କଣ ? ଲିପି ଗୋଟିଏ ସଙ୍କେତ ମାତ୍ର । ଗୋଟିଏ ଧ୍ୱନି । ଧରନ୍ତୁ 'ଏ' ଉଚ୍ଚାରଣ କଲେ—

| | |
|---|---|
| ଓଡ଼ିଆମାନେ ଲେଖିବେ | ଏ |
| ଇଂରାଜମାନେ ଲେଖିବେ | a |
| ସଂସ୍କୃତ ଓ ହିନ୍ଦମାନେ ଲେଖିବେ | ए |
| ଫରାସୀମାନେ ଲେଖିବେ | e |

ତା ଛଡ଼ା ପୃଥିବୀର ଅନେକ ଲିପିରେ ତାହା ଅନେକ ରୂପ ନେବ । ହୁଏତ କେତେକ ଭାଷାରେ ସେ ଧ୍ୱନି ତଥା ତାର ସଙ୍କେତ ଏହି 'ଏ' ନ ଥାଇ ବି ପାରେ । ଦୁନିଆ ଯେତେବେଳେ ଖୁବ୍ ବିରାଟ ଥିଲା, ମଣିଷ ଦୂର ଦେଶକୁ ଯିବା ଅସମ୍ଭବ ମନେ କରୁଥିଲା, ସେତେବେଳେ ଭିନ୍ନ ଭିନ୍ନ ସ୍ଥାନରେ ଆମେମାନେ ଭିନ୍ନ ଭିନ୍ନ ସଙ୍କେତ, ଚିହ୍ନ ବା ଲିପି ଯାହା କହନ୍ତୁ,

ସୃଷ୍ଟି କରୁଥିଲୁ । ଆଜି ତ ଆଉ ସେ ଆଦିମ ଅବସ୍ଥା ନାହିଁ । ପୃଥିବୀର ଏପାର ସେପାର ମାତ୍ର କେତେଟା ଘଣ୍ଟାର କାମ । ବିଜ୍ଞାନ-ଆଲୋକରେ ଲୋକେ ମନୁଷ୍ୟର ପୁରାତନ ଦୋଷ, ଦୁର୍ବଳତା ଓ ଭୁଲସବୁ ସହଜରେ ଦେଖି ପାରୁଛନ୍ତି । ତେବେ ଏହି ନୂତନ ଆଲୋକରେ ସବୁ ଦେଶର ଭାଷାରେ ଯେଉଁ ସାଧାରଣ ଧ୍ୱନିସବୁ ଅଛି, ସେଥିପାଇଁ ଗୋଟିଏ ସାଧାରଣ (common) ଲିପି ଗ୍ରହଣ କଲେ କ୍ଷତି କଣ ? ଏପ୍ରକାର କଳ୍ପନା କାହାର ଖିଆଲ ନୁହେଁ । ବୈଜ୍ଞାନିକ ସତ୍ୟର ଅବଶ୍ୟମ୍ଭାବୀ ଫଳ । ନୂତନ ଅକ୍ଷର ସୃଷ୍ଟି କରାଯାଇ କିମ୍ବା ଯେଉଁ ରୋମାନ୍-ଲିପିରେ ଟେଲିଗ୍ରାମ, ଟାଇପ, ଶର୍ଟହାଣ୍ଡ ପ୍ରଭୃତି ସହଜ ଲିପି ବିଧାନ ରହିଛି, ସେହି ଲିପି ନିଆଯାଉ । ପାଠକମାନେ କୌଣସି ଭାବପ୍ରବଣତାରେ ଭାସି ନ ଯାଇ ଟିକିଏ ସ୍ଥିରମନରେ ଚିନ୍ତା କରନ୍ତୁ, ମନୁଷ୍ୟଜାତି କେତେ ସମୟ ଓ ଶକ୍ତି ବଞ୍ଚାଇପାରନ୍ତା ବିଜ୍ଞାନର ଏହି ସହଜ ସମାଧାନକୁ ଗ୍ରହଣ କରିପାରିଲେ । ଆଜିର ଯୁଗରେ ସ୍ୱାମୀ ପଛେ ମରୁ, ସିନ୍ଦୁରଟୁଣୀ ରହୁ ହେଉ, ଏହି ଧାରଣା ଆଦୌ ଶୋଭନୀୟ ନୁହେଁ ।

ଏକ ଲିପି ନ ହେଲେ ଆମର ଅସୁବିଧା କଣ ଭାବିବା କଥା । ଅନେକ ଓଡ଼ିଆ ଲୋକ ବଙ୍ଗଳା ଓ ହିନ୍ଦୀ ବୁଝିପାରନ୍ତି, ମାତ୍ର ଲେଖି ବା ପଢ଼ିପାରନ୍ତି ନାହିଁ । ତାର କାରଣ ହେଉଛି ଲିପି । ଓଡ଼ିଆ ବାଇଗଣମଞ୍ଜି ଅକ୍ଷର, ବଙ୍ଗଳା କୋଣଭଙ୍ଗା ଓ ହିନ୍ଦୀ ମୁଣ୍ଡକଟା (ଆମ ଦୃଷ୍ଟିରୁ) ଅକ୍ଷର । ସୁତରାଂ ଏହି ଭାଷାମାନଙ୍କର ଲିପି ଯଦି ଏକା ଥାନ୍ତା, ଯେଉଁ ଲୋକ ବଙ୍ଗଳା ବୁଝିଛନ୍ତି ସେ ତ ନିଶ୍ଚୟ ସହଜରେ ପଢ଼ିପାରନ୍ତେ, ଯେ ବି ନ ପଢ଼ିଛନ୍ତି ସେ ସହଜରେ ପଢ଼ିବାପାଇଁ ମନ ବଳାନ୍ତେ । ସେହି ଦୃଷ୍ଟିରୁ ଦେଖିଲେ ଭାରତର ଯେତେ ଭାଷା ଅଛି ସମସ୍ତଙ୍କୁ ଏକ ଲିପିରେ, ଧରନ୍ତୁ ଦେବନାଗରୀ ଲିପିରେ ଲେଖିଲେ ଜଣେ ଅନ୍ୟ ଲୋକର ଭାଷା ପଢ଼ିବାପାଇଁ ଆଗ୍ରହୀ ହୁଅନ୍ତେ । ଇଂରାଜୀ ଅକ୍ଷର ଯେମିତି ଫ୍ରେଞ୍ଚ ଅକ୍ଷର ସେମିତି ହୋଇ-ଥିବାରୁ ଇଂରେଜ ଲୋକ ସହଜରେ ଫ୍ରେଞ୍ଚ ପଢ଼ିବାକୁ ମନ ବଳାନ୍ତି,

ଅଥଚ ରୁଷିଆ ଓ ଚୀନର ଲିପି ଦେଖି ସେମାନେ ଡରଯାନ୍ତି । ଆମ ଓଡ଼ିଆ ଗୋଲ ଅକ୍ଷରକୁ ଅନେକ ଅଣଓଡ଼ିଆ ଭାରି ଭୟ କରନ୍ତି, ଯେମିତି ଆରବୀ, ପାରସୀ ଲିପି ଦେଖି ଆମ ମୁଣ୍ଡ ଝେଙ୍କାଇଏ । ତା ଛଡ଼ା ଯଦି ଦେବନାଗରୀପ୍ରସ୍ତୁତ ହିନ୍ଦୀ ଲିପି ସର୍ବଜନ ହୁଅନ୍ତା, ତେବେ ବଙ୍ଗଳା, ଓଡ଼ିଆ, ତେଲୁଗୁ, ତାମିଲ ସମସ୍ତଙ୍କର ଭିନ୍ନ ଭିନ୍ନ ଟାଇପ୍‌ରାଇଟର ଓ ଶର୍ଟହାଣ୍ଡ୍ ପ୍ରଣାଳୀ କରିବାକୁ ପଡ଼ନ୍ତା ନାହିଁ । ଭିନ୍ନ ଭିନ୍ନ ଲିପିରେ ଟାଇପରାଇଟର ତିଆରି କରିବା ଓ ଚାଲୁ କରିବା କେତେ କଠିନ ତା ପ୍ରତ୍ୟେକ ସରକାର ଅନୁଭବ କରୁଥିବେ । ସୁତରାଂ ସାରା ପୃଥିବୀପାଇଁ ରୋମାନ୍ ଲିପି ହେଉ ବା ନ ହେଉ, ସ୍ୱଦେଶୀ ବୋଲି ଭାରତୀୟ ଭାଷାରେ ତା ପ୍ରଚଳିତ ହେଉ ବା ନ ହେଉ, ସାରା ଭାରତପାଇଁ ଏକ ଲିପି ହୋଇପାରିଲେ ଅନ୍ୟାନ୍ୟ ପ୍ରାଦେଶିକ ଭାଷାଶିକ୍ଷାର ପଥ ସୁଗମ ଓ ପରିଶ୍ରମରହିତ ହୁଅନ୍ତା ।

ଏ ସମ୍ପର୍କରେ ମୁଁ ଶ୍ରୀଯୁକ୍ତ ମନମୋହନ ଚୌଧୁରୀଙ୍କ ସଙ୍ଗେ ଆଲୋଚନା କରି ଦେଖିଛି, ସେ ଭାବୁଛନ୍ତି, ପରିଶେଷରେ ସେହି ଦେବନାଗରୀ ଲିପିକୁ ସର୍ବଭାରତୀୟ ଲିପି ଭାବରେ ନିଆଯାଇପାରିବ । ଟାଇପ ଦୃଷ୍ଟିରୁ (ଯାହା ଏଠାରେ ମୁଁ ବିଚାର କରିବାକୁ ଯାଉ ନାହିଁ) ଦିନ ଆସୁଛି ଯେତେବେଳେ ଓଡ଼ିଆ ଅକ୍ଷରକୁ ଗୋଲ କରି ରଖା ନ ଯାଇ ତାର ଉପର ଭାଗକୁ ଚେପଟା ବା ପେଟୁଆ କରିଦିଆଯିବ । ଫଳରେ ତା ଦେବନାଗରୀ ପରି ଦେଖାଯିବ । ଏପର୍ଯ୍ୟନ୍ତ ଯଦି କଥା ଯାଏ, ତେବେ ଦେବନାଗରୀ ଲିପି ନେଲେ କ୍ଷତି କଣ ? ଏବେ ବି ଆନ୍ତର୍ଜାତିକବାଦୀମାନେ କହୁଛନ୍ତି ସାରା ପୃଥିବୀର ସମସ୍ତ ଭାଷାମାନଙ୍କ ପାଇଁ ରୋମାନ୍ ଲିପି ନିଆଯାଉ । କାମାଲପାଶା ତୁର୍କୀରେ ଯାହା କରିଛନ୍ତି, ତାହା ଏ ଦେଶରେ କାହିଁକି, ସେ ଦେଶରେ ବା ସାରା ପୃଥିବୀରେ ବି ହୋଇପାରିବ ନାହିଁ । ଯହିଁରୁ ମନୁଷ୍ୟ ଜାତିକୁ ସବୁଠାରୁ ବେଶୀ ସୁବିଧା ମିଳିବ ତାକୁହିଁ ଗ୍ରହଣ କରିନେବା ବୋଧହୁଏ ମନୁଷ୍ୟର କଲ୍ୟାଣକର ହେବ । ଭାଷାରାଜ୍ୟରେ ଯାହା ହେଉ, ଲିପିରାଜ୍ୟରେ ମନୁଷ୍ୟଜାତି ଏକ ଲିପି ଗ୍ରହଣ କରିପାରିଲେ ବହୁ

ଅସୁବିଧା ଅପେ ଆପେ ଘୁଞ୍ଚିଯାନ୍ତା । ସମଗ୍ର ମାନବଜାତି ଯଦି ଏକଭାଷୀ ହୋଇଥାନ୍ତେ, ତେବେ ମନୁଷ୍ୟର ଚିନ୍ତା ଓ କର୍ମଧାରା ବହୁ ପରମାଣରେ ଏକପ୍ରକାର ହୋଇଥାନ୍ତା ବୋଲି ଅନୁମାନ କରାଯାଏ । ବୁଦ୍ଧିମାନ୍ ମନୁଷ୍ୟମାନେ ବହୁବିଧ ପ୍ଲାନିଂଭିତରେ ଭାଷା ପ୍ଲାନିଂ କରିବାପାଇଁ ଭୁଲି ନାହାନ୍ତି । ମାତ୍ର ଏହିସବୁ ପ୍ଲାନିଂକୁ ଲୋକେ ସହୃଦୟତାର ସହିତ ବିଚାର କଲେ ଅନେକ ଲାଭ ହେବ ବୋଲି ଆଶା କରାଯାଏ ।

[ପୁଣାଠାରେ ଅନୁଷ୍ଠିତ 'Summer
School' (ଗ୍ରୀଷ୍ମ ସ୍କୁଲ)ରେ ପ୍ରଦତ୍ତ
ଭାଷଣର ସାରାଂଶ ।
(ଜୁନ ୮, ୧୯୫୪) ]

# ମଣିଷଜାତିର ଭାଷା—ଏସ୍ପାରେଣ୍ଟୋ

‘ମଣିଷର ମୁଣ୍ଡବ୍ୟଥା ବ୍ୟାକରଣ’ ପ୍ରବନ୍ଧରେ ଏସ୍ପାରେଣ୍ଟୋ ସମ୍ପର୍କରେ କେତେକ କଥା କୁହାଯାଇଛି । ଏହି ପ୍ରବନ୍ଧରେ ତାକୁ ଟିକିଏ ଅଧିକ ମାତ୍ରାରେ ବିସ୍ତାର କରି ଦିଆଯାଇଛି ମାତ୍ର । ଏସ୍ପାରେଣ୍ଟୋର ଦୃଷ୍ଟିକୋଣ ଏଥିରୁ ସହଜରେ ଧରା ପଡ଼ିବ ।

ମୟୂରଭଞ୍ଜ ଲୋକେ କହନ୍ତି ‘ବାସ୍’ (bus) । ଆମେ ହସୁଁ । ହସିଲେ ବି ସେମାନେ ଠିକ୍ । ବ୍ରହ୍ମପୁରରେ କହୁଛନ୍ତି ‘ଲ’ (law) । କଥାଟା ନିତାନ୍ତ ଭୁଲ୍ । ସେଥିରେ ବି ଆମକୁ ହସ ମାଡ଼େ । ପର ତୁଣ୍ଡରେ ଭିନ୍ନଭିନ୍ନ ଉଚ୍ଚାରଣ ଶୁଣି ମନେ ମନେ ହସିବା ଗୋଟିଏ ସାଧାରଣ ପ୍ରବୃତ୍ତି । ବଡ଼ଲୋକଙ୍କ ବକ୍ତୃତା ଶୁଣୁ, କଥା ବି ଶୁଣୁ, ନାକ ଟେକୁ—ଏଡ଼େ ବଡ଼ ଲୋକ ଏମିତି କଣ କହୁଛନ୍ତି ? ଗୋଟିଏ ସମୁଦାୟ ଭାଷା କିମ୍ବା ଜାତି ସମ୍ପର୍କରେ ମଧ୍ୟ ଆମେ ଏଇ କଥା କହିଥାଉ । ଉଚ୍ଚାରଣ କଥା ଛାଡ଼ିଦେଇ ବ୍ୟାକରଣ କଥା ଦେଖିଲେ ତ ଆହୁରି ଆଶ୍ଚର୍ଯ୍ୟ ହେବା କଥା । ଓଡ଼ିଆରେ ଯେଉଁ ‘ଦାରା’ ସ୍ତ୍ରୀଲିଙ୍ଗ, ସଂସ୍କୃତରେ ସେ ପୁଂଲିଙ୍ଗ । ଇଂରାଜୀରେ ଯେଉଁ ‘ଚଉକି’ କ୍ଲୀବଲିଙ୍ଗ, ଫ୍ରେଞ୍ଚରେ ତା ସ୍ତ୍ରୀଲିଙ୍ଗ । ଏହାଠାରୁ ଆଉ ଆଶ୍ଚର୍ଯ୍ୟ କଥା କଣ ହୋଇପାରେ ? ସତରେ ଯାହା କହନ୍ତି ‘ତମେ ଯାକୁ କହ ଗାଈ ବଳଦ ଆମେ ତାକୁ କହୁ କଂସା’ ଛଡ଼ା ଏହା ଆଉ କଣ ହୋଇପାରେ ? ଭାଷା-ରାଜ୍ୟର ଏହି ବିଭ୍ରାଟ ସମ୍ପର୍କରେ ମଣିଷ ଅନେକ ଦିନ ପର୍ଯ୍ୟନ୍ତ ମୁଣ୍ଡ ଖେଳେଇ ନ ଥିଲା । କିନ୍ତୁ ଆଜି ପରିବର୍ତ୍ତିତ ଦୁନିଆରେ ଅବସ୍ଥା ସ୍ୱତନ୍ତ୍ର ହୋଇପଡ଼ିଛି ।

ଏହି ବିଶାଳ ବିଶ୍ୱକୁ ବିଜ୍ଞାନ ଅତି ଛୋଟ କରିଦେଇଛି । ସବୁ କଥା ଆଜି ଆମେ ଆନ୍ତର୍ଜାତିକ ଦୃଷ୍ଟିକୋଣରୁ ବିଚାର କରୁଛୁ । ପୃଥିବୀ ଛୋଟ

ହେବା ସଙ୍ଗେ ସଙ୍ଗେ ଭାଷା ସମସ୍ୟା ଏତେ ବଡ଼ ହୋଇଯାଇଛି ଯେ ପ୍ରତି ମୁହୂର୍ତ୍ତରେ ଏହା ରାଜନୀତକମାନଙ୍କର ମୁଣ୍ଡବ୍ୟଥାର କାରଣ ହୋଇ-ପଡ଼ୁଛି । U. N. O. ସଭାସମିତିମାନଙ୍କରେ ଇଂରାଜୀଠାରୁ ଏଫିକ୍ ପର୍ଯ୍ୟନ୍ତ ଭାଷା ଶୁଣିବା ଓ କହିବାପାଇଁ ଲୋକ ଅଛନ୍ତି । ତେଣୁ ପ୍ରତ୍ୟେକ ଭାଷାର ଅନୁବାଦକ ସେଠି ଅଛନ୍ତି । ଯେ ଯେଉଁ ଭାଷାରେ ବକ୍ତୃତା ଦିଅନ୍ତୁ, ସଙ୍ଗେ ସଙ୍ଗେ ତାର ଅନୁବାଦ ଇଂରାଜୀରେ ହୋଇଯାଏ । ମାତ୍ର ମନେ ରଖିବାକୁ ହେବ, ଅନୁବାଦରେ ଅନେକ କଥା ଅବୁଝା ରହିଯାଏ, ଅନେକ ସମୟରେ ପ୍ରକୃତ ଅର୍ଥ ଅସ୍ପଷ୍ଟ ହୋଇଯାଏ । ତେଣୁ ଭାଷାବିତ୍‌ମାନେ ଗୋଟିଏ ନୂତନ ଆନ୍ତର୍ଜାତିକ ଭାଷାସୃଷ୍ଟିର ସ୍ୱପ୍ନରେ ବିଭୋର ଅଛନ୍ତି । ସେ ସ୍ୱପ୍ନ ଆଂଶିକ ସତ୍ୟ ହେଲେ ମଧ୍ୟ ପୃଥିବୀଉପରେ ତାର ପ୍ରଭାବ ବଡ଼ କ୍ଷୀଣ । କାରଣ କୌଣସି ଜାତିର ଆଦରୁ ଓ ଅନ୍ତରରୁ ଯେଉଁ ଭାଷାର ଜନ୍ମ ନୁହେଁ, ତାକୁ ନିଜର କରି ଗ୍ରହଣ କରିବା କଠିନ । ଏହିଭଳି ଯେଉଁ ମଣିଷଜାଆର କୃତ୍ରିମ ଭାଷା ମଝିରେ ମଝିରେ ସୃଷ୍ଟି ହେଉଛି, ସେ ସମ୍ପର୍କରେ କେବଳ ଗୋଟିଏ ଦୁଇଟି କଥା ପ୍ରବନ୍ଧରେ କୁହାଯାଇଛି ।

ଏହି ଷାଠିଏ ସତୁରି ବର୍ଷଭିତରେ ଚାରି ପାଞ୍ଚଟି କୃତ୍ରିମ ଭାଷା, ତିଆରି ହେଲଣି—ଏସ୍ପାରେଣ୍ଟୋ, ଆଇଡ଼ୋ, ଅକ୍‌ସିଡେଣ୍ଟାଲ୍, ନୋଭିଆଲ୍ ଇଣ୍ଟରଲିଙ୍ଗୁଆ, ଭୋଲାପ୍ୟୁକ୍ ପ୍ରଭୃତି । ଏ ସମସ୍ତଙ୍କର ଉଦ୍ଦେଶ୍ୟ ହେଉଛି ପୃଥିବୀଯାକ ଲୋକେ ଆନ୍ତର୍ଜାତିକ କ୍ଷେତ୍ରରେ ଏକ ଭାଷାରେ କଥାବାର୍ତ୍ତା କରିବେ । ଉଦ୍ଦେଶ୍ୟ ହେଉଛି —"The chief obstacle to universal peace, international entente and co-operation is the laek of a common language; the peoples cannot talk to each other, they cannot communicate one to another their benevolent intentions and so remove distrust and fear." ତେଣୁ ଏକ ପୃଥିବୀର ସୁବିଧାରୁ ପରିଚାଳନାପାଇଁ ଏକ ଭାଷା ଦରକାର ବୋଲି କେତେକ ଭାବୁଛନ୍ତି । ଯେତେଗୁଡ଼ିଏ କୃତ୍ରିମ ଭାଷା ସୃଷ୍ଟି

ହୋଇଛି, ସେମାନଙ୍କ ମଧ୍ୟରେ ଏସ୍ପାରେଣ୍ଟୋ ଜଣାଶୁଣା । ଏସ୍ପାରେଣ୍ଟୋର ଆକ୍ଷରିକ ଅର୍ଥ "ଯେ ଆଶା କରେ" (the one who hopes) ।

ଏସ୍ପାରେଣ୍ଟୋ ଭାଷାର ସ୍ରଷ୍ଟା ଜଣେ ଆଖି ଡାକ୍ତର L. Zamenhof; ରୁଷିଆ-ଅଧିକୃତ ପୋଲଣ୍ଡରେ ତାଙ୍କର ଜନ୍ମ । ସେ ଯେଉଁ ଗାଁରେ ଜନ୍ମ ହୋଇଥିଲେ, ସେହି ଗାଁର ସାହିଗୁଡ଼ିକ ବିଭିନ୍ନ ଜାତିଦ୍ୱାରା ଅଧିକୃତ ହୋଇଥିଲା । ତେଣୁ ଗୋଟିଏ ଗାଁର ଗୋଟିଏ ସାହିରେ ଭିନ୍ନ ଭିନ୍ନ ଚାରୋଟି ଭାଷା ଯଥା—ରୁଷିଆ, ଜର୍ମାନୀ, ପୋଲାଣ୍ଡ ଓ ଜିଉ୍ ଭାଷା ଲୋକେ କହୁଥିଲେ । ସେମାନେ ପରସ୍ପରେ ଏକ ଭାଷାରେ କଥା କହିବା ପାଇଁ Dr. L. Zamenhof ଗୋଟିଏ କୃତ୍ରିମ ଭାଷା ଏସ୍ପାରେଣ୍ଟୋ ତିଆରି କଲେ । ସେହି ଭାଷାରେ ୧୯୩୯ ବେଳକୁ ପ୍ରାୟ ୧୦୦,୦୦୦ ଲୋକ କଥାବାର୍ତ୍ତା କରିପାରୁଥିଲେ । ଏହି ଭାଷାରେ ଅନେକ ବହି ମଧ୍ୟ ଅନୂଦିତ ହୋଇଛି ଓ ପତ୍ରପତ୍ରିକା ଛପା ହୋଇଛି । ୧୯୧୪-୧୮ ମହାଯୁଦ୍ଧ ପୂର୍ବରୁ ଅନେକବାର ଆନ୍ତର୍ଜାତିକ ସଭାସମିତିରେ ଏହି ଏସ୍ପାରେଣ୍ଟୋ ଭାଷା ବ୍ୟବହୃତ ହୋଇଛି । ଆନ୍ତର୍ଜାତିକ କ୍ଷେତ୍ରରେ କୃତ୍ରିମ ଭାଷା କହିଲେ ଲୋକେ ଏହି ଏସ୍ପାରେଣ୍ଟୋ ଭାଷା ବୋଲି ବୁଝନ୍ତି ।

ଏହି କୃତ୍ରିମ ମନୁଷ୍ୟସୃଷ୍ଟ ଏସ୍ପାରେଣ୍ଟୋ ଭାଷା କେଉଁ ନୀତିଉପରେ ପ୍ରତିଷ୍ଠିତ,ନିମ୍ନରେ ସେ ସମ୍ବନ୍ଧରେ କେତେକ କଥା କୁହାଯାଇଛି । ପ୍ରଥମ କଥା ହେଉଛି ପୃଥିବୀରେ ପ୍ରଧାନ ପ୍ରଧାନ ଭାଷାମାନଙ୍କର ଅକ୍ଷର ଭିନ୍ନ ଭିନ୍ନ; ତେଣୁ ଇଂରେଜ ଲୋକ ରୁଷିଆ ପଢ଼ିବାପାଇଁ କିମ୍ବା ଓଡ଼ିଆ ଲୋକ ଆରବୀ ପଢ଼ିବାପାଇଁ ସାହସ କରନ୍ତି ନାହିଁ । ସେଥିପାଇଁ ଆନ୍ତର୍ଜାତିକ ଏସ୍ପାରେଣ୍ଟୋରେ ପୃଥିବୀରେ ବହୁଳ ପ୍ରଚଳିତ a b c ରଖା ଯାଇଛି । ମାତ୍ର ବିଭିନ୍ନ ଭାଷାଶିକ୍ଷାପାଇଁ ଭିନ୍ନ ଲିପି ଅପେକ୍ଷା ଭିନ୍ନ ବ୍ୟାକରଣ ଓ ପ୍ରକାଶର ବିଭିନ୍ନ ଭଙ୍ଗୀ ପ୍ରଧାନ ଅନ୍ତରାୟ । ଯେକୌଣସି ଗୋଟିଏ ଭାଷାମଧ୍ୟରେ ବି ଏପରି ବ୍ୟାକରଣଗତ ବ୍ୟତିକ୍ରମ ରହିଛି ଯାହା ଦେଖିଲାମାତ୍ରେ ଲୋକ ଆଶ୍ଚର୍ଯ୍ୟ ନ ହୋଇ ରହିପାରେ ନାହିଁ । ନିୟମ ଯେତିକି ନାହିଁ, ହୁଏତ ବ୍ୟତିକ୍ରମ ତାଠୁ ବେଶୀ । ଗୋଟିଏ ଦୁଇଟି ଭାଷାର ଉଦାହରଣ ନିଆଯାଉ ।

| ଇଂରାଜୀ ବଚନ | ଏକବଚନ | ବହୁବଚନ |
|---|---|---|
| | Pen | Pens (s) |
| | Bench | Benches(es) |
| | Deer | Deer (o) |

ଇଂରାଜୀ ଭାଷାରେ ବହୁବଚନ ତିଆରି କରିବାର ପନ୍ଥା ଦେଖି ଆଶ୍ଚର୍ଯ୍ୟ ନ ହେବ କିଏ ? s ଅଛି, es ଅଛି, ପୁଣି ଗୋଟିଏ ଜାଗାରେ କିଛି ନାହିଁ, ଅଛି କେବଳ ଶୂନ୍ୟ ।

ସେହି ଭଳି ଲିଙ୍ଗ ଉଦାହରଣ ନିଆଯାଉ—

| ଶବ୍ଦ | ପ୍ରକୃତ ଲିଙ୍ଗ | ବ୍ୟାକରଣ ଲିଙ୍ଗ |
|---|---|---|
| ଦାରାଃ | ସ୍ତ୍ରୀ | ପୁଂଲିଙ୍ଗ (ବହୁବଚନ) |
| ଉପାନତ୍ (ଯୋତା) | କ୍ଳୀବ | ସ୍ତ୍ରୀଲିଙ୍ଗ |

ଯେ ପ୍ରକୃତରେ ନାରୀ, ଭାଷା ତାକୁ ପୁରୁଷ କରେ ଓ ଯେ କ୍ଳୀବ ତାକୁ ନାରୀତ୍ୱର ମହିମାରେ ମଣ୍ଡିତ କରେ । ଶିକ୍ଷାପ୍ରୟାସୀ ଶିଶୁ ଏସବୁ ଦେଖି ଆଶ୍ଚର୍ଯ୍ୟ ହୁଏ । ପ୍ରକୃତରେ ସେ ଯାହାକୁ ସ୍ତ୍ରୀ ବୋଲି ଭାବୁଛି, ତାକୁ ପୁଂଲିଙ୍ଗ କହିବ କେମିତି ? ତା ଛଡ଼ା ତ ବ୍ୟାକରଣରେ କାରକ, ବିଭକ୍ତି, ପୁରୁଷ ନାନା ବିଧାନ ଅଛି । ଏହିସବୁ ଜଟିଳତାକୁ ଉଠାଇଦେଇ ଏସ୍ପାରେଣ୍ଟୋ ଗୋଟିଏ କୃତ୍ରିମ ସରଳ ଭାଷାରୂପେ ସୃଷ୍ଟି ହୋଇଛି । ଧରନ୍ତୁ ଏସ୍ପାରେଣ୍ଟୋରେ ଅତୀତକାଳ ବୁଝାଇବାପାଇଁ କେବଳ a ପ୍ରତ୍ୟୟ ନିଆଯାଉ କିମ୍ବା ଭବିଷ୍ୟତ ବୁଝାଇବାପାଇଁ i ପ୍ରତ୍ୟୟ ନିଆଯାଉ । ଅତୀତ ଅର୍ଥରେ eat ଏସ୍ପାରେଣ୍ଟୋ ଭାଷାରେ eat/a

| | |
|---|---|
| feed | feed/a |
| look | look/a |

ହେଉ । ଭବିଷ୍ୟତ ଅର୍ଥରେ eati, feedi ଓ looki ହେଉ । କ୍ରିୟାର ଅନ୍ୟାନ୍ୟ କାଳଚିହ୍ନକୁ ଏମିତି ଗୋଟିଏ ଗୋଟିଏ

ପ୍ରତ୍ୟୟଦ୍ୱାରା ଚିହ୍ନିତ କରାଯାଇପାରେ । ଏହି ମତରେ ସରଳୀକୃତ ଗୋଟିଏ କୃତ୍ରିମ ବିଶ୍ୱଭାଷା ଏସ୍ପାରେଣ୍ଟୋ ଆନ୍ତର୍ଜାତିକ କ୍ଷେତ୍ରରେ ୧୯୦୯ ଖ୍ରୀଷ୍ଟାବ୍ଦରୁ ବ୍ୟବହୃତ ହୋଇ ଆସୁଛି । ଏପରି ଭାଷାର ଭବିଷ୍ୟତ କିଣ ଏପର୍ଯ୍ୟନ୍ତ ଜଣାଯାଇ ନାହିଁ । ବର୍ତ୍ତମାନ U. N. O.ରେ ଏ ଭାଷାର ପ୍ରଚଳନ ଦେଖାଯାଉ ନାହିଁ , ବରଂ ଇଂରାଜୀ ତାର ସ୍ଥାନ ନେଉଛି । ହୁଏତ କଳ୍ପିତ Basic English ଭବିଷ୍ୟତରେ ଏକ ଏସ୍ପାରେଣ୍ଟୋରେ ପରିଣତ ହୋଇପାରେ ।



# ହସ୍ତାକ୍ଷର ବିଜ୍ଞାନ

ମଣିଷର ମନଟାକୁ ଖାଲି ଆଖିରେ ଦେଖି ପାରୁଥିଲେ ଦୁନିଆର୍ ଅନେକ ଲାଞ୍ଛ, ମିଛ, ଜାଲ, ଜୁଆଚ୍ଚୋର କମିଯାଉଥାନ୍ତା । ଅନ୍ୟ ପକ୍ଷରେ ଭିନ୍ନ ଭିନ୍ନ ଲୋକଙ୍କର ମନୋବୃତ୍ତି ଆଖିରେ ଦେଖିପାରି ସେମାନଙ୍କ ଯୋଗ୍ୟତାନୁଯାୟୀ ବ୍ୟବହାର ବି କରାଯାଇପାରନ୍ତା । କିନ୍ତୁ ମଣିଷ ଯେତେବେଳେ ଦୁନିଆରେ ସବୁ ଜୟ କରିବାକୁ ବାହାରିଛି, ମନ କଥାଟା ସେ ଖୋଲିବାକୁ ରାଜି ନୁହେଁ । ଏଥିପାଇଁ ମନସ୍ତତ୍ତ୍ୱ ବିଜ୍ଞାନର ସୃଷ୍ଟି ବୋଧହୁଏ । ଜଣେ ଲୋକକୁ ଚିହ୍ନିବା ପାଇଁ ତାର ଭିତର ମନଟି ଜାଣିବା ଯେମିତି ଦରକାର, ତାର ଗୁଲି, ଚଲଣ, ଗୃହିଣୀ, ଏପରିକି ପାନଖିଆ, ଲୁଗାପିନ୍ଧା ପର୍ଯ୍ୟନ୍ତ ଲକ୍ଷ୍ୟ କରିବାର କଥା । ମନୁଷ୍ୟଚରିତ୍ରର ଗମ୍ଭୀର ତତ୍ତ୍ୱ ଜାଣିବାପାଇଁ ଆଧୁନିକ ଦୁନିଆରେ ଆଉ ଗୋଟିଏ ଉପାୟ ହେଉଛି ଲୋକର ହସ୍ତାକ୍ଷର ଅଧ୍ୟୟନ କରିବା । ହସ୍ତାକ୍ଷରବିଜ୍ଞାନୀମାନେ ଲୋକଙ୍କ ହସ୍ତାକ୍ଷର ଦେଖି ଚରିତ୍ର କହିଦେବେ ବୋଲି ଚେଷ୍ଟା ଚଳାଇଛନ୍ତି । ମୁସ୍କିଲ କଥା ।

ମହାତ୍ମା ଗାନ୍ଧି କହନ୍ତି ହସ୍ତାକ୍ଷର ଭଲ ନ ହେଲେ ଶିକ୍ଷା ଅସମ୍ପୂର୍ଣ୍ଣ । ଅବଶ୍ୟ ସେ ଯେଉଁ ଦୃଷ୍ଟିରୁ କହିଥିଲେ ଏଠି ସେ ଦୃଷ୍ଟିରୁ ହସ୍ତାକ୍ଷର କଥା ବିଚାର କରାଯାଉ ନାହିଁ । କିନ୍ତୁ ହସ୍ତାକ୍ଷରରୁ ମଣିଷଚରିତ୍ର କେମିତି ଜାଣିବାକୁ ହେବ ତାହାହିଁ ହସ୍ତାକ୍ଷରବିଜ୍ଞାନର ଲକ୍ଷ୍ୟ । ହସ୍ତାକ୍ଷରବିଜ୍ଞାନ ନିତାନ୍ତ ନୂତନ, ମୋଟେ ଷାଠିଏ ସତୁରି ବର୍ଷର କଥା । ଇଂଲଣ୍ଡ ଅପେକ୍ଷା ଫ୍ରାନ୍ସରେ ଏହାର ଗବେଷଣା ବେଶୀ । ଭାଷାତତ୍ତ୍ୱବିତ୍‌ମାନେ କହନ୍ତି, "You open your mouth and I can tell you what you are." କିନ୍ତୁ ହସ୍ତାକ୍ଷରବୈଜ୍ଞାନିକମାନଙ୍କର ମଣିଷ ଚିହ୍ନିବାପାଇଁ

ପାଚି ଫିଟାଇ କଥା କହିବାର ଦରକାର ପଡ଼େନା । ମଣିଷ ଧାଡ଼ିଏ ହସ୍ତାକ୍ଷର ଲେଖିଦେଲେ ସେଥିରୁ ସେମାନେ ଲୋକଚରିତ୍ର ଜାଣିପାରିବେ । ସେମାନେ କହନ୍ତି, "Every stroke of handwriting expresses a whole life." ହାତଚଣା ଗାରଟାଏ ଦେଖି ବି ମଣିଷଚରିତ୍ର ବିଚାର କରାଯାଇପାରେ । ଏକ ଦୃଷ୍ଟିରୁ ହସ୍ତାକ୍ଷରବିଜ୍ଞାନ ନୂତନ ହେଲେ ବି ବହୁ ଯୁଗରୁ ଲୋକେ ସେ ବିଷୟରେ ଚିନ୍ତା କରି ଆସିଛନ୍ତି । ୧୦୬୦ ଖ୍ରୀଷ୍ଟାବ୍ଦର ଚୀନ ଦାର୍ଶନିକ କୋଉକୋମଙ୍କଠାରୁ ଆରମ୍ଭ କରି, ଲିବନିଜ୍, ଗେଟେ ଓ ଆଧୁନିକ ପଦାର୍ଥବିତ୍ ଆଇନ୍‌ଷ୍ଟାଇନଙ୍କ ପର୍ଯ୍ୟନ୍ତ ସମସ୍ତେ ହସ୍ତାକ୍ଷର ବିଷୟରେ ଅଳ୍ପ ବହୁତ ଲେଖିଛନ୍ତି ।

ହସ୍ତାକ୍ଷରବିତ୍‌ମାନଙ୍କର ମତ ହେଉଛି ଯେ ପ୍ରତ୍ୟେକ ମନୁଷ୍ୟର ଯେମିତି ଗୋଟିଏ ସ୍ୱତନ୍ତ୍ର ମୁହଁ ଅଛି, ସେମିତି ପ୍ରତ୍ୟେକ ଲୋକର ଏକ ସ୍ୱତନ୍ତ୍ର ହସ୍ତାକ୍ଷର ଅଛି । କାହାରି ସହିତ କାହାରି ମିଶିବାର ସମ୍ଭାବନା ନାହିଁ । ଭିନ୍ନ ଭିନ୍ନ ଚେହେରାର ଇଂରାଜ ଲୋକଙ୍କୁ ଦେଖି ଆମେ ସେମାନଙ୍କୁ ଇଂରାଜ ଜାତିର ଲୋକେ ବୋଲି ଜାଣୁ । ଓଡ଼ିଆ, ବଙ୍ଗାଳୀ, ହିନ୍ଦୁସ୍ଥାନୀ, ଯେକୌଣସି ଜାତିର ଲୋକ ହେଉ, ଆମେ ଗୋଟିଏ ଜାତିର ଲୋକକୁ ଅନ୍ୟ ଜାତିଠାରୁ ତଫାତ୍ ବୋଲି ଜାଣିପାରୁ । ମାତ୍ର ଗୋଟିଏ ଜାତିଭିତରେ ଯେତେ ଲୋକ ଅଛନ୍ତି ସେମାନେ ପରସ୍ପରଠାରୁ କୌଣସି ନା କୌଣସି ହିସାବରେ ଭିନ୍ନ । ସେହିପରି ବ୍ୟକ୍ତିବିଶେଷଙ୍କର ହସ୍ତାକ୍ଷର ତଫାତ୍ ଥିଲେ ମଧ୍ୟ ପ୍ରତ୍ୟେକ ଜାତିର ହସ୍ତାକ୍ଷରରେ ଏକ ସ୍ୱାତନ୍ତ୍ର୍ୟ ଅଛି । ଭାରତୀୟ ଇଂରାଜୀ ହସ୍ତାକ୍ଷର ସାହେବୀ ହସ୍ତାକ୍ଷରଠାରୁ ତଫାତ୍ । ଏମିତି କି ସ୍ତ୍ରୀଙ୍କ ହସ୍ତାକ୍ଷର ପୁରୁଷଙ୍କଠାରୁ ତଫାତ୍ । ସେଥିପାଇଁ ହସ୍ତାକ୍ଷର ପଢ଼ିବାପାଇଁ ହେଲେ ବହୁ ଅନ୍ୟାନ୍ୟ ବିଜ୍ଞାନର ଆଶ୍ରୟ ନେବାକୁ ହୁଏ; ଯଥା—ଶରୀର-ବିଜ୍ଞାନ, ମନୋବିଜ୍ଞାନ ଓ ଅପରାଧବିଜ୍ଞାନ । ଆଧୁନିକ ବୈଜ୍ଞାନିକ ଶିକ୍ଷା ଏତେ ଜଟିଳ ହୋଇ ପଡ଼ୁଛି ଯେ ବହୁ ଅନ୍ୟାନ୍ୟ ବିଜ୍ଞାନର ଆଶ୍ରୟ ନ ନେଇ କେବଳ ଗୋଟିଏ ବିଭାଗ ସ୍ୱତନ୍ତ୍ରଭାବରେ ଅନୁଧାବନ କରିବା ଅସମ୍ଭବ ।

ଆମର ଯେମିତି ହାତ ଦେଖି ଲୋକେ ଭବିଷ୍ୟତ କଥା କହିପାରନ୍ତି, ସେମିତି ଅନେକ ଲୋକ ହସ୍ତାକ୍ଷର ଦେଖି ମନୁଷ୍ୟର ଭାଗ୍ୟ ବିଗ୍ଚର କରି ଅନେକଙ୍କୁ ଠକନ୍ତି । ସେଥିପାଇଁ ଅନେକ ଦେଶରେ ଏହି ବ୍ୟବସାୟ କରିବାପାଇଁ ମନା ଅଛି । କିନ୍ତୁ ହସ୍ତାକ୍ଷରବିଜ୍ଞାନର ପ୍ରକୃତ ଆବଶ୍ୟକତା ଅନେକ କ୍ଷେତ୍ରରେ ଅଛି । ଛାତ୍ରମାନଙ୍କର ଚରିତ୍ର-ସ୍ୱାତନ୍ତ୍ର୍ୟ ଅଧ୍ୟୟନ କରିବାପାଇଁ ହସ୍ତାକ୍ଷର ପ୍ରଧାନ ସହାୟ । ଗୋଟିଏ ସ୍କୁଲରେ ବା ଏକ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ରହି ପ୍ରଥମେ ପ୍ରଥମେ ବହୁତ ପିଲା ଏକପ୍ରକାର ହସ୍ତାକ୍ଷର ଲେଖିବାକୁ ଆରମ୍ଭ କରିପାରନ୍ତି । ମାତ୍ର ବୟସବୃଦ୍ଧି ଓ ଚରିତ୍ରର ପରିବର୍ତ୍ତନ ସଙ୍ଗେ ସଙ୍ଗେ ତାର ଛାୟା ହସ୍ତାକ୍ଷରରେ ପ୍ରତିଫଳିତ ହୁଏ ବୋଲି ହସ୍ତାକ୍ଷରବିତ୍‌ମାନେ କହନ୍ତି । ସାମାନ୍ୟ ଗାରଟିଏ କିମ୍ବା ମାତ୍ରାଟିଏ ଦେଖି ତାର ଦୈର୍ଘ୍ୟ, ପ୍ରସ୍ଥ, ଭଙ୍ଗୀ, ଗଭୀରତା, ଆରମ୍ଭ ଓ ଶେଷ ନାନା କଥା ବିଗ୍ଚର କରି ଲେଖକର ଚରିତ୍ର ଠିକ୍ କରାଯାଏ—ସେ ଅଳସ କି ନିରଳସ, ତୀକ୍ଷ୍ଣ କି ନିର୍ବୋଧ, ନେତା ନା ନେୟ ।

ଓକିଲ ଓ ପୋଲିସ ଅଫିସମାନଙ୍କରେ ହସ୍ତାକ୍ଷରବିଜ୍ଞାନର ଆବଶ୍ୟକତା ଅଛି । ଅପରାଧୀମାନଙ୍କୁ ଚିହ୍ନିବାପାଇଁ ଓ ସେମାନଙ୍କର ମନସ୍ତତ୍ତ୍ୱ ଜାଣିବା-ପାଇଁ ଏହା ଏକ ପ୍ରଧାନ ସହାୟ । ଯେଉଁ ଅନୁଷ୍ଠାନମାନଙ୍କରେ ଭବିଷ୍ୟତ ଜୀବିକାନିର୍ବାହପାଇଁ ଉପଦେଶ ଦିଆଯାଏ, ସେଠି ମଧ୍ୟ ଲୋକ ଚିହ୍ନିବା-ପାଇଁ ଏହି ବିଜ୍ଞାନ ଆବଶ୍ୟକ ହୁଏ । ବଡ଼ ବଡ଼ ଫ୍ୟାକ୍ଟ୍ରି, ବ୍ୟାଙ୍କ ଓ ଅଫିସରେ ଚାକିରି ଦେଲାବେଳେ ନିଜ ହାତ ଅକ୍ଷରରେ ଦରଖାସ୍ତ ଦେବା ପାଇଁ ଅନୁରୋଧ କରାଯାଇଥାଏ । ଅନେକ କ୍ଷେତ୍ରରେ ଚାକିରି ନିଯୁକ୍ତି ପୂର୍ବରୁ ହସ୍ତାକ୍ଷରବିଜ୍ଞାନୀମାନେ ଏହି ଦରଖାସ୍ତର ହସ୍ତାକ୍ଷର ଯାଞ୍ଚ କରନ୍ତି । ନିହାତି ଦକ୍ଷ ବୈଜ୍ଞାନିକ ନ ହେଲେ ହୁଏତ ଭୁଲ୍ ଲୋକ ବାଛି ଠକାମିରେ ପଡ଼ିଯିବାର ସମ୍ଭାବନା ଥାଏ । ମୋଟ ଉପରେ ଲୋକଚରିତ୍ର ନିର୍ଦ୍ଧାରଣ କରିବାପାଇଁ ହସ୍ତାକ୍ଷର ନାନାଭାବରେ ବ୍ୟବହୃତ ହୁଏ ।

ସୁନ୍ଦର ପରିଷ୍କାର ହସ୍ତାକ୍ଷରରୁ ଜଣକର ଚରିତ୍ର ଭଲ ବୋଲି କହି ହେବ ନାହିଁ । କାରଣ ଅନେକ ସମୟରେ ଚୋର ବି ସାଧୁ ବେଶରେ ରହିଥାଏ । ବାଘରୂପୀ ହେଟାବାଘକୁ ଚିହ୍ନିବା ବି କଠିନ ହୁଏ । ହସ୍ତାକ୍ଷର କଥା ଠିକ୍ ସେମିତି । ମାତ୍ର ଭିନ୍ନ ଭିନ୍ନ ପ୍ରକାରର ହସ୍ତାକ୍ଷରଭିତରେ ଚରିତ୍ରର ବହୁ ଇଙ୍ଗିତ ଲୁକ୍କାୟିତ ଥାଏ । ତାହା ଅଧ୍ୟୟନ କରିବାପାଇଁ ବହୁତ ସମୟ ଲାଗେ । ସବୁ କାମକୁ ସୁନ୍ଦର କରିବାରେ ଯେମିତି ଚରିତ୍ର ଦରକାର ସେମିତି ହସ୍ତାକ୍ଷରକୁ ସୁନ୍ଦର କରିବାପାଇଁ ଅନ୍ତର୍ନିହିତ କେତେକ ସତ୍‌ପ୍ରବୃତ୍ତି ଆବଶ୍ୟକ । ସୁନ୍ଦର ହସ୍ତାକ୍ଷର ଲେଖିବାପାଇଁ କେତେକେ ଚେଷ୍ଟା କରି ହୁଏତ ଲେଖିପାରନ୍ତି ନାହିଁ; କାରଣ ସେମାନେ ମନରେ ଯାହା ଚିନ୍ତା କରନ୍ତି, ଶାରୀରିକ ଅବସ୍ଥା ତାର ଅନୁକୂଳ ହୁଏ ନାହିଁ । ହସ୍ତାକ୍ଷରର ମାତ୍ରାଟାଏ, ଗାରଟାଏ ଭିତରେ ବି ମନ ଓ ଶରୀରର ସାମ୍ୟ ଓ ବୈଷମ୍ୟମାନ ବୈଜ୍ଞାନିକମାନେ ଧରିପାରନ୍ତି । ଚୋର, ଡକାୟତ, ଠକ, କଳାବଜାରି କେମିତି ଜାଲ କରି ସଂଖ୍ୟା ଲେଖି ୩୫କୁ ବି ୮୫ କରି ଲୋକଙ୍କୁ ଠକନ୍ତି ଓ ହସ୍ତାକ୍ଷର-ବିଜ୍ଞାନୀମାନେ ସେମାନଙ୍କୁ କେମିତି ଧରନ୍ତି, ଏ ସମ୍ପର୍କରେ ହସ୍ତାକ୍ଷର-ଚରିତ୍ର-ସମ୍ପର୍କିତ ବହୁ ଚିତ୍ତାକର୍ଷକ ତଥ୍ୟ 'ଗ୍ରାଫୋଲଜି' ସମ୍ବନ୍ଧୀୟ ପୁସ୍ତକମାନଙ୍କରୁ ଦେଖିପାରିବେ ।

---

# ଅନୁବାଦ

ଲଣ୍ଡନରେ ଥିଲାବେଳେ 'ଝଙ୍କାର' ପତ୍ରିକାରେ କେତେକ ବିଙ୍କୋଶୀ ଗଳ୍ପର ଅନୁବାଦ ଦେଖିବାକୁ ପାଇଥିଲି । ଅନୁବାଦ ପଢ଼ି ଅନେକ ଧାଡ଼ି ଅନେକ ସମୟରେ ବୁଝିପାରେନା ବା ଗଳ୍ପପଢ଼ାଶେଷରେ ଗୋଟିଏ ଓଡ଼ିଆ ଲେଖା ଗଳ୍ପ ପଢ଼ିଛି ବୋଲି ମନରେ ଆଶ୍ୱସ୍ତି ଆସେନା । ବରଂ ମନରେ ଗୋଟାଏ ଅବୋଧ ଭାବ ରହିଯାଏ । ସେଦିନପର୍ଯ୍ୟନ୍ତ ମୋର ଧାରଣା ନ ଥିଲି ଯେ ଅନୁବାଦ ଗୋଟିଏ ସ୍ୱତନ୍ତ୍ର ବିଜ୍ଞାନ ହିସାବରେ ପାଶ୍ଚାତ୍ୟ ଦୁନିଆରେ ସ୍ଥାନ ପାଇଛି । ଦେଖିଲି, କଲେଜରେ Techniques of Translation ପଢ଼ା ହେଉଛି । ଅନୁବାଦ ଗୋଟାଏ ଖାମଖିଆଲି କଥା ନୁହେଁ—ଗୋଟାଏ ବିଜ୍ଞାନ, ଗୋଟାଏ ସମସ୍ୟା ।

କଲେଜରେ ଶିକ୍ଷକତା କରିବାପାଇଁ ଫେରି ଆସି ଅନୁବାଦ ସମସ୍ୟାଟା ବେଶୀ ଭାବରେ ଅନୁଭବ କଲି । ଅନୁବାଦ ଆମ ବିଶ୍ୱବିଦ୍ୟାଳୟ ପରୀକ୍ଷା ପଦ୍ଧତିର ଅବିଚ୍ଛେଦ୍ୟ ଅଙ୍ଗ ହେଲେ ମଧ୍ୟ ସେଥିପାଇଁ କୌଣସି ବିଧିବଦ୍ଧ ଶିକ୍ଷା ନାହିଁ । ଓଡ଼ିଆରୁ ସଂସ୍କୃତ, ଇଂରାଜୀ ଯେମିତି ଅନୁବାଦ କରାଯାଏ, ଇଂରାଜୀ ଓ ସଂସ୍କୃତରୁ ସେମିତି ଓଡ଼ିଆ ଅନୁବାଦ କରାଯାଏ । ପରୀକ୍ଷାରେ ଯେପ୍ରକାର ଅନୁବାଦ ହେବାର ନମୁନା ମିଳୁଛି, ସେଥିରେ ସ୍ୱତଃ ଆଶଙ୍କା ହୁଏ ଏଣିକି ଆମର ଭବିଷ୍ୟତ ବଂଶଧରମାନେ ବିଶ୍ୱବିଦ୍ୟାଳୟରୁ ବାହାରି ଅନୁବାଦ ସମସ୍ୟା କେମିତି ମେଣ୍ଟାଇବେ । ଅନୁବାଦ ବିଷୟରେ ଅନ୍ୟ କେହି ଅନୁଭବ କରନ୍ତୁ ନ କରନ୍ତୁ, ବିଶ୍ୱ-ବିଦ୍ୟାଳୟର ବୁଦ୍ଧିଜୀବୀ ଗୁରୁମାନଙ୍କ ସମ୍ପର୍କରେ ଯେଉଁମାନେ ଆସୁଛନ୍ତି, ସେମାନେ ବେଶୀ ଭାବରେ ଅନୁଭବ କରୁଥିବେ । ତା ଛଡ଼ା ଯେକେହି

ପ୍ରଗତଶୀଳ ଓଡ଼ିଆ ନିଶ୍ଚୟ ସ୍ୱୀକାର କରିବେ ଯେ, ଯେକୌଣସି ବିକାଶୋନ୍ମୁଖୀ ସାହିତ୍ୟର ପ୍ରଥମ ପାହାଚ ହେଉଛି ଅନୁବାଦ । ଆଜି ଦୁନିଆରେ ପୃଥିବୀ ଯେମିତ ଗ୍ରେଟ ହୋଇଯାଇଛି, ପ୍ରତିଦିନ ଯେମିତି ନିତ୍ୟ-ନୂତନ ଜ୍ଞାନଧାରା ପ୍ରସରିଯାଉଛି, ତା ସହିତ ତାଲ ଦେଇ ଚାଲିବାକୁ ହେଲେ ପ୍ରଥମେ ବହୁ ଅନୁବାଦ ଦରକାର । ଅବଶ୍ୟ ଅନୁବାଦ ଲେଖିବା ବା ପଢ଼ିବାଭଳି ରୁଚି ଆମର ଏପର୍ଯ୍ୟନ୍ତ ହୋଇନି । ବହି-ପ୍ରକାଶକମାନେ କହନ୍ତି, "ବିଶ୍ୱବିଦ୍ୟାଳୟ ପଢ଼ା ବହି ଲେଖ, ଛପାଇଦେବୁ, ଅନୁବାଦ କିଏ ପଢ଼ିବ ?" ସତ କଥା, କିଏ ପଢ଼ିବ ? ମାତ୍ର ଦିନ ଆସୁଛି ଯେତେବେଳେ ଅନୁବାଦ ଆମର ଏକମାତ୍ର ଅସ୍ତ୍ର ହେବ ବିଶ୍ୱଜ୍ଞାନ ଆହରଣପାଇଁ । ଅନୁବାଦ କେମିତ ଅସୁନ୍ଦର ଓ ପ୍ରମାଦପୂର୍ଣ୍ଣ ହୋଇପାରେ, ତାର କେତୋଟି ନମୁନା ଦେଲେ ବୁଝାଯିବ ଯେ, ନିର୍ଦ୍ଦିଷ୍ଟ ନୀତିନିୟମଭିତରେ ଅନୁବାଦ ନ କଲେ ଅନୁବାଦକ ଲକ୍ଷ୍ୟଭ୍ରଷ୍ଟ ହେବେ ।

ଅତି ସାଧାରଣ କେତୋଟି କଥାର ଅନୁବାଦ କେମିତ ଅସୁନ୍ଦର କରାଯାଇପାରେ ଦେଖିଲେ ହତାଶ ହେବାକୁ ହୁଏ ।

ଇଂରାଜୀ—It was kind of you to go to the trouble of writing to me, specially when you do not need a correspondent.

ଅନୁବାଦ--ଏହା ତୁମର ଦୟା କାମ ଥିଲା, ଯେହେତୁ ତୁମେ ମୋତେ ଲେଖିବାର କଷ୍ଟ ଉଠାଇଛ, ଯେବେ କି ତୁମେ କୌଣସି ସମ୍ପର୍କ ଦରକାର କର ନାହିଁ ।

ଇଂରାଜୀ—I will apply myself more diligently to the study of language.

ଅନୁବାଦ—ମୁଁ ଭାଷା ଶିକ୍ଷା କରିବାପାଇଁ ନିଜକୁ ନିକୁଛିଭାବରେ ଦର୍ଖାସ୍ତ କରିବ ।

ଦ୍ୱିତୀୟ ଉଦାହରଣରୁ ପାଠକ ବେଶ୍ ବୁଝିପାରିବେ ଯେ, ଅନୁବାଦକ apply ଶବ୍ଦର ଆକ୍ଷରିକ ଅର୍ଥକୁ ଏଠାରେ ରଖି କି ଭୁଲରେ ପଡ଼ିଛନ୍ତି ।

ଝଙ୍କାରର ୩୨ଶ ବର୍ଷ ୧ମ ସଂଖ୍ୟା ଅପ୍ରେଲ ୧୯୫୧ରେ ଲିଖିତ 'ଦ୍ୱନ୍ଦ୍ୱ' ଗଳ୍ପରୁ କେତୋଟି ଉଦାହରଣ ଦେଉଛୁ । ପାଠକମାନେ ମୋ ସହିତ ଏକମତ ହେବେ ଯେ ସେ ଅନୁବାଦ ଅବୋଧ ଭାବରେ ଏପରି ଆକ୍ଷରିକ ହୋଇପଡ଼ିଛି, ଯା ଫଳରେ ମୌଳିକ ଗଳ୍ପର ଭାବ ଫୁଟିପାରିନି କିମ୍ବା ଓଡ଼ିଆ ଭାଷାର ପ୍ରାଣରକ୍ଷା ହୋଇପାରିନି । ନିହାତି ଖାପଛଡ଼ା ତଥା ଅବୋଧ ହୋଇପଡ଼ିଛି । ଗୋଟିଏ ଦୁଇଟି ମାତ୍ର ଉଦାହରଣ ଦିଏ ।

(୧) ଲେନା ଉଠିଯାଇ ଦ୍ୱାର ଖୋଲିଦେଲା । ଫେରି ଆସିଲା ମୁଖରେ ବିରକ୍ତିର ଚିହ୍ନସହ, ଯା ସୃଷ୍ଟି କରନ୍ତି ଅବାଞ୍ଛିତ ଅତିଥିର ଆଗମନରେ ।

(୨) ମୋର ସତ୍ତ୍ୱ ମୁଁ ଯେପରି ସବୁବେଳେ ଅନୁଭବ ନ କରେ ମୋ ଉପରେ କାହାର ଦାବୀ ଅଛି ।

(୩) ଚୁ ଚୁ, ତୁମର କଣ ସାତ୍ତ୍ୱିକ ପ୍ରେମ ସତରେ ସେ ଫାନ୍ଦରେ ଗୋଡ଼ ଦେଲେଣି ନା ।

ମୌଳିକ ଲେଖା ନ ଦେଖି ମଧ୍ୟ କଣେ କହିପାରେ ଯେ (୩) ଉଦାହରଣରେ ଚୁ ଚୁ ଟା ନିହାତି ଆକ୍ଷରିକ ଅନୁବାଦ । ଓଡ଼ିଆରେ ବ୍ୟବହୃତ ଅନ୍ୟ କୌଣସି ବାକ୍ୟାଂଶରେ ସେହି ଭାବ ପ୍ରକାଶ କରାଯାଇ ପାରିଥାନ୍ତା । (୨) ଉଦାହରଣ ଏକ ହିନ୍ଦୀବାକ୍ୟ ପରି ଜଣାପଡ଼େ ।

ମନେ ରଖିବାକୁ ହେବ, ଅନୁବାଦ କରିବାକୁ ହେବ ବୋଲି ଅନ୍ୟ ଭାଷାରେ ବ୍ୟବହୃତ ଭାବପାଇଁ ଆମେ ସବୁବେଳେ ଆମ ନିଜ ଭାଷାରେ ଉପାଦାନ ପାଇପାରିବା ଏମିତି କିଛି କଥା ନାହିଁ । କେତେଗୁଡ଼ାଏ କଥା ଅଛି, ଯା କେବେ ଅନୂଦିତ ହୋଇପାରିବ ନାହିଁ । ଏମିତି ଗୋଟିଏ

ସାଧାରଣ ଇଂରାଜୀ ବାକ୍ୟାଂଶ 'going to a dance' ଆମ ଭାଷାରେ ଅନୁବାଦ କଲାବେଳେ ଅନେକ ଚିନ୍ତା କରିବାକୁ ପଡ଼ିବ, କାରଣ ଆମ ଦେଶରେ 'ନାଚକୁ ଯିବା' ଯାହା, ସେ ଦେଶରେ 'ନାଚକୁ ଯିବା' ଏକା ନୁହେଁ । ଏହି ଥିଓରିର ବିଶେଷ ଗବେଷଣାପାଇଁ ମାଲିନ୍‌ସ୍କିଙ୍କ Coral Gardens ଦେଖିପାରନ୍ତି । ତା ଛଡ଼ା ଅନୁବାଦ କଲାବେଳେ ଆମମାନଙ୍କୁ କେତେକ ବିଷୟ ତ୍ୟାଗ କରିବାକୁ ପଡ଼ିବ ଓ କେତେକ ବିଷୟକୁ ବିଶେଷ ଭାବରେ ଅନୁସରଣ କରିବାକୁ ହେବ । ତା ନ ହେଲେ ଇଟାଲୀ ଭାଷାରେ ଯାହା କହନ୍ତି, 'Traduttori' 'traditori'—Translators Traitors ! ଅନୁବାଦକ ବିଶ୍ୱାସଘାତକରେ ପରିଣତ ହେବେ ଜନପ୍ରିୟ ଯେତିକ ଜାତିପ୍ରିୟ ତାଠୁ ଅଧିକ । ଏହି ପ୍ରବନ୍ଧରେ ଜଣେ ପାଶ୍ଚାତ୍ୟ ଅନୁବାଦ-ବିଶେଷଜ୍ଞଙ୍କ ମତାମତରୁ ଦୁଇକଥା କହିବି ମାତ୍ର ।

ଅନୁବାଦର ଉଦ୍ଦେଶ୍ୟ ସବୁ ଦେଶରେ ଓ ସବୁ କାଳରେ ସମାନ । ଉଦ୍ଦେଶ୍ୟ ଗୋଟିଏ ଭାଷାରେ ଲିଖିତ ବସ୍ତୁକୁ ଅନ୍ୟ ଏକ ଭାଷାରେ ପ୍ରକାଶ କରିବା । ମାତ୍ର ଅନ୍ୟ ଭାଷାରେ ପ୍ରକାଶ କରିବାର ଭଙ୍ଗୀରେ 'ମୁନିନାଂ ମତଭେଦୋ ବିଭିନ୍ନାଃ' ଦେଖାଯାଏ । ଲାଟିନ୍‌ରେ Translation ର ଅର୍ଥ ହେଉଛି Transference—ଗୋଟିଏ ଭାଷାରୁ ଆଉଗୋଟିଏ ଭାଷାକୁ ବଦଳାଇଦେବା ମାତ୍ର । ଏହି ଆପାତତଃ ସହଜ କଥାଟା କେଡ଼େ କଠିନ ତା ଅନୁଭବୀ ମାନେ କହିବେ । ଯେଉଁ ଭାଷା ଯେତେ ଉଚ୍ଚ ଦରର ଓ ଯେତେ ଆତ୍ମଗୁଣରେ ଭୂଷିତ (like itself) ତା ଅନୁବାଦପାଇଁ ସେତିକ କଠିନ । ଲେଖା ଖୁବ୍ ସାଦାସିଧା ହୋଇପାରିଥାଏ, ମାତ୍ର ଅନୁବାଦପାଇଁ କଷ୍ଟ । ଆମେରିକାନ୍ ଲେଖକ ଲୁଇଫିସରଙ୍କ 'A week with Gandhi' ରୁ ଏହାର ଅନେକ ପ୍ରମାଣ ମିଳେ । 'He has no blue pencil in his mind', 'It is a typical Gandhian Cycle." ଭାରି ସହଜ କଥା, କିନ୍ତୁ ଅନୁବାଦ କଠିନ ।

ସମସ୍ତ ଅନୁବାଦ-ବିଶେଷଜ୍ଞମାନେ ଏକମତ ଯେ, ଅନ୍ୟ ଯାହା ହେଉ, ଅନୁବାଦ ଯଥାଶକ୍ତି ବିଶ୍ୱସ୍ତ (faithful) ହେବା ଉଚିତ । ଇଂରାଜୀ

ଶବ୍ଦଟିର ଅନୁବାଦ କରି ନ ପାରି କାମ ଚଳାଇବାପାଇଁ 'ବିଶ୍ୱସ୍ତ' କରିଛୁ । ଯେତେଦୂର ସମ୍ଭବ ଅନୁବାଦ ମୌଳିକ ଲେଖାର ସମଗୁଣୀ ହେବା ଉଚିତ । ଅନୁବାଦ ମୌଳିକ ଲେଖାର ନିକଟତମ ହେବା କଠିନ, ମାତ୍ର ଏହା ବୋଲି ମୌଳିକ ଲେଖାକୁ ଭାଙ୍ଗିରୁଜି ନୂତନ ଭାଷାରେ ସମ୍ପୂର୍ଣ୍ଣ ନୂତନ ଭଙ୍ଗୀରେ ଲେଖିଲେ ବିଶ୍ୱାସଘାତକତା ହେବ । D. G. Rosetti କହନ୍ତି, "The work of the translator is one of some self-denial". ଅନୁବାଦକଙ୍କର ମନେ ରଖିବା ଉଚିତ ଯେ, "The work is not primarily his, but that of another man of whose ideas he is merely the vehicle and interpreter." ତେଣୁ ଅନୁବାଦରେ ନିଜତ୍ୱ ଦେଖାଇବା ସଙ୍ଗେ ସଙ୍ଗେ ମୌଳିକ ଲେଖକଙ୍କ ପ୍ରତି ବିଶ୍ୱାସଘାତକତା ନ କରିବାପାଇଁ ତାଗିଦ୍ । ମାତ୍ର କଥାଟା ଭାରି କଠିନ, ପୁଅମୁଣ୍ଡ-ତେଲଘଡ଼ି ଲେଭଟା ଯେମିତି କଠିନ ସମସ୍ୟା-ସମ୍ବଳିତ ।

କିନ୍ତୁ ଅସଲ କଥାଟା ହେଉଛି ଅନୁବାଦରେ ପାଠକର ମନସ୍ତତ୍ତ୍ୱ ତଥା ସୁଖ ବିଚାର କରିବାର କଥା । ଅନୁବାଦଟା ଏମିତି ହେବା ଦରକାର ଯେ, ତା ପଢ଼ୁ ପଢ଼ୁ ଜଣେ ଯେମିତି ନ ଭାବନ୍ତି ଯେ, ଲେଖାଟା ଅନ୍ୟ ଭାଷାରୁ ଅନୂଦିତ ହୋଇଛି । ଆମର ଅଧିକାଂଶ ଅନୁବାଦ ଏତେ ପର ଯେ ଆପଣାର ବୋଲି ମନେ ହୁଏ ନା, ବିଶେଷତଃ କ୍ଷୁଦ୍ର ଗଳ୍ପଗୁଡ଼ା । Sir T. H. Warren କହନ୍ତି, "A good translation should read like an original. Why ? Because the original reads like an original". ଯୁକ୍ତି ଅତି ସହଜ, ବୁଝାଇବାର ଆବଶ୍ୟକତା ନାହିଁ । Prof. Wilamowtiz କହନ୍ତି, "A translator must not translate either words or sentences but take up and produce thoughts and feelings." ମନେ ହୁଏ ଅଧ୍ୟାପକ Wilamowtizଙ୍କ ସଙ୍ଗେ ଆମେମାନେ ଏକମତ ହେବା । କାରଣ ଶବ୍ଦ ଓ ପଂକ୍ତି ଯଦି ଆମେ

ଅନୁବାଦ କରୁ, ତେବେ ପୂର୍ବେ ଯେଉଁ ଉଦାହରଣ ଦିଆଯାଇଛି, ଯଥା— "ମୁଁ ଭାଷା ଶିଖିବାପାଇଁ ନିଜକୁ ନିଜୁକ୍ତଭାବରେ ଦର୍ଖାସ୍ତ କରିବ ଓ ଚୁଚୁ ତୁମର କଣ ସାତ୍ତ୍ୱିକ ପ୍ରେମ···" ଏହି ଦୋଷରେ ଦୁଷ୍ଟ ହେବାକୁ ହେବ ଓ ପାଠକର ଧୈର୍ଯ୍ୟହାନି ଅବଶ୍ୟମ୍ଭାବୀ ହୋଇପଡ଼ିବ । ପ୍ରକୃତରେ ଅନୁବାଦକୁ ସୁଖପାଠ୍ୟ ଓ ବୋଧ କରିବାକୁ ହେଲେ ଯେଉଁ ଭାଷାରେ ଅନୁବାଦ କରାଯାଉଛି, ସେ ଭାଷାର ପ୍ରାଣ ଯେମିତି ନଷ୍ଟ କରା ନ ଯାଏ, ସେଥିପ୍ରତି ତୀବ୍ର ଦୃଷ୍ଟି ଦେବା ଦରକାର । ତା ଛଡ଼ା ନିଜ ମାତୃଭାଷାରେ ଯେଉଁ ପ୍ରଚଳନ ଅଛି ତାକୁ ଚଳାଇପାରିଲେ ଲେଖା ବେଶୀ ପ୍ରାଣବନ୍ତ ହୋଇ-ପାରିବ । ସେହି 'ଦ୍ୱନ୍ଦ୍ୱ' ଗଳ୍ପରୁ ଗୋଟିଏ ଉଦାହରଣ ଦିଏ । ଜଣେ କହିଲେ, "ତମ ସଙ୍ଗେ ଟିକିଏ କଥା ହେବାର ଅଛି ।"

ଉତ୍ତର "କି ସମ୍ବନ୍ଧରେ ?" ଉତ୍ତରଟି ପଢ଼ିଲା ମାତ୍ରେ ମନେ ହୁଏ ଯେ, ବିଦେଶୀୟ ଧାଡ଼ିଟି ଅନୁବାଦ । ସେଠି ଯଦି ଆମେ କଥାସ୍ରୋତର ପ୍ରାକୃତିକତା ରକ୍ଷା କରି "କି କଥା" ବା "କେଉଁ ବିଷୟରେ" ବୋଲି କହିଥାନ୍ତୁ ତେବେ କଥାଟା ବେଶୀ ଓଡ଼ିଆଓଡ଼ିଆ ଜଣାଯାଇଥାନ୍ତା । ଅନୁବାଦର ଗନ୍ଧ କମ୍ ଜଣାପଡ଼ିଥାନ୍ତା । ଅନୁବାଦ ସବୁବେଳେ କଷ୍ଟସାଧ୍ୟ । ମାତ୍ର ଦେଖିଶୁଣି କଲେ ଅନେକ ଅବୋଧ କଥା ବୋଧ, ସୁଖପାଠ୍ୟ ତଥା ମୌଳିକ ବୋଧ ହେବ । ଅନୁବାଦରେ ଏହି ମୌଳିକ ଅନୁଭୂତିପାଇଁ ବାୟୁମଣ୍ଡଳ ସୃଷ୍ଟି କରିବାରେ ଅନୁବାଦକଙ୍କର ଚରମ କୃତିତ୍ୱ ଜଣା ପଡ଼ିବାର କଥା । ଅନ୍ୟଥା ଅନୁବାଦ କେବଳ ଅବୋଧ ନୁହେଁ ବିରକ୍ତିକର ।

ପରାଧୀନ ଭାରତ ଅପେକ୍ଷା ସ୍ୱାଧୀନ ଭାରତରେ ଅନୁବାଦର ମୂଲ୍ୟ ଅନେକ ବେଶୀ । ଭାରତୀୟ ଏକାଡ଼େମୀ ବର୍ତ୍ତମାନ ବିଭିନ୍ନ ଭାଷାର ପୁସ୍ତକକୁ ଅନୁବାଦ କରି ଭାରତୀୟ ସାହିତ୍ୟ ତଥା ଜ୍ଞାନଭଣ୍ଡାରକୁ ସମୃଦ୍ଧ କରିବା-ପାଇଁ ଉଦ୍ୟୋଗ କରୁଛନ୍ତି । ଫଳତଃ ହିନ୍ଦୀ, ମରାଠୀ, ତେଲୁଗୁ, ତାମିଲ ପ୍ରଭୃତି ଭାଷାର ପୁସ୍ତକ କେବଳ ଓଡ଼ିଆରେ ଅନୂଦିତ ହେବ ନାହିଁ, ଓଡ଼ିଆ ପୁସ୍ତକଗୁଡ଼ିକ ମଧ୍ୟ ଉପରୋକ୍ତ ଭାଷାମାନଙ୍କରେ ଅନୂଦିତ ହେବ । ସେହି

ଦୃଷ୍ଟିରୁ ପ୍ରତ୍ୟେକ ଭାଷାରେ ଯଥେଷ୍ଟ ପରିମାଣରେ ଉପଯୁକ୍ତ ଦ୍ୱିଭାଷୀ ସୃଷ୍ଟି କରା ନ ଗଲେ ଅବସ୍ଥା ଜଟିଳ ହେବ । ଏକ ଭାଷାର ସାହିତ୍ୟକ ମୂଲ୍ୟ ଅନ୍ୟ ଭାଷାରେ ଯଥେଷ୍ଟ ସମ୍ମାନ ଲଭ କରିପାରିବ ନାହିଁ ।

ଉପରେ ଇଂରାଜୀରୁ ଓଡ଼ିଆ ଅନୁବାଦର କଥା କୁହାଯାଇଛୁ । ବର୍ତ୍ତମାନ ଓଡ଼ିଆରୁ ହିନ୍ଦୀ ଅନୁବାଦର ଏକ ଉଦାହରଣ ଦିଏ । ଏହି ଉଦାହରଣରେ ଏତିକି ଦେଖାଇବାର କଥା ଯେ, ହିନ୍ଦୀ ଓ ଓଡ଼ିଆ ଦୁଇଟି ପରସ୍ପର ସମ୍ପୃକ୍ତ ଭାଷା । ତେଣୁ ଅନୁବାଦ କଲାବେଳେ ଏକ ଭାଷାର ପ୍ରକାଶ ପ୍ରଣାଳୀ ଅନ୍ୟ ଭାଷାରେ ପ୍ରବେଶ କରି ହୁଏତ ଅନ୍ୟ ଭାଷାର ପ୍ରକାଶ ସୌନ୍ଦର୍ଯ୍ୟକୁ ପରିବର୍ତ୍ତିତ କରିଦେଇପାରେ । ଉଦାହରଣସ୍ୱରୂପ ଓଡ଼ିଆରୁ ହିନ୍ଦୀକୁ ଅନୁବାଦ କଲାବେଳେ ଓଡ଼ିଆ ଶୈଳୀ ହିନ୍ଦୀପ୍ରକାଶ ପ୍ରଣାଳୀକୁ ଏପରି ପ୍ରଭାବିତ କରିବ ଯେ, ହିନ୍ଦୀ ହିନ୍ଦୀପ୍ରକାଶ ଭଙ୍ଗୀ ସମ୍ପୂର୍ଣ୍ଣ ବଦଳିଯାଇ-ପାରେ । ଫଳତଃ ସେପ୍ରକାର ହିନ୍ଦୀପାଠକଙ୍କୁ ଭଲ ନ ଲାଗିପାରେ । ଅନୁବାଦର ଏହା ଏକ ଅବଶ୍ୟମ୍ଭାବୀ ପରିଣତି ହେଲେ ମଧ୍ୟ ସେଥିପ୍ରତି ବିଶେଷ ସାବଧାନ ରହିବାକୁ ହେବ ।

ଏଠି ଗୋଟିଏ ଓଡ଼ିଆ ଲେଖାକୁ ସମଶିକ୍ଷିତ ଦୁଇଜଣ ବ୍ୟକ୍ତି ଅନୁବାଦ କରିଛନ୍ତି । ଜଣେ ଓଡ଼ିଆ ଆଉ ଜଣେ ହିନ୍ଦୀଭାଷୀ । ଓଡ଼ିଆ ଲେଖକଙ୍କର ଓଡ଼ିଆ-ପ୍ରଭାବିତ ହିନ୍ଦୀ ହିନ୍ଦୀଭାଷୀଙ୍କ ହିନ୍ଦୀଠାରୁ କେତେ ଭିନ୍ନ, କେତେ ଲାଳିତ୍ୟହୀନ ତାହା ଦେଖିବାର କଥା । ଏଥିରୁ ସହଜେ ପ୍ରତିପନ୍ନ ହେବ ଯେ, ଯେଉଁ ଭାଷାରେ କୌଣସି ପୁସ୍ତକ ଅନୂଦିତ ହେବ ସେହିଭାଷୀ ଲୋକ ସେହି ଅନୁବାଦ କଲେ ତାର ଫଳ ଭଲ ହେବ । ଉଦାହରଣସ୍ୱରୂପ କାଳିନ୍ଦୀ ବାବୁଙ୍କ 'ମାଟିର ମଣିଷ' କିମ୍ବା ଡା: ମାନସିଂହଙ୍କ 'ଧୂପ' ଯଦି ହିନ୍ଦୀରେ ଅନୂଦିତ ହୁଏ, ତେବେ ତାର ସୌନ୍ଦର୍ଯ୍ୟ ରକ୍ଷା କରିବାପାଇଁ ଓଡ଼ିଆ ଜାଣିଥିବା ହିନ୍ଦୀଭାଷୀ ଲୋକ ଅନୁବାଦ କଲେ ଭଲ । ସେହିପରି ପ୍ରେମଚନ୍ଦଙ୍କ 'ଗୋଦାନ'କୁ ଓଡ଼ିଆରେ ଅନୁବାଦ କରିବାକୁ ହେଲେ ହିନ୍ଦୀ ଜାଣିଥିବା ଓଡ଼ିଆଭାଷୀ ଲେଖକଙ୍କର ଅନୁବାଦ କରିବା ଉଚିତ । ନଚେତ୍ ଯେଉଁ

ଭାଷାରେ ଅନୁବାଦ କରାଯିବ ସେହି ଭାଷାର ମୌଳିକତା ଫୁଟାଇବା ସହଜ ହେବ ନାହିଁ । ଏକ ଓଡ଼ିଆ ପରିଚ୍ଛେଦର ହିନ୍ଦୀ ଅନୁବାଦ ଦେଖନ୍ତୁ । ହିନ୍ଦୀ ଜାଣିଥିବା ଯେକୌଣସି ପାଠକ ପାର୍ଥକ୍ୟ ସହଜରେ ଧରିପାରିବେ ।

ଓଡ଼ିଆ ପରିଚ୍ଛେଦ—

ଯେକୌଣସି ଦେଶର କଥା କହି ବସିଲେ ତ ସାତ ଖଣ୍ଡ ପୋଥି ହେବ । ଏହି କ୍ଷୁଦ୍ର ପୁସ୍ତକରେ ଆମେରିକାର ସବୁ କଥା କହିବା ଅସମ୍ଭବ । ନିହାତି ଆଖିରେ ପଡ଼ିବା ଭଳି କେତେକ କଥା କହୁଛି ମାତ୍ର । ଆମେରିକା ଲୋକଙ୍କଠାରେ କି ବିଶେଷ ଲକ୍ଷଣ ଦେଖାଯାଏ, ସେ କଥା ସଂକ୍ଷେପରେ କହୁଛି ।

( ଆମେରିକା ଅନୁଭୂତି )

ଓଡ଼ିଆଭାଷୀଙ୍କ ଅନୁବାଦ—

**किसी भी देशके बारेमें हाम 'लिखना चाहें तो वह कई पुराणों से समाप्त नहीं होगा । ऐसी एक छोटीसी पुस्तक में आमेरिका जैसे समृद्ध देशका वर्णन कहांतक संभव होगा । सिर्फ कुछ इनागिने बातोंका मैंने संक्षेपरूपसे इसमें उल्लेख किया है. जो कि मुझे पसंद आया । अब यहां आमेरिका के लोगोंमें कौनसा बिशेष गुण दिखाई पड़ता है, उसीका ही यहाँ लिखनेका प्रयास कर रहा हूँ ।**

ହିନ୍ଦୀଭାଷୀଙ୍କ ଅନୁବାଦ—

**अगर हम किसी देशका वर्णन करने बैठ जायें त संभव है वह कई पोथों में भी समाप्त न हो । फिर अमेरिका जैसे समृद्ध देशका वर्णन इस छोटी सी पुस्तक में कैसे संभव हो सकत है । अतः मैंने यहां केवल उन्हीं इनी गीनी बातों-का संक्षेपतः उल्लेख किया है जो मुझे बहुत रुचिकर लगी अथवा जो आमेरिका के लोगों के किन्ही विशेष गुणों पर प्रकाश डालती है ।**

ଅନୁବାଦ ବର୍ତ୍ତମାନ ଆନ୍ତଃପ୍ରାଦେଶିକ କମ୍ବା ଭାରତୀୟ ସମସ୍ୟା ନୁହେଁ । ଏହା ଏକ ଆନ୍ତର୍ଜାତିକ ବିଶ୍ୱସମସ୍ୟା । ଏଥିପାଇଁ ପାରିସ ସହରରେ ଏକ ଅନୁବାଦ ଅନୁଷ୍ଠାନ ବର୍ତ୍ତମାନ ପ୍ରତିଷ୍ଠିତ ହୋଇଛି । ପୃଥିବୀର ବିଶିଷ୍ଟ ଭାଷାମାନଙ୍କର ପ୍ରତିନିଧିମାନେ ଏଠି ଏକତ୍ରିତ ହୋଇ ଅନୁବାଦ କାର୍ଯ୍ୟ କିପରି ସହଜରେ ସମାହିତ ହୋଇପାରିବ ତାହାର ସମାଧାନରେ ଲାଗିପଡ଼ିଛନ୍ତି ।

# ଇଂରାଜୀ ଭାଷାରେ ଭାରତୀୟ ପ୍ରଭାବ

ଅଗଷ୍ଟ ପନ୍ଦରରେ ପତାକା ଉଠିଲେ ପ୍ରାଣରେ ଉନ୍ମାଦନା ଆସେ, କାରଣ ବ୍ରିଟିଶ ଯାଇଛି । କିନ୍ତୁ ଭାବିବସିଲେ ଦେଖାପଡ଼େ, ଯାଇଛି ସିନା କନା କିନ୍ତୁ ରହିଛି କର୍ପୂର । ଗୋରାଲୋକ ସିନା ସାଗର ସେପାରି ଚାଲି-ଯାଇଛି; କିନ୍ତୁ ଚାଲି, ଚଳନ; ଚିନ୍ତା, ଚରିତ୍ର (ଭଲ ଅଂଶ ନୁହେଁ) ସବୁ-ସେ ଛାଡ଼ିଯାଇଛି ଏଇ ପାରିରେ । ସବୁଠୁ ବଡ଼ ଅବଦାନ ତାର ଭାଷା । କହିବା ବାହୁଲ୍ୟ, ମଧୁବାବୁଙ୍କଠାରୁ ଆରମ୍ଭ କରି ମଧୁଆ ପର୍ଯ୍ୟନ୍ତ ସମସ୍ତେ ଆଜି ଇଂରାଜୀ ଚୋବାଉଛନ୍ତି । କିଏ 'ଟେଲିଫୋନ୍' କହୁଛି ତ କିଏ 'ତେଲପାଣି' କହୁଛି, କିଏ 'ମିଷ୍ଟେକ୍' କହୁଛି ତ କିଏ 'ମିଷ୍ଟିଙ୍ଗ' କହୁଛି । କିଏ ଜାଣି ଜାଣି କହୁଛି ତ କିଏ ଗୋଠମତା ହୋଇ ଅଜାଣା କହୁଛି । ପାନ-ଭୋଜନ, ଶୟନ-ସ୍ୱପନ ସର୍ବତ୍ର ଆମକୁ ବିଦେଶୀ ନିଶା ଧରିଛି । କିନ୍ତୁ ଆମେ ଯେ ତାଙ୍କୁ ଆଦୌ ପ୍ରଭାବିତ କରି ନାହୁଁ ଏ କଥା ନୁହେଁ । ଲଣ୍ଡନ ସହରରେ ସାହେବ ଲୋକ ପଲାଉ ଆଉ 'କରି' ଖୋଜେ, ଚଟଣି ଟିକିଏ ଚାଟିଦେବାପାଇଁ ଭାରତୀୟ ହୋଟେଲରେ ଅନାଇ ବସିଥାଏ । ଭାରତ-ବିଲାତ ସମ୍ପର୍କ ବିଷୟରେ ଭାରତର ଶେଷ ବ୍ରିଟିଶ ବଡ଼ଲାଟ କଣ କହିଛନ୍ତି ଦେଖନ୍ତୁ—

During the centuries that the British and the Indians have known one another, the British mode of life, custom, speech and thought have been profoundly influenced by those of India—more profoundly than has offen been realised.

Speeches by Lord Mountbatten
14 Aug. 47, New Delhi.

ଅବଶ୍ୟ ଇଂରାଜୀ ଭାଷା ଯେଉଁ ପରିମାଣରେ ଆମ ଭାରତୀୟ ଭାଷାମାନଙ୍କୁ ପ୍ରଭାବିତ କରି ଆମ ଶବ୍ଦ, ବାକ୍ୟ, ଗଦ୍ୟ, ପଦ୍ୟ ସବୁକୁ ପରିବର୍ତ୍ତିତ କରିପାରିଛି, ଆମ ଭାରତୀୟ ଭାଷା ଇଂରାଜୀ ଭାଷାକୁ ସେତେ ଦୂର କରି ପାରି ନାହିଁ ନିଶ୍ଚୟ; ମାତ୍ର ଦୀର୍ଘ ବର୍ଷର ସମ୍ପର୍କରେ ସେମାନଙ୍କ ଭାଷା ଯେ କେତେକାଂଶରେ ପ୍ରଭାବିତ ହୋଇଛି ସେହି କଥା ଏ ପ୍ରବନ୍ଧଟିରେ ଦେଖିବାର କଥା । ଅନେକ ଶବ୍ଦ ଭାରତରୁ ଯାଇ ଇଂରାଜୀ ଭାଷାରେ ସ୍ଥାନ ପାଇଛି, ଅଥଚ ଆମେ ଜାଣୁ ନାହିଁ ସେଗୁଡ଼ା ମୋଟେ ଭାରତୀୟ ଭାଷା ବୋଲି ।

ଇଂରାଜୀ ଜାଣିବା ଲୋକମାନେ ଜାଣନ୍ତି cash, curry, compound, mango, paddy, pickles ଏସବୁ ଇଂରାଜୀ ଶବ୍ଦ । ମାତ୍ର ଏସବୁ ଭାରତୀୟ ଶବ୍ଦ ଦ୍ରାବିଡ଼ବଂଶୀୟ କେତେକ ଭାଷାରୁ ଗୃହୀତ । ଭାଷା କଥା ବୁଝିବା ବଡ଼ ମୁସ୍କିଲ । ଆଜିକାଲି ଯୁଗରେ ଯେଉଁମାନେ ଅତି ସହଜରେ କହିଦିଅନ୍ତି ଏଥିରୁ ଇଏ ହେଲା, ଏ ଶବ୍ଦରୁ ସେ ଶବ୍ଦ ହେଲା, ସେମାନଙ୍କ ପ୍ରତି ଭାଷାବିତ୍‌ମାନେ ଠିକ୍ ଏ ଲକ୍ଷ୍ୟ ରଖିଥିବେ, ନୋହିଲେ ଠକେଇରେ ପଡ଼ିଯିବାର ସମ୍ଭାବନା ବହୁତ ବେଶୀ ।

ସପ୍ତଦଶ ଶତାବ୍ଦୀରେ ଭାରତକୁ ଇଂରାଜମାନଙ୍କର ପ୍ରଥମ ଆଗମନ । ସେତେବେଳକୁ ପର୍ତ୍ତୁଗୀଜମାନେ ଭାରତର ବାଣିଜ୍ୟରେ ବେଶ୍ ଆସ୍ଥାନ ଜମାଇ ବସି ସାରିଥିଲେ । ଭାରତୀୟମାନଙ୍କ ସହିତ କାରବାର କରିବା ପାଇଁ ପର୍ତ୍ତୁଗୀଜମାନେ ଏକ ଇଣ୍ଡୋ-ପର୍ତ୍ତୁଗୀଜ ( Indo-Portugees) ସୃଷ୍ଟି କରି ସାରିଥିଲେ । ଇଉରୋପରୁ ଯେକୌଣସି ବଣିକ ଜାତି ଆସୁଥିଲେ, ସେମାନେ ଏହି ଭାଷାରେ କଥାବାର୍ତ୍ତା କରୁଥିଲେ । ସେହି କାରଣରୁ ଅନେକ ଦକ୍ଷିଣଭାରତୀୟ ଶବ୍ଦ ପର୍ତ୍ତୁଗୀଜ ଭାଷା ଜରିଆରେ ଇଂରାଜୀ ଭାଷାଭିତରକୁ ଆସିଛନ୍ତି । ଯଦିଓ ବାହ୍ୟତଃ ନିମ୍ନଲିଖିତ ଶବ୍ଦଗୁଡ଼ିକ ଇଂରାଜୀପରି ଦେଖା ପଡ଼ୁଛନ୍ତି ବସ୍ତୁତଃ ସେମାନେ ଭାରତ

ମାଟିରେ ଜନ୍ମ ହୋଇ ପଞ୍ଜିଗୀଜ ଖାନା ଖାଇ ପୋଷାକ ପିନ୍ଧି ଇଂରାଜୀ ସଭାରେ ଏମିତ ସଜାଇ ହୋଇ ବସିଛନ୍ତି ଯେ, ସେମାନଙ୍କୁ ଇଂରାଜୀଛଡ଼ା ଅନ୍ୟ କିଛି କୁହାଯାଇପାରିବ ନାହିଁ । ଉଦାହରଣ ସ୍ୱରୂପ—

ମାଲୟାଲମ ଶବ୍ଦ—betel, areca, coir, copra; ଅନ୍ୟାନ୍ୟ ଶବ୍ଦ —brinjal, jaggery, cutch.

ବାସ୍ତବରେ ୧୭ଶ ଶତାବ୍ଦୀରେ ଇଂରାଜମାନେ ସବୁଠାରୁ ବେଶୀ ଶବ୍ଦ ଭାରତରୁ ନେଇଛନ୍ତି । ସେସବୁ ଶବ୍ଦ ବାଣିଜ୍ୟସମ୍ପୃକ୍ତ ଶବ୍ଦ ।

ଭାରତୀୟ ଶବ୍ଦ ଏତେ ପ୍ରବଳଭାବରେ ଇଂରାଜୀ ଭାଷାରେ ମିଶିବାକୁ ଆରମ୍ଭ କଲା ଯେ, ଭାରତରୁ ଇଷ୍ଟଇଣ୍ଡିଆ କମ୍ପାନୀ ପକ୍ଷରୁ ଯେଉଁସବୁ ଲେଖା ପଠାଗଲା ଇଂଲଣ୍ଡରେ ଇଷ୍ଟଇଣ୍ଡିଆ କମ୍ପାନୀର କର୍ମକର୍ତ୍ତାମାନଙ୍କ ପକ୍ଷରେ ତାହା ବୁଝିବା କଠିନ ହେଲା । ତେଣୁ କମ୍ପାନୀର କର୍ମକର୍ତ୍ତାମାନେ ଭାରତୀୟ ଶବ୍ଦ ବ୍ୟବହାର ନ କରିବାପାଇଁ ଭାରତରେ ଥିବା କମ୍ପାନୀ କର୍ମଚାରୀମାନଙ୍କୁ ଲେଖିଲେ । ସେମାନେ ଯେଉଁ ଅର୍ଡ଼ର ପଠାଇଥିଲେ ତାର କେତେକାଂଶ ଦେଖନ୍ତୁ, ବିଶେଷତଃ ସେକାଳର ଇଂରାଜୀ ବନାନ ଦେଖନ୍ତୁ—

Wee have forbidden the severall factoryes from wrighting words in this languadge and refrayened it ourselves, though in books of Coppies we feave there are many which by wante of tyme for perusall we cannot rectifie or expresse

(Hobson Fobson, P. II)

ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ଇଂରାଜମାନେ ଶାନ୍ତିପ୍ରିୟ ବଣିକ ଭାବରେ କାମ କରୁଥିଲେ, ମାତ୍ର ଶେଷାର୍ଦ୍ଧରେ କେତେକ ଐତିହାସିକ ଘଟଣାଯୋଗୁ ଯେଉଁ ଝଡ଼ଝଞ୍ଜାର ସୃଷ୍ଟି ହେଲା ସେଥିରେ ଭାରତୀୟ ଶବ୍ଦ ଇଂରାଜୀ ଭାଷାରେ ଅଧିକ ପ୍ରବେଶ କଲା । ଆର୍କଟ ଅଭିଯାନ, ଅନ୍ଧକୂପ ହତ୍ୟା, ପଲାଶି ଯୁଦ୍ଧ, ଓ୍ୱାରେନ୍ ହେଷ୍ଟିଙ୍ଗ୍ସଙ୍କ ଅପରାଧ ବିଚାରର ଭୟଙ୍କର ରାଜନୈତିକ ଉତ୍ତେଜନା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଇଂରାଜୀ ଭାଷାରେ ଭାରତୀୟ ପ୍ରଭାବର ପ୍ରାବଲ୍ୟ ସୃଷ୍ଟି ହେଲା । ଏହି ସମୟରେ ଭାରତର ଯେଉଁ ରେକର୍ଡ଼ସବୁ ପଠାଯାଇଥିଲା ବ୍ରିଟିଶ ପାର୍ଲିଆ-ମେଣ୍ଟର ବହୁସଂଖ୍ୟକ ସଭ୍ୟ ବୁଝି ନ ପାରିବାରୁ Edmund Burke ବିରକ୍ତି ପ୍ରକାଶ କରି କହିଥିଲେ ଯେ, ଏହି ରିପୋର୍ଟମାନଙ୍କରେ ଭାରତୀୟ ଶବ୍ଦ ଏତେ ଭରିଯାଇଛି ଯେ, ପାର୍ଲିଆମେଣ୍ଟର ସଭ୍ୟମାନେ ବୁଝି ନ ପାରି ସେ ରେକର୍ଡ଼ସବୁ ପକାଇଦେବାକୁ ବାଧ୍ୟ ହେଉଛନ୍ତି । ସେ ତାଙ୍କ ସିଲେକ୍ଟ କମିଟିର ନବମ ରିପୋର୍ଟରେ କହିଛନ୍ତି —

They (Parliament members) are fatigued into such a despair of ever obtaining a competent knowledge of the transactions in India, that they are easily persuaded to remand them...to obscurity.

ସପ୍ତଦଶ ଶତାବ୍ଦୀରେ ବାଣିଜ୍ୟକ ଶବ୍ଦ ବେଶୀଭାବରେ ଇଂରାଜୀ ଭାଷାରେ ପ୍ରବେଶ କରିଥିଲା । ମାତ୍ର ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରେ ରାଜନୈତିକ ଓ ମିଲିଟାରୀ ଶବ୍ଦ ଇଂରାଜୀ ଭାଷାରେ ପ୍ରବେଶ ଲାଭ କଲା । ଭାରତ-ବ୍ରିଟିଶ ସମ୍ପର୍କର ପ୍ରଥମ ଦୁଇ ଶତାବ୍ଦୀରେ ବାଣିଜ୍ୟକ ଓ ବୈଷୟିକ ଶବ୍ଦ ଯେତିକି ପ୍ରାଧାନ୍ୟ ଲାଭ କରିଥିଲା ଊନବିଂଶ ଶତାବ୍ଦୀରେ ଧର୍ମ, ଦର୍ଶନ ଓ ସାହିତ୍ୟିକ ଶବ୍ଦମାନଙ୍କର ପ୍ରାଧାନ୍ୟ ସେତିକି ବଢ଼ିଥିଲା । ସାର୍ ଉଇଲିୟମ୍ ଜୋନ୍ସ୍ ସଂସ୍କୃତ ଭାଷାର ପ୍ରାଧାନ୍ୟ ଦର୍ଶାଇବା ପରେ

ଇଉରୋପୀୟ ଭାଷାତାତ୍ତ୍ୱିକମାନେ ସଂସ୍କୃତଲିଖିତ ଧର୍ମ ଓ ଦର୍ଶନଶାସ୍ତ୍ର ବହୁଳ ଆଲୋଚନା କରିବା ଫଳରେ ବହୁ ସଂସ୍କୃତ ଶବ୍ଦ ଇଂରାଜୀରେ ପ୍ରବେଶ କରି ପାରିଥିଲା । ଉଦାହରଣସ୍ୱରୂପ କେତୋଟି ମାତ୍ର ଦିଆଯାଇ-ପାରେ—

Atma, Amrita, Asur, Avatar, Abidya, Bhakti, Bhut.

ବିଂଶ ଶତାବ୍ଦୀରେ ପ୍ରଥମ ବିଶ୍ୱଯୁଦ୍ଧ ଓ ଭାରତର ସ୍ୱାଧୀନତା ସଂଗ୍ରାମରେ ବହୁ ଶବ୍ଦ ଇଂରାଜୀ ଭାଷାରେ ସ୍ଥାନ ପାଇଲା । Swaraj, Satyagraha, Gandhism, Khaddar, Haratal, Jindabad, Gunda ପ୍ରଭୃତି ଶବ୍ଦ ଇଂରାଜୀ ଭାଷାରେ ଅତି ମାମୁଲି ଭାବରେ ବ୍ୟବହୃତ ହୁଏ । ବିଭିନ୍ନ ଶତାବ୍ଦୀମଧ୍ୟରେ ଇଂରାଜ କବି ଓ ବିଶ୍ୱମାନବମାନଙ୍କୁ ଭାରତୀୟ ଭାଷା ଓ ଭଙ୍ଗୀ କିପରି ପ୍ରଭାବିତ କରିଛି, ସେ କଥା ବିଚାର କରିବାର ସ୍ଥାନ ସ୍ୱତନ୍ତ୍ର । ତଥାପି ଜଣେଅଧେଙ୍କ କଥା କହିବାର ଲୋଭ ସମ୍ବରଣ କରି ପାରୁ ନାହିଁ । ଅନ୍ୟାନ୍ୟ ବହୁ ଇଂରାଜ ଲେଖକଙ୍କ ମଧ୍ୟରେ Scott, Southey, Byron, Macaulay, Thakeray, Kipling, E. M. Foster, T. S. Eliot, Aldons, Huxley ବିଶେଷ ଉଲ୍ଲେଖଯୋଗ୍ୟ ।

ଆମେ ବର୍ତ୍ତମାନ ଇଂରାଜୀ ଶବ୍ଦ ଲେଖିଲାବେଳେ ଆମ ଇଂରାଜୀ ବନାନ ଓ ଓଡ଼ିଆ ଉଚ୍ଚାରଣ ଅନୁସାରେ କରିଥାଉ । ଉଦାହରଣସ୍ୱରୂପ—

| ଇଂରାଜୀ | ଓଡ଼ିଆ |
|---|---|
| Dulles | ଡୁ୍ୟଲେସ |
| Cardiff | କରଡ଼ିଫ୍ |
| Medical | ମେଡ଼ିକଲ |
| Spring | ଇସ୍‌ପ୍ରିଙ୍ଗ୍ |

ମାତ୍ର ଆମେ ମୋଟେ ଅନୁଭବ କରିପାରୁ ନା ଯେ, ଆମେ ଯାହା କରୁଛୁ ତା ଠିକ୍ ନୁହେଁ । ସେ କଥାଟା ଅନୁଭବ କରିବାପାଇଁ ଗୋଟିଏ ଦୁଇଟି ଉଦାହରଣ ଦିଏଁ, ଆମ ଭାରତୀୟ ଶବ୍ଦକୁ ଇଂରାଜୀ ଉଚ୍ଚାରଣ ଗ୍ରନ୍ଥରେ ଲେଖିବାକୁ ଯାଇ ତାକୁ ଇଂରାଜମାନେ କେମିତ ବିକୃତ ରୂପ ଦେଇଛନ୍ତି ।

| ଭାରତୀୟ | ଇଂରାଜୀ |
| --- | --- |
| ଗନ୍ଧର୍ବ | Glendoveers |
| ଯୋଗୀ | Yoguee |
| ବ୍ରାହ୍ମଣ | Brammen |
| ଶିଷ୍ୟ | Schesche |
| କଟୁଆଲ | Cutwal |

ଏହି ଇଂରାଜୀ ଉଦାହରଣମାନଙ୍କରୁ ବେଶ୍ ବୁଝିହେବ, ଆମେ ଯେଉଁ ଇଂରାଜୀ ଶବ୍ଦ ଓଡ଼ିଆ ଭାଷାରେ ଉଚ୍ଚାର କରୁଛୁ ସାବଧାନତା ସହିତ ନ କଲେ ତାର ଚେହେରା କେମିତ ଦେଖାଯିବ ।

ଯେଉଁମାନେ ଫକୀରମୋହନଙ୍କ ଲେଖା ପଢ଼ିଛନ୍ତି ସେମାନେ ନିଶ୍ଚୟ ଜାଣିଥିବେ, ଥଟ୍ଟା ପରିହାସ କରିବାପାଇଁ ଫକୀରମୋହନ ଇଂରାଜୀ ଶବ୍ଦକୁ କେମିତ ବ୍ୟବହାର କରିଥାନ୍ତି । ଇଂରାଜୀ ଲେଖକ Thackeray ଭାରତୀୟ ଶବ୍ଦମାନଙ୍କୁ ହାସ୍ୟରସ ସୃଷ୍ଟି ପାଇଁ ଫକୀରମୋହନଙ୍କ ପରି ବ୍ୟବହାର କରିଥାନ୍ତି । ଉଦାହରଣସ୍ୱରୂପ—"India is a land of nabobs and Pagodas, Curries and Pilau, Tattis and Punkhas, suttees and Jagarnant । ଆମ ଜାତୀୟ ଦେବତା ଜଗନ୍ନାଥଙ୍କ ଅବସ୍ଥା କଣ ହୋଇଛି ଟିକିଏ ଲକ୍ଷ୍ୟ ରଖିଥିବେ ।

ଆଧୁନିକ T. S. Eliot, ଯେ ଆମ ଦେଶର ଆଧୁନିକ କବିମାନଙ୍କୁ ଦୈନନ୍ଦିନ ପ୍ରେରଣା ଯୋଗାନ୍ତି, ତାଙ୍କର ଲେଖାରୁ ପଦେଅଧେ ଦେଖିଲେ

ତାଙ୍କପରି ବିରାଟ ଇଂରାଜ ବ୍ୟକ୍ତିଙ୍କ ଉପରେ ଭାରତୀୟ ଭାଷାର ପ୍ରଭାବ ସହଜେ ଅନୁମେୟ ହେବ ।

Ganga was Sunker, and the limp leaves. Waited for vain, which the black clouds gathered for distant, over Himavant. The jungle crouched, humped in silence. Then spoke the stunder.

Datta Dayadhvam.

Damyata

Shantih shantih shantih

ଆମ ଅବସ୍ଥା ତେବେ ବିଶେଷ ଖରାପ କଣ ହୋଇଛୁ ? ଆଧୁନିକ ଓଡ଼ିଆ କବିଙ୍କ ଅଳିଆଗଦା ଆଡ଼େଇଦେଲେ ତ ଧାଡ଼ି ଧାଡ଼ି ଇଂରାଜୀ ବାହାରିପଡ଼ିବ । ଉଦାହରଣର ଆବଶ୍ୟକତା ନାହିଁ ।

ଏହି ପ୍ରବନ୍ଧରେ କେବଳ ଭାରତୀୟ ଶବ୍ଦମାନଙ୍କର ବିଚାର କରାଯାଇଛି । ସେମାନଙ୍କର ବ୍ୟାକରଣ ଯଥା ଶବ୍ଦତିଆରି ଢଙ୍ଗ, ବାକ୍ୟତିଆରି ଢଙ୍ଗ, ଉଚ୍ଚାରଣ ପ୍ରଭୃତିର ବିଚାର କରିବା ଏହି ପ୍ରବନ୍ଧରେ ସମ୍ଭବ ହୋଇପାରି ନାହିଁ । ତଥାପି ଅଳ୍ପ କେତେଟା ବ୍ୟାକରଣଗତ ନମୁନା କେବଳ ଦିଆଯାଉଛି ।

ଇଂରାଜୀରେ ନାନାପ୍ରକାର ପ୍ରତ୍ୟୟ ଲଗାଇ ଯେମିତି ବିଭିନ୍ନ ଶବ୍ଦ ତିଆରି କରାଯାଏ, ସେମିତି ଭାରତୀୟ ଶବ୍ଦରେ ଇଂରାଜୀ ପ୍ରତ୍ୟୟ ଲଗାଇ ନୂତନ ଶବ୍ଦ ତିଆରି କରାଯାଇଛି । ଉଦାହରଣ—

| ଭାରତୀୟ ଶବ୍ଦ | ଇଂରାଜୀ ପ୍ରତ୍ୟୟ ଲଗି ନୂତନ ରୂପ |
|---|---|
| dacoit (ଡକାଏତ) | dacoitage |
| baboo (ବାବୁ) | baboodom |
| babu (ବାବୁ) | babuism |
| Hindu (ହିନ୍ଦୁ) | Hinduism |
| Brahman (ବ୍ରାହ୍ମଣ) | Brahmanhood |
| Sanskrit (ସଂସ୍କୃତ) | Sanskritist |
| Pundit (ପଣ୍ଡିତ) | Punditship |
| loot (ଲୁଟ୍) | looting, lootable |
| Salaam (ସଲାମ୍) | Salaaming |

ଏହାଛଡ଼ା କ୍ରିୟାକୁ ବିଶେଷ୍ୟ, ବିଶେଷ୍ୟକୁ କ୍ରିୟା ଓ ବିଶେଷଣ କରିବାର ବହୁ ଉଦାହରଣ ତ ଅଛି ।

ଭାରତୀୟ ଶବ୍ଦ ବ୍ୟବହାର କରି ତିଆରି ହୋଇଥିବା କେତେକ ଇଂରାଜୀ ବାକ୍ୟାଂଶ (phrase) ଦେଖନ୍ତୁ,

to sling (spin), the bat (ବାତ୍), sitting dharna, put in dharna—to vote khaki, to shake the pagoda tree

ତାଛଡ଼ା ଭାରତୀୟ ଭାବର ଅନୁବାଦ କରି ସେମାନେ ବହୁ ଶବ୍ଦ ଓ ବାକ୍ୟାଂଶ ପ୍ରଚଳିତ କରିଛନ୍ତି । ଯଥା—

| ଭାରତୀୟ | ଇଂରାଜୀ ଅନୁବାଦ |
|---|---|
| ଦ୍ୱିଜ | twice born |
| ଭୂତପୂଜା | devil worship |
| ସାତଭାଇ (ଏକପ୍ରକାର ପକ୍ଷୀ) | seven brothers |

କେତେକ ଭାରତୀୟ ବସ୍ତୁପାଇଁ ଇଂରାଜୀ ନାମସବୁ ତିଆରି ହୋଇଛି । ଉଦାହରଣ—

ଜୁଳୁଜୁଳିଆ ପୋକ—fire fly
ସୀତାଫଳ—sweet apple
କଇଁଥ—wood apple

ଭାଷା ବିଷୟ ବିଚାର କଲେ ସହଜରେ ପ୍ରତିପନ୍ନ ହୁଏ, ପୃଥିବୀ ଆଜି କେତେ କ୍ଷୁଦ୍ର ହୋଇପଡ଼ିଛି । କାହିଁ ବିଲାତ, କାହିଁ ଭାରତ, ସାତ ସମୁଦ୍ର ତେର ନଦୀ, ତଥାପି ଭାଷା, ଭାବ, ସଂସ୍କୃତି ଏପରିଭାବରେ ଓତପ୍ରୋତ ହୋଇପଡ଼ିଛି ଏବଂ ଶହ ଶହ ବର୍ଷର ନିକଟ ସମ୍ପର୍କ ଫଳରେ କେବଳ ସେମାନେ ଯେ ଆମକୁ ପ୍ରଭାବିତ କରିଛନ୍ତି ତା ନୁହେଁ, ଆମେମାନେ ମଧ୍ୟ ସେମାନଙ୍କୁ ବହୁ ଭାବରେ ପ୍ରଭାବିତ କରିଛୁଁ । ଆମମାନଙ୍କ ସମ୍ପର୍କର ବାହ୍ୟ ବନ୍ଧନ ଛିଣ୍ଡି ଯାଇଛି ସତ; କିନ୍ତୁ ସଭ୍ୟତାଗତ ଅନ୍ତର ସମ୍ପର୍କ ଅକ୍ଷୁଣ୍ଣ ରହିଛି । ଏହି କ୍ଷୁଦ୍ର ଦୁନିଆରେ ବିଶେଷତଃ ଭାଷାରାଜ୍ୟରେ ଆଜି ଯୁଗରେ କେହି ଅଲଗା ହୋଇ ରହିପାରେ ନା । ସେଥିପାଇଁ ବାହାରର ଜିନିଷ କିଣା ବିକା ଯାଇଛି, ଅନ୍ତରର କର୍ପୂର ସେହିପରି ରହିଛି ।

———

# ଫିଲଲଜି, ଫୋନେଟିକ୍ସ୍, ଲିଙ୍ଗୁଇଷ୍ଟିକ୍ସ୍

ଏହି ପୁସ୍ତକରେ ଯେତେ ପ୍ରବନ୍ଧ ଲେଖାଯାଇଛି, ତନ୍ମଧ୍ୟରେ ଗୋଟିଏ କଥା ଉପରେ ଜୋର୍ ଦିଆଯାଇଛି । ତାହା ହେଉଛି ମଣିଷ-ପାଟିରୁ ଉଚ୍ଚାରିତ ହେଉଥିବା ଭାଷାକୁ ଭାଷା ବୋଲି ସ୍ୱୀକାର କରି ତାହା ଉପରେ ବିଚାର କରାଯାଇଛି । ପୁସ୍ତକର ପ୍ରଥମ ପୃଷ୍ଠାରେ ମଣିଷର ମୁଖର ଚିତ୍ର ଦେବାର ଉଦ୍ଦେଶ୍ୟ ମଧ୍ୟ ଏହା । କିନ୍ତୁ ଭାଷାବିଜ୍ଞାନ କହିଲେ ଆମ ଦେଶରେ ଭାଷାସଂପୃକ୍ତ ସବୁପ୍ରକାର ବିଜ୍ଞାନକୁ ବୁଝାଇଥାଏ । ତେଣୁ ପାଠକଙ୍କ ମନରୁ ଏପ୍ରକାର ଭ୍ରାନ୍ତି ଦୂର କରିବାପାଇଁ ଆଧୁନିକ ଭାଷା-ବିଜ୍ଞାନର ବିଭାଗମାନଙ୍କ ସମ୍ପର୍କରେ କେତେକ ଜ୍ଞାତବ୍ୟ କଥା ଏହି ପ୍ରବନ୍ଧରେ ଉପସ୍ଥାପିତ କରାଯାଇଛି ।

**ଫିଲଲଜି**---ଭାରତର ସବୁ ବିଶ୍ୱବିଦ୍ୟାଳୟରେ ଭାଷାବିଷୟ-ମାନଙ୍କରେ (Language Subjects) ଅଳ୍ପ ବହୁତ ଫିଲଲଜି ଶିକ୍ଷା ଦିଆଯାଏ । ଆମ ଦେଶର ସାହିତ୍ୟ ଶିକ୍ଷାମଧ୍ୟରେ ଫିଲଲଜିର ସ୍ଥାନ ଅତି ନଗଣ୍ୟ ହେଲେ ବି ଏହାକୁ ଭାଷାବିଜ୍ଞାନର ପ୍ରସିଦ୍ଧ ନାମରେ ନାମିତ କରାଯାଇଥାଏ । ଭାଷାବିଜ୍ଞାନର ମୌଳିକ ନୀତିରୁ ଦୂରରେ ରହି ମଧ୍ୟ ଫିଲଲଜି ଶିକ୍ଷା କଲେଜରେ ଆରମ୍ଭ ହୋଇ କଲେଜରେ ଶେଷ ହୋଇ-ଯାଇଥାଏ । ଫିଲଲଜି ଶବ୍ଦକୁ ଆମେମାନେ ଯେଉଁଭଳି ଅର୍ଥରେ ବ୍ୟବହାର କରୁଁ, ପୃଥିବୀର ସର୍ବତ୍ର ତାହା ସେହିପରି ବ୍ୟବହୃତ ହୋଇ ନ ଥାଏ । ଆମ ଦେଶରେ ଭାଷାର ଯେକୌଣସି ପ୍ରକାର ବିଚାରକୁ ଫିଲଲଜି ବୋଲି ଧରି

ନିଆ ଯାଇଥାଏ । ଏପର୍ଯ୍ୟନ୍ତ ସାରା ଭାରତରେ ଏକମାତ୍ର କଲିକତା ବିଶ୍ୱବିଦ୍ୟାଳୟରେ ଫିଲଲଜି ବିଭାଗ ଅଛି । ଏଣୁ ଆଧୁନିକ ଲିଙ୍ଗୁଇଷ୍ଟିକ୍‌ସ୍‌ଠାରୁ ବହୁ ଦୂରରେ କଲିକତା ବିଶ୍ୱବିଦ୍ୟାଳୟର ଆଧୁନିକତମ ସିଲାବସ ଦେଖିଲେ ମନେ ହୁଏ ଏହି ଶିକ୍ଷା ଆଧୁନିକ ଲିଙ୍ଗୁଇଷ୍ଟିକ୍‌ସ୍‌ଠାରୁ ବହୁ ଦୂରରେ । କହିବାର ଉଦ୍ଦେଶ୍ୟ ହେଉଛି, ଆମ ଦେଶରେ ଏପର୍ଯ୍ୟନ୍ତ ଯାହା ହୋଇଛି, ପୁନା ସ୍କୁଲର ଅସ୍ଥାୟୀ ଶିକ୍ଷା ଛଡ଼ା ଆଧୁନିକ ଲିଙ୍ଗୁଇଷ୍ଟିକ୍‌ସ୍ ଅନ୍ୟତ୍ର କେଉଁଠି ଆରମ୍ଭ ହୋଇନି । ଅବଶ୍ୟ ଏବେ ପୁନା ଓ ଆଗ୍ରା ପ୍ରଭୃତି ବିଶ୍ୱବିଦ୍ୟାଳୟମାନଙ୍କରେ କେତେକ ପ୍ରାଥମିକ ଚେଷ୍ଟା କରାଯାଉଛି । ମୋଟ ଉପରେ ଏପର୍ଯ୍ୟନ୍ତ ଆମ ଦେଶରେ ଯାହା ହୋଇଛି ତାହା ଫିଲଲଜି । ଏହି ଫିଲଲଜି ଶବ୍ଦ ଇଉରୋପ ଓ ଭାରତବର୍ଷରେ ସବୁ ପ୍ରକାର ଭାଷା ବିଚାରକୁ ବୁଝାଏ । ଯଥା —ଫିଲଲଜି, ତୁଳନାତ୍ମକ ଫିଲଲଜି ଓ ଲିଙ୍ଗୁଇଷ୍ଟିକ୍‌ସ୍ । ମାତ୍ର ଆମେରିକାରେ ଫିଲଲଜି ଏକ ସ୍ୱତନ୍ତ୍ର ଅର୍ଥରେ ବ୍ୟବହୃତ ହୁଏ, ତହିଁରେ ତୁଳନାତ୍ମକ ଫିଲଲଜି କିମ୍ବା ଲିଙ୍ଗୁଇଷ୍ଟିକ୍‌ସ୍ ଆଦୌ ଅନ୍ତର୍ଭୁକ୍ତ ନୁହେଁ । ଆମେରିକାନ୍ ଅର୍ଥରେ ଫିଲଲଜି ସାହିତ୍ୟ ଏବଂ ଭାଷାବିଜ୍ଞାନ ଏହି ଦୁଇ ବିଭାଗର ମଧ୍ୟବର୍ତ୍ତୀ ଏକ ବିଭାଗ । ଏହା ପୁଣି ଦୁଇ ଭାଗରେ ବିଭକ୍ତ—(୧) ଲିଙ୍ଗୁଇଷ୍ଟିକ୍ ଫିଲଲଜି ଓ (୨) ସାହିତ୍ୟିକ ଫିଲଲଜି । ପ୍ରଥମ ପ୍ରକାର ଫିଲଲଜି ଅର୍ଥାତ୍ ଲିଙ୍ଗୁଇଷ୍ଟିକ୍ ଫିଲଲଜିରେ ଲୋକଗୀତ, ପଶୁଗଳ୍ପ, ପୁରାଣଗଳ୍ପ, ପୋଥିସଂସ୍କାର ତଥା ଭାଷାକୋଷ ସଂକଳନ ପ୍ରଭୃତି ବିଚାର କରାଯାଏ । ଦ୍ୱିତୀୟ ପ୍ରକାର ଫିଲଲଜିରେ ଭାଷାତାତ୍ତ୍ୱିକ ଅନୁସନ୍ଧାନ ସାହାଯ୍ୟରେ ସାହିତ୍ୟିକ ଓ ଐତିହାସିକ ଘଟଣାର ସତ୍ୟାର୍ଥ ନିରୂପଣ କରାଯାଏ । ମୋଟ ଉପରେ ଆମ ଦେଶରେ ଫିଲଲଜି କହିଦେଲେ ଯାହା ବୁଝାଏ, ସବୁଠି ସେପରି ବୁଝାଯାଏ ନାହିଁ । ଏହି ପ୍ରବନ୍ଧରେ ଫିଲଲଜି ଓ ଲିଙ୍ଗୁଇଷ୍ଟିକ୍‌ସ୍ ଏହି ଦୁଇ ଶବ୍ଦକୁ ଜାଣିଶୁଣି ଇଂରାଜୀରେ ରଖାଯାଇଛି, ଯେତେହେତୁ ସେମାନଙ୍କର ପାର୍ଥକ୍ୟସୂଚନାକାରୀ ଯଥୋଚିତ ଓଡ଼ିଆ ଶବ୍ଦ ମୁଁ ପାଇ ନାହିଁ । ତା ଛଡ଼ା ଏପରି ଦୁଇ ନିତ୍ୟ-ବ୍ୟବହୃତ ଇଂରାଜୀ ଶବ୍ଦ ଯେଉଁମାନଙ୍କର ଅର୍ଥଗତ ପାର୍ଥକ୍ୟ ଖୁବ୍ ବେଶୀ

ସେମାନଙ୍କୁ ଇଂରାଜୀରେ ରଖିବାପାଇଁ ଦ୍ୱିଧା କରିବାର କୌଣସି କାରଣ ନାହିଁ ।

**ତୁଳନାତ୍ମକ ଫିଲଲଜି–( Comparative Philology )**—ଫିଲଲଜି ଜାଣିଥିବା ଛାତ୍ରଙ୍କର ତୁଳନାତ୍ମକ ଫିଲଲଜି ସମ୍ପର୍କରେ କୌଣସି ନା କୌଣସି ଧାରଣା ଥିବାର ଆଶା କରାଯାଏ । ଏଥିରେ ଏକ ଭାଷାର ଦୁଇ ବିଭିନ୍ନ ସ୍ତରର ତୁଳନା କିମ୍ବା ବିଭିନ୍ନ ଭାଷାର ଏକ ସ୍ତରର ତୁଳନା କରାଯାଇଥାଏ । ଉଦାହରଣସ୍ୱରୂପ ପ୍ରାଚୀନ ଓଡ଼ିଆର ଆଧୁନିକ ଓଡ଼ିଆ ସହିତ ତୁଳନା କରାଯାଇପାରେ କିମ୍ବା ଆଧୁନିକ ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଆସାମୀର ତୁଳନା କରାଯାଇପାରେ । ବହୁ ଉଚ୍ଚ ଧରଣର ଜର୍ମାନ୍ ଭାଷାବିତ୍ ୧୮ଶ ଶତାବ୍ଦୀର ଶେଷଭାଗ ଓ ସାରା ୧୯ଶ ଶତାବ୍ଦୀରେ ଏହି ବିଜ୍ଞାନସେବାରେ ଆତ୍ମନିୟୋଜିତ କରି ଏହାକୁ ଏକ ବଳିଷ୍ଠ ବିଜ୍ଞାନରେ ପରିଣତ କରିଥିଲେ । ଭାଷାବିଜ୍ଞାନ ଛାତ୍ରମାନେ ଗ୍ରୀମ୍‌ସ୍‌, ଭର୍ଣ୍ଣର୍, ବ୍ରୁଗ୍‌ମାନ୍, ଡେଲ୍‌ବ୍ରୁକ୍ ପ୍ରଭୃତି ଭାଷାବିତ୍‌ମାନଙ୍କୁ ଜାଣିବାର କଥା—ଏହିମାନଙ୍କ ଚେଷ୍ଟାରେ ଭାଷାଭିତରେ ଆଇନ ଆବିଷ୍କୃତ ହୋଇଥିଲା ଓ ବିଭିନ୍ନ ଭାଷାମାନଙ୍କ ଭିତରେ ବଂଶସମ୍ପର୍କ ସ୍ଥାପିତ ହୋଇଥିଲା । ଭାରତୀୟ-ମାନଙ୍କର ଗର୍ବ କରିବାର କଥା ଯେ ୧୭୮୬ରେ ସାର୍ ଉଇଲିୟମ ଜୋନ୍‌ସ୍ ଇଉରୋପୀୟାନ୍‌ମାନଙ୍କୁ ସଂସ୍କୃତ ଭାଷାର ମାହାତ୍ମ୍ୟ ଦେଖାଇଦେବା ଫଳରେ ଭାଷାବିତ୍‌ମାନେ ଭୁଲ୍‌ମାର୍ଗ ଛାଡ଼ି ପ୍ରକୃତ ରାସ୍ତା ଧରିପାରିଲେ ଏବଂ ହିବ୍ରୁ ଭାଷା ପୃଥିବୀର ପ୍ରାଚୀନତମ ଆଦି ଜନନୀ ବୋଲି ଯେଉଁ ଭ୍ରାନ୍ତ ଧାରଣା ପ୍ରଚଳିତ ହେଉଥିଲା, ସେସବୁ କାଳକ୍ରମେ ଲୁପ୍ତ ହୋଇଗଲା; ଗ୍ରୀକ୍, ଲାଟିନ୍ ଓ ସଂସ୍କୃତ ଭାଷା କୌଣସି ଏକ ଅଜ୍ଞାତ ମାତାର କନ୍ୟା ହିସାବରେ ପରିଗଣିତ ହେଲେ । ସଂସ୍କୃତର ପ୍ରାଧାନ୍ୟ ଏତେ ବଢ଼ିଗଲା ଯେ, ଭାଷାବିତ୍‌ମାନଙ୍କର ବିଶ୍ୱାସ ହେଲା, ଅଙ୍କ ବ୍ୟତିରେକେ ଗ୍ରହବିଜ୍ଞାନ ଶିକ୍ଷା ଯେପରି ଅସମ୍ଭବ ସଂସ୍କୃତ ବ୍ୟତିରେକେ ଭାଷାବିଜ୍ଞାନ ସେହିପରି ଅସମ୍ଭବ । ମନୁଷ୍ୟମାନଙ୍କ ପରି ଭାଷାମାନଙ୍କର ଯେ ବଂଶସମ୍ପର୍କ ଅଛି ତାହା ଏହି ତୁଳନାତ୍ମକ ଫିଲଲଜିଦ୍ୱାରା

ପ୍ରତିପାଦିତ ହୋଇଥିଲା । ଏପର୍ଯ୍ୟନ୍ତ କେବଳ ଇଣ୍ଡୋ ଇଉରୋପୀୟାନ୍ ଭାଷା ବିଭାଗର ସବିଶେଷ ବିଶ୍ଳେଷଣ ସମ୍ଭବ ହୋଇଛି । 'ଆମେରିକାନ୍, ଇଣ୍ଡିୟାନ୍, ଅଷ୍ଟ୍ରେଲିୟାନ୍ ଓ ଆଫ୍ରିକାନ୍ ଭାଷା ବିଭାଗମାନଙ୍କରେ ଏହି ତୁଳନାତ୍ମକ କାର୍ଯ୍ୟ ଆରମ୍ଭ ହୋଇନି କହିଲେ ଚଳେ । ମାତ୍ର ତୁଳନାତ୍ମକ ଫିଲଲଜି ଶବ୍ଦଟି ଏତେ ଲୋକପ୍ରିୟ ଯେ ଆମେରିକାର ଭାଷାବିଜ୍ଞର ବିଭାଗମାନ ତୁଳନାତ୍ମକ ଫିଲଲଜି ବିଭାଗ ନାମରେ ନାମିତ ହୋଇଛି । ଆଧୁନିକ ଯୁଗରେ ଯାହାକୁ ଲିଙ୍ଗୁଇଷ୍ଟିକ୍ସ୍ କହୁଛନ୍ତି ତାହା ଏତେ କ୍ଷିପ୍ର ଗତିରେ ବଢ଼ି ଚାଲିଛି ଯେ, ଏବେ ଭାଷାବିଜ୍ଞାନ କହିଲେ ପାଶ୍ଚାତ୍ୟ ଦେଶମାନଙ୍କରେ ଲୋକେ ଲିଙ୍ଗୁଇଷ୍ଟିକ୍ସ୍ ବୋଲି ବୁଝିବାକୁ ଆରମ୍ଭ କଲେଣି । ଫିଲଲଜି ଓ ତୁଳନାତ୍ମକ ଫିଲଲଜି ଲିଙ୍ଗୁଇଷ୍ଟିକ୍ସ୍ ନିକଟରେ ନିଷ୍ପ୍ରଭ ହେବାକୁ ବସିଲାଣି ଅନ୍ତତଃ ଆମେରିକା ଦେଶରେ ।

**ଲିଙ୍ଗୁଇଷ୍ଟିକ୍ସ୍**—ଫିଲଲଜି କହିଲେ ଆମେ ଯେମିତି ଭାଷାବିଜ୍ଞାନର ସମସ୍ତ ବିଭାଗ ଯଥା ଫିଲଲଜି, ତୁଳନାତ୍ମକ ଫିଲଲଜି, ଓ ଲିଙ୍ଗୁଇଷ୍ଟିକ୍ସ୍କୁ ବୁଝିଥାଉ, ଅନେକେ ଲିଙ୍ଗୁଇଷ୍ଟିକ୍ସ୍ କହିଲେ ସେହି ତିନି ବିଭାଗକୁ ମଧ୍ୟ ବୁଝିଥାନ୍ତି; ମାତ୍ର ଆମେରିକାରେ ଲିଙ୍ଗୁଇଷ୍ଟିକ୍ସ୍ କହିଲେ ପ୍ରଧାନତଃ ବର୍ଣ୍ଣନାତ୍ମକ ଭାଷାବିଜ୍ଞାନକୁ ( Descriptive Linguistics ) ବୁଝାଇଥାଏ । ଆମେରିକାକୁ ଏତେ ପ୍ରାଧାନ୍ୟ ଦେବାର ଉଦ୍ଦେଶ୍ୟ ହେଉଛି, ବର୍ତ୍ତମାନ ପୃଥିବୀରେ ଲିଙ୍ଗୁଇଷ୍ଟିକ୍ସ୍ କହିଲେ ଯାହା ବୁଝାଏ ତାହା ବିଶେଷଭାବରେ ଆମେରିକାନ୍ ଭାଷାକ୍ଷେତ୍ରମାନଙ୍କରେ ବ୍ୟବହୃତ ହେଉଛି । ଭାଷାବିଜ୍ଞାନର ପ୍ରୟୋଗ ଓ ଇଞ୍ଜିନିଅରିଂ ବର୍ତ୍ତମାନ ଆମେରିକାରେ ଯେମିତି ବଢ଼ି ଚାଲିଛି, ଅନ୍ୟ ଦେଶମାନଙ୍କରେ ତାର ଆରମ୍ଭପର୍ଯ୍ୟନ୍ତ ହୋଇ ନାହିଁ । ଆମେରିକାନ୍ ଭାଷାବିତ୍ମାନେ ଯେଉଁ ମେସିନ୍‌ସବୁ ବ୍ୟବହାର କରୁଛନ୍ତି, ତାହା ଲଣ୍ଡନ ସ୍କୁଲରେ ବି ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇନି ।

ଆମେରିକାରେ ବହୁତ ଅଣଇଂରାଜୀ ଆଦିବାସୀ ଭାଷା ରହିଛି । ପୂର୍ବେ ପାଦ୍ରୀମାନେ ସେହି ଭାଷାମାନଙ୍କର ବିଶ୍ଳେଷଣ ଆରମ୍ଭ କରିଥିଲେ । ମାତ୍ର

ସେମାନଙ୍କ ନିକଟରେ କୌଣସି ସ୍ଥିର ବୈଜ୍ଞାନିକ ପ୍ରଣାଳୀ ନ ଥିଲା । ଆମେରିକାନ୍ ଭାଷାବିତ୍‌ମାନେ ଯେତେବେଳେ ସେହି ଭାଷାମାନଙ୍କ ପ୍ରତି ଆକୃଷ୍ଟ ହେଲେ, ସେତେବେଳେ ଏହି ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ ବା ଡେସ୍‌କ୍ରିପ୍‌ଟିଭ୍ ଲିଙ୍ଗୁଇଷ୍ଟିକ୍ସ୍‌ର ଆରମ୍ଭ ହେଲା । ସାଧାରଣ ଭାବରେ ମନେ ରଖିବାପାଇଁ ଲିଙ୍ଗୁଇଷ୍ଟିକ୍ସ୍‌କୁ ଯାନ୍ତ୍ରିକ ଭାଷାବିଜ୍ଞାନ କୁହାଯାଇ-ପାରେ । ଏହି ବିଜ୍ଞାନ ପ୍ରଣାଳୀ ଏପରି ସ୍ଥିର ଓ ବିଧିବଦ୍ଧ ହୋଇ ସାରିଲାଣି ଯେ, ଏହାକୁ କେମିଷ୍ଟ୍ରି, ଫିଜିକ୍ସ୍ ସହିତ ସମାନ ଆସନ ମିଳିବାର ଦିନ ଆସିଗଲାଣି । ଏହି ବିଜ୍ଞାନରେ ହାତ ଦେବା ପୂର୍ବରୁ ଫିଜିକ୍ସ୍, ଫିଜିଓଲଜି, ସାଇକଲଜି, ଆନ୍ଥ୍ରପଲଜି ବିଜ୍ଞାନର ସାଧନା ଦରକାର । କୌଣସି ଭାଷାର ବିଶ୍ଳେଷଣବେଳେ ଭାଷାର ଅର୍ଥ ~~ଜାଣିବା~~ ଏହି ପ୍ରଣାଳୀରେ ଆଦୌ ~~ଆବଶ୍ୟକ ହୁଏ ନାହିଁ~~ ।

ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱକୁ ବୁଝିବାପାଇଁ ଗୋଟିଏ ପ୍ରଧାନ କଥା ମନେ ରଖିବାକୁ ହେବ । ତା ହେଉଛି ମଣିଷପାଟିରୁ ଯେଉଁ କଥା ବାହାରେ ତାହାହିଁ ହେଉଛି ଭାଷା । ପୁସ୍ତକରେ ଯାହା ଲେଖା ଯାଇଛି ତାହା ଭାଷାର ପ୍ରତିଚିହ୍ନ । ଜୀଅନ୍ତା ମଣିଷ ଓ ତାର ଚିତ୍ର ଭିତରେ ଯେଉଁ ତଫାତ୍, କହିବା ଭାଷା ଓ ବହିଲେଖା ଭାଷାଭିତରେ ସେହି ତଫାତ୍ । ଏପର୍ଯ୍ୟନ୍ତ ଫିଲଲଜି ମୃତ ଭାଷା ଅର୍ଥାତ୍ ବହିରେ ଲିଖିତ ଅକ୍ଷର ସହିତ ସମ୍ପୃକ୍ତ ହୋଇ ଆସିଛି; ମାତ୍ର ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ କେବଳ ଜୀବନ୍ତ ଭାଷା ସହିତ ସମ୍ପୃକ୍ତ । ଲିଖିତ ଅକ୍ଷର ସହିତ ଏହାର ବିଶେଷ ସମ୍ପର୍କ ନାହିଁ ।

ଦ୍ୱିତୀୟ ପ୍ରଧାନ କଥା ହେଉଛି ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱର ଭାଷାର ଅର୍ଥ ସହିତ ~~କୌଣସି~~ ସମ୍ପର୍କ ନାହିଁ । ଏହାର ସମ୍ପର୍କ ହେଉଛି ଭାଷାର ଅଭିବ୍ୟକ୍ତି ପ୍ରଣାଳୀ ( expression system ) ସହିତ । କୌଣସି ଭାଷାର ଅର୍ଥ ନ ଜାଣି ମଧ୍ୟ ଜଣେ ସେହି ଭାଷାରେ ଲିଙ୍ଗୁଇଷ୍ଟ

ହୋଇପାରେ । (ଲିଙ୍ଗୁଇଷ୍ଟ ଶବ୍ଦକୁ ଏଣିକି ଭାଷାବିତ୍ ଅର୍ଥରେ ବ୍ୟବହାର କରାଯାଉ ।)

ତୃତୀୟ କଥା ହେଉଛି, ଭାଷାବିତ୍ଙ୍କର ଭାଷାର ଔଚିତ୍ୟ ଅନୌଚିତ୍ୟ ସହିତ କୌଣସି ସମ୍ପର୍କ ନାହିଁ । ସେ କେବଳ ଭାଷାର ତତ୍କାଳୀନ ବ୍ୟବହାର ସହିତ ସମ୍ପୃକ୍ତ । ଅର୍ଥାତ୍ ଭାଷା କେମିତି ହେବା ଉଚିତ, କେଉଁ ଭାଷା ଠିକ୍, କେଉଁ ଭାଷା ଭୁଲ୍, ସେସବୁର ବିଗ୍ଭର ସହିତ ବର୍ଣ୍ଣନାତ୍ମକ ଭାଷାବିତ୍ଙ୍କର କୌଣସି ସମ୍ପର୍କ ନାହିଁ, ଭାଷାକୁ ଲୋକେ ଯେମିତି କହୁଛନ୍ତି କେବଳ ତାର ବିଗ୍ଭର ସେ କରନ୍ତି । ଇଂରାଜୀରେ ଯେଉଁ ପ୍ରେସ୍କ୍ରିପ୍ଟିଭ୍ ନର୍ମେଟିଭ୍ ଶବ୍ଦ ଅଛି, ସେହି ଦୃଷ୍ଟିରୁ ବିଗ୍ଭର କଲେ ଲିଙ୍ଗୁଇଷ୍ଟିକ୍ସ୍ ଗୋଟିଏ ପ୍ରେସ୍କ୍ରିପ୍ଟିଭ୍ ବିଜ୍ଞାନ ।

ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ କହିଲେ ଯାହା ନାମରୁ ସହଜରେ ଜଣାପଡ଼ୁଥାଏ କୌଣସି ଗୋଟିଏ ବିଷୟ ବର୍ଣ୍ଣନା କରିବାକୁ ହେବ । ଏହି କ୍ଷେତ୍ରରେ ବର୍ଣ୍ଣନା କରିବାର କଥା ଭାଷାର ଅଭିବ୍ୟକ୍ତି-ପ୍ରଣାଳୀ । ଭାଷାର ମୁଖ୍ୟତଃ ଦୁଇଟି ବିଭାଗ—ଗୋଟିଏ ହେଉଛି ଅର୍ଥ, ଦ୍ୱିତୀୟ ହେଉଛି ଅଭିବ୍ୟକ୍ତି-ପ୍ରଣାଳୀ । ଉଦାହରଣସ୍ୱରୂପ ଗୋଟିଏ ଶବ୍ଦ ନିଆଯାଉ 'ମଣିଷ' । ଏହାର ଅର୍ଥ ସମସ୍ତଙ୍କୁ ଜଣା—ହାତଗୋଡ଼ଯୁକ୍ତ ଏକ ବୁଦ୍ଧିମାନ୍ ଜୀବ । ଏହାର ଅଭିବ୍ୟକ୍ତି-ପ୍ରଣାଳୀ ହେଉଛି ଆଗ ମ, ତା ପଛକୁ ଇକାରାନ୍ତ ଣ, ତା ପଛକୁ ଷ । ଫୋନେଟିକ୍ ଭାଷାରେ କହିବାକୁ ଗଲେ 'ମଣିଷ' ହେଉଛି ଯଥାକ୍ରମେ ଓଷ୍ଠ୍ୟଅନୁନାସିକ, ମୂର୍ଦ୍ଧାଅନୁନାସିକ ଓ ମୂର୍ଦ୍ଧାସଂଘର୍ଷୀର ସମବାୟ । ଏହାକୁ କୌଣସି ଫର୍ମୁଲ ଦେଇରେ ବର୍ଣ୍ଣନା କରିବାକୁ ଗ୍ଭହିଲେ ଅନେକ ଭାବରେ କରାଯାଇପାରେ । ଉଦାହରଣସ୍ୱରୂପ ଦୁଇଟି ଫର୍ମୁଲ ଦେଖନ୍ତୁ— ଅନୁନାସିକ (ଓଷ୍ଠ + ମୂର୍ଦ୍ଧା) + ସଂଘର୍ଷୀ, ଅନୁନାସିକ + (ଅନୁନାସିକ +ସଂଘର୍ଷୀ) ମୂର୍ଦ୍ଧା । ଏହିପରି କୌଣସି ଗୋଟିଏ ଭାଷାକୁ ମିଶାଣ ଫେଡ଼ାଣ ସୂତ୍ରରେ ବର୍ଣ୍ଣନା କରାଯାଇପାରେ । ଏହି ପ୍ରକାର ବର୍ଣ୍ଣନାର ଅଗ୍ରଣୀ ହେଉଛନ୍ତି ବିଶ୍ୱବନ୍ଦ୍ୟ ପାଣିନି । ସେ ଯାହା

କରିଯାଇଛନ୍ତି, ଏପର୍ଯ୍ୟନ୍ତ କୌଣସି ଭାଷାବିତ୍ ତାର ପ୍ରାନ୍ତ ପର୍ଯ୍ୟନ୍ତ ସ୍ପର୍ଶ କରି ନାହାନ୍ତି । ଭାଷାବିଜ୍ଞାନରେ ଶୂନ୍ୟ (୦)ର ବ୍ୟବହାର କରି ପାଣିନି ପ୍ରଥମେ ଭାଷାତତ୍ତ୍ୱରେ ଗଣିତର ବ୍ୟବହାର କରିଥିଲେ । ଆମେରିକାନ୍-ମାନେ ବର୍ତ୍ତମାନ ଭାଷାତତ୍ତ୍ୱକୁ ଏକ ଗଣିତ-ରୂପ ଦେବପାଇଁ ଲାଗିପଡ଼ିଛନ୍ତି ।

ବର୍ଣ୍ଣନାତ୍ମକ ଭାଷାବିତ୍‌ମାନଙ୍କ କାମର ଏକ ନମୁନା ନିଆଯାଉ । ସେଥିରୁ ଅନେକ କଥା ଜଣା ପଡ଼ିବ । ଧରନ୍ତୁ ଦୁଇ ଜଣ ଲୋକ ଏମିତି ଗୋଟିଏ ଭାଷାରେ କଥାବାର୍ତ୍ତା ହେଉଛନ୍ତି ଯାହା ଆମକୁ ଜଣା ନାହିଁ ; ଅଥଚ ଆମେ ଏହିଭଳି ଏକ ଭାଷାର ବିଶ୍ଳେଷଣ କରିବାପାଇଁ ଯାଉଛୁ । ଏହି ଭାଷା ଶୁଣିଲାମାତ୍ରେ ଆମର ଏକପ୍ରକାର ପ୍ରତିକ୍ରିୟା ହେବ, ଯାହା ଯେକୌଣସି ସାଧାରଣ ଲୋକର ହୋଇଥାଏ । କିଛି ତ ବୁଝି ପଡ଼ିବ ନାହିଁ, ଖାଲି ଜଣାପଡ଼ିବ ଏଆଡ଼ୁସିଆଡ଼ୁ ଗୁଡ଼ାଏ ଧ୍ୱନି କରି ହେଉଛି । ଏହି ଇତସ୍ତତଃ ବିକ୍ଷିପ୍ତ ଧ୍ୱନିମାନଙ୍କୁ ଚିହ୍ନିପାରି ଯଥାସ୍ଥାନରେ ସଜାଇପାରିବା ହେଉଛି ଭାଷାବିତ୍‌ର କାମ । ଆଉ ଗୋଟିଏ ଉଦାହରଣ ନେଲେ ଏକଥା ସହଜରେ ବୁଝିହେବ । ପିଲାଙ୍କର ରଚନାଶକ୍ତି ପରୀକ୍ଷା କରିବାପାଇଁ ଶିକ୍ଷକ ଇତସ୍ତତଃ ବିକ୍ଷିପ୍ତ ଅନେକ ଶବ୍ଦ ଦିଅନ୍ତି । ପିଲାମାନେ ତାକୁ ଭାବିଚିନ୍ତି ଏମିତି ସଜେଇଦିଅନ୍ତି ଯେ, ତାହା ଏକ ସୁନ୍ଦର ଗଳ୍ପରେ ପରିଣତ ହୋଇଯାଏ । ସେହିପରି, ଆଗେ ଯାହା ଇତସ୍ତତଃ ବିକ୍ଷିପ୍ତ ଧ୍ୱନିପରି ଜଣାଯାଏ ତାକୁ ବିଶ୍ଳେଷଣ କରି ଭାଷାବିତ୍ ଦେଖନ୍ତି ଯେ ସେହି ଧ୍ୱନିଗୁଡ଼ିକ ଇତସ୍ତତଃ ବିକ୍ଷିପ୍ତ ନୁହନ୍ତି । ସେହି ସମସ୍ତଙ୍କ ଭିତରେ ଏମିତି ଏକ ନିୟମ ରହିଛି ଯାହାର ବ୍ୟତିକ୍ରମ କରାଗଲେ ଭାଷା ଅବୋଧ ହୋଇପଡ଼ିବ । ଏହି ନିୟମ, ଏହି ଶୃଙ୍ଖଳା, ଏହି ପଦ୍ଧତି ବା ସିଷ୍ଟେମ୍‌ର ବର୍ଣ୍ଣନା କରିବାହିଁ ବର୍ଣ୍ଣନାତ୍ମକ ଭାଷାବିତ୍‌ର କାମ ।

ମନେ କରନ୍ତୁ ଆପଣ ଓଡ଼ିଆ ଜାଣନ୍ତି ନାହିଁ, ଆପଣଙ୍କୁ ଓଡ଼ିଆ ଭାଷା ବର୍ଣ୍ଣନା କରିବାକୁ ହେବ । ତେବେ ପ୍ରଥମେ ଆପଣଙ୍କୁ ଜଣେ ଓଡ଼ିଆଭାଷୀଠାରୁ ବା ଓଡ଼ିଆ ରେକର୍ଡ଼ରୁ ବାରମ୍ବାର ଓଡ଼ିଆ ଭାଷା ଶୁଣିବାକୁ ହେବ । ଶୁଣି

ଶୁଣି ଆପଣ ଏପରି ଏକ ଅବସ୍ଥାରେ ପହଞ୍ଚିବେ, ଯେତେବେଳେ ଆପଣ ସ୍ଥିର କରିପାରିବେ ଯେ, ଓଡ଼ିଆ ଭାଷାରେ ଏପରି କେତେକ ଧ୍ୱନି ଅଛି ଯାହାକୁ ଅ, ଆ, ଲ, କ, ସ, ର ପ୍ରଭୃତି ଚିହ୍ନଦ୍ୱାରା ସଂକେତିତ କରାଯାଇପାରେ ।

କେବଳ ସେତିକି ନୁହେଁ, ଆପଣ ଦେଖିବେ ଏହି ସଙ୍କେତଗୁଡ଼ିକ କେତେକ ନିୟମାନୁସାରେ ଭାଷାରେ ସଜାଇ ହୋଇ ରହିଛନ୍ତି । କେତେକ ସ୍ଥଳରେ ସେମାନେ ଯେଉଁ ଦଳରେ ରହିପାରୁଛନ୍ତି ଆଉ କେତେକ ଜାଗାରେ ସେପରି ଦଳରେ ରହି ପାରୁ ନାହାନ୍ତି । ମାନେ, ଆପଣ ଦେଖିବେ କଲ, ଆଲ, ସର ପ୍ରଭୃତି କେତେକ ଧ୍ୱନିସମଷ୍ଟି (ବର୍ତ୍ତମାନଠାରୁ ଶବ୍ଦ ବୋଲି କୁହାଯାଉ) ଓଡ଼ିଆ ଭାଷାରେ ଶୁଣାଯାଉଛି; ମାତ୍ର ଲଆ, ଲର, ଆକ ପ୍ରଭୃତି କେତେକ ଧ୍ୱନିସମଷ୍ଟି କେବେହେଲେ ଶୁଣା ଯାଉ ନାହିଁ, କେବଳ ସନ୍ଧିସ୍ଥଳକୁ ଛାଡ଼ିଦେଲେ ।

ପୁଣି ଦେଖାଯିବ ଯେଉଁ ଶବ୍ଦଗୁଡ଼ିକ ଓଡ଼ିଆ ଭାଷାରେ ସମ୍ଭବ ହୋଇପାରିଛନ୍ତି ସେମାନଙ୍କର ଏମିତି ଶକ୍ତି ଅଛି ଯେ, ସେମାନେ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଧ୍ୱନି ସହିତ ମିଳି ଆହୁରି ଅନେକ ନୂତନ ଶବ୍ଦ ସୃଷ୍ଟି କରିପାରୁଛନ୍ତି । ଉଦାହରଣସ୍ୱରୂପ କଲକୁ କଲା, କାଲିଆ, କୁଳ; ସରକୁ ସରସର, ସରସ, ସରଘରିଆ କରି ବହୁ ଶବ୍ଦ ତିଆରି କରାଯାଇପାରୁଛି ।

ଶେଷରେ ପୁଣି ଦେଖାଯାଉଛି ଶବ୍ଦମାନଙ୍କର ନିଜକୁ ସଜାଇବାପାଇଁ କେତେକ ବାଧ୍ୟବାଧ୍ୟ ସ୍ଥାନ ରହିଛି । କେତେକ ଅବସ୍ଥାରେ ସେହି ସ୍ଥାନ-ମାନଙ୍କର ପରିବର୍ତ୍ତନ କେବେହେଲେ ଶୁଣିବାକୁ ମିଳୁ ନାହିଁ । ଉଦାହରଣସ୍ୱରୂପ 'ସେ ଘରକୁ ଯାଉଛି' ଶୁଣାଯାଉଛି, ଅଥଚ 'ତାକୁ 'ଘରକୁ ଯାଉଛି' କେବେ ଶୁଣାଯାଉ ନାହିଁ । ଅବଶ୍ୟ ନିଶାରେ, ପାଗଲାମିରେ ବା କୌଣସି ଅସମ୍ଭବ ଉଦାହରଣ ଦେବାପାଇଁ କେହି ସେମିତି କହି-ପାରନ୍ତି ।

ଅବଶ୍ୟ ଆମେମାନେ ଓଡ଼ିଆ ଜାଣେ ବୋଲି ଆମକୁ ଏହି ବିଶ୍ଳେଷଣ ବେଶୀ ଆଶ୍ଚର୍ଯ୍ୟ ଲାଗି ନ ପାରେ । ମାତ୍ର ଆପଣ ନ ଜାଣିଥିବା ଏକ ଭାଷା କଳ୍ପନା କରନ୍ତୁ ଏବଂ ସେହି ଅଜଣା ଭାଷାରୁ ଏହିପ୍ରକାର ଧ୍ୱନି, ଧ୍ୱନିସମଷ୍ଟି ( ଶବ୍ଦ ) ଇତ୍ୟାଦି ବାହାର କରିବାପାଇଁ ଚେଷ୍ଟା କରନ୍ତୁ, ତେବେ କଠିନତା ବୁଝିପାରିବେ । ଆମେରିକାର ଆଲ୍‌ଗୋଙ୍କିନ୍, ଆଫ୍ରିକାର ଇଗ୍‌ବୋ କଥା ଛାଡ଼ିଦେଇ ମୟୂରଭଞ୍ଜର ମୁଣ୍ଡାରୀ ଭାଷାରେ ଚେଷ୍ଟା କରନ୍ତୁ, ଏହି ତଥ୍ୟ ସହଜେ ଉପଲବ୍ଧି କରିପାରିବେ ।

ଏହିପ୍ରକାର ବର୍ଣ୍ଣନା ଆଗେ ସହଜରେ ବିଜ୍ଞାନସମ୍ମତ ପ୍ରଣାଳୀରେ ହେବା କଠିନ ହେଉଥିଲା; ମାତ୍ର ଆଜିକାଲି ଭାଷାବିତ୍‌ମାନେ ଅନେକ ପରସ୍ପରସଂପୃକ୍ତ ବୈଜ୍ଞାନିକ ପ୍ରଣାଳୀଦ୍ୱାରା ଏମିତି ସୂକ୍ଷ୍ମ ଉପାୟ ଉଦ୍‌ଭାବନ କରିସାରିଲେଣି ଯେ, ପାଟିଭିତରେ ଜିଭ ହଲଚଲ ପର୍ଯ୍ୟନ୍ତ ହୋଇଗଲେ ବି ଧରିବାପାଇଁ କିଛି କଷ୍ଟ ନାହିଁ । ଆଗରୁ ଯେଉଁ ଓଡ଼ିଆ ଭାଷାର ଉଦାହରଣ ଦିଆଯାଇଛି ତାହାର ଜରିଆରେ ଦେଖାଯାଉ କେଉଁ ବିଜ୍ଞାନ ଭାଷାବର୍ଣ୍ଣନାରେ କପରି ସାହାଯ୍ୟ କରୁଛି ।

ପ୍ରଥମତଃ ଅ, ଆ କ, ର, ସ ପ୍ରଭୃତି ଧ୍ୱନି ଚିହ୍ନିବାପାଇଁ ଫୋନେଟିକ୍ସ ବିଜ୍ଞାନ ଦରକାର । ପୁଣି ମୁଖୋଚ୍ଚାରିତ ଧ୍ୱନିମାନଙ୍କୁ ଅ, ଆ, କ, ର, ସ ପ୍ରଭୃତି ଅକ୍ଷରମାନଙ୍କଦ୍ୱାରା ସଙ୍କେତିତ କରିବାପାଇଁ ଫୋନେମିକ୍ସ ଦରକାର ।' ଫୋନେଟିକ୍ସ ଓ ଫୋନେମିକ୍ସର ସଂପର୍କ ହେଉଛି, ଫୋନେଟିକ୍ସ ଧ୍ୱନି ଆହରଣ କରେ ଓ ଫୋନେମିକ୍ସ ସେଗୁଡ଼ିକର ଜାତି, ଲକ୍ଷଣ ଇତ୍ୟାଦି ଭଲକରି ପରୀକ୍ଷା କରି ଯେ ଯେଉଁ ଘରେ ରହିବା କଥା ତାକୁ ରଖିଦିଏ । ତୃତୀୟରେ ସର, ସରସରିଆ, ସରସ ପ୍ରଭୃତି କେଉଁ ନିୟମାନୁସାରେ ଗଢ଼ା ହେଉଛନ୍ତି ତାହା ସ୍ଥିର କରେ ମର୍ଫଲଜି । ଚତୁର୍ଥରେ ବାକ୍ୟଭିତରେ କାହାର ସ୍ଥାନ କେଉଁଠି ତାହା ନିର୍ଦ୍ଦେଶ କରେ ସିଣ୍ଟାକ୍ସ । ଆମେରିକାନ୍ ଭାଷାବିତ୍‌ମାନେ ଫୋନେମିକ୍ସ, ମର୍ଫଲଜି ଓ ସିଣ୍ଟାକ୍ସ ବିଜ୍ଞାନରେ ପୃଥିବୀରେ ବର୍ତ୍ତମାନ ସବୁଠୁ ଆଗୁଆ । ଏହି ବିଭିନ୍ନ ପ୍ରଣାଳୀଦ୍ୱାରା

ସେମାନେ ବହୁ ଆଦିବାସୀ ଭାଷା ବିଶ୍ଳେଷଣ କରିସାରିଲେଣି । ଏପରିକି ଆମେରିକାନ୍ ମାନେ ମୟୂରଭଞ୍ଜର ମୁଣ୍ଡାରୀ ଭାଷା ବିଶ୍ଳେଷଣ କରିବାପାଇଁ ଆସି ପହଞ୍ଚିଗଲେଣି ।

ଏହିପ୍ରକାର ବର୍ଣ୍ଣନାତ୍ମକ ବିଶ୍ଳେଷଣପାଇଁ ଯନ୍ତ୍ରପାତିର ବିଶେଷ ଆବଶ୍ୟକତା ରହିଛି । ଏପର୍ଯ୍ୟନ୍ତ ଭାଷାବିଶ୍ଳେଷଣପାଇଁ ଯେତେ ଯନ୍ତ୍ରପାତି ତିଆରି ହୋଇଛି, ସେଥିରୁ ଅଧିକାଂଶ ଆମେରିକାର ସୃଷ୍ଟି, ଯାହା ଏପର୍ଯ୍ୟନ୍ତ ପୃଥିବୀରେ ଅନ୍ୟତ୍ର ବ୍ୟବହୃତ ହୋଇ ନାହିଁ । ଲଣ୍ଡନ ଗବେଷଣାଗାରରେ ଓଡ଼ିଆ 'ହ' ର ପରୀକ୍ଷା କରିବାପାଇଁ ଲେଖକ ଯେଉଁସବୁ ଯାନ୍ତ୍ରିକ ସାହାଯ୍ୟ ନେଇଥିଲି ତାର ଦୁଇ ପ୍ରକାର ନମୁନା ଏହି ପୁସ୍ତକରେ ଦିଆଯାଇଛି । କଥା କହିଲାବେଳେ ଜିଭ କେତେ ମାତ୍ରାରେ ହଲୁଛି, ମୁଖନାସିକ୍ୟ ଧ୍ୱନି କେତେ ଜୋର୍ ରେ ପ୍ରକମ୍ପିତ ହେଉଛି ଜାଣିବା ଆଜିକାଲି କଷ୍ଟକର ନୁହେଁ । ତା ଛଡ଼ା କହିବା ଭାଷାର ସାଙ୍କେତିକ ଚିତ୍ର ଉଠାଇନେବା, କହିବା କଥାକୁ ପୁଣି ଓଲଟି କୁହାଇବା, ଇଚ୍ଛା ଅନୁସାରେ ଏକ ଧ୍ୱନିକୁ ଓଲଟ-ପାଲଟ କରି ଶୁଣିବାପାଇଁ ଯେଉଁ କେତେକ ଯନ୍ତ୍ରପାତି ସୃଷ୍ଟି ହୋଇଛି ସେଗୁଡ଼ିକର ନାମ ମାତ୍ର ଏଠି ଦିଆଯାଉଛି । ଯଥା—Kymogram, Palatogram, Spectograph, Speech stretcher, Electrical vocalt ract, Pattern playback formant-graphic machine ଇତ୍ୟାଦି । ଏମାନଙ୍କ ମଧ୍ୟରୁ କେବଳ ପ୍ରଥମ ଦୁଇଟି ପୁନା ସ୍କୁଲରେ ପ୍ରଥମ ଥରପାଇଁ ସ୍ଥାପିତ ହୋଇଛି ।

ଗୌରବର କଥା, ବର୍ଣ୍ଣନାତ୍ମକ ଭାଷାବିଜ୍ଞାନରେ ପାଣିନିଙ୍କୁ ଏପର୍ଯ୍ୟନ୍ତ କେହି ଟପି ପାରିନାହାନ୍ତି । ଯଦିବା ଯନ୍ତ୍ରପାତି ବ୍ୟବହାର କରିବାର ସୌଭାଗ୍ୟ ତାଙ୍କର ନ ଥିଲା, ତଥାପି ଯନ୍ତ୍ରପାତିବାଲାଙ୍କଠାରୁ ସେ ବହୁତ ଆଗରେ । ସଂସ୍କୃତ ଭାଷା ହେଉଛି ପୃଥିବୀର ସର୍ବୋତ୍କୃଷ୍ଟ ବର୍ଣ୍ଣିତ ଭାଷା । ପାଣିନିଙ୍କ ଅଷ୍ଟାଧ୍ୟାୟୀ ପରି ବିରାଟ ଚେଷ୍ଟା ଅନ୍ୟତ୍ର କେଉଁଠି ହେଲେ ହୋଇନି । ମାତ୍ର ଦୁଃଖର କଥା, ପାଣିନି ନିଜ ଭାଷା ସଂସ୍କୃତ ଛଡ଼ା ଅନ୍ୟ କୌଣସି ଭାଷା



ଟ



ଠ



ଉଠ୍



ଉଠ

ମଣିଷର ଭାଷା ୧୬୦ ପୃ.

ଟ, ଠ, ଉଠ୍, ଉଠ କହିଲା ବେଳେ ଜିହ୍ୱା ଉପର ପାଟିର ଯେଉଁ ଯେଉଁ ଅଂଶ ସ୍ପର୍ଶ କରିଅଛି ତାହାର ଚିତ୍ର ।

ବର୍ଣ୍ଣନା କରିବାକୁ ଚେଷ୍ଟା କରି ନ ଥିଲେ । ଭାଷାବିତ୍ ତାରାପୋରଓ୍ୱାଲା କହନ୍ତି, ପାଣିନି ତକ୍ଷଶିଳାର ଲୋକ ହୋଇଥିବାରୁ ସେ ବହୁ ବିଦେଶୀଙ୍କର ଭାଷା ସଂପର୍କରେ ଆସିବାର ସୁଯୋଗ ପାଇଥିବେ, ଅଥଚ ସେ କେବେ ଅନ୍ୟ କୌଣସି ବିଦେଶୀ ଭାଷା ବର୍ଣ୍ଣନା କରିବାର ଚେଷ୍ଟା କରି ନାହାନ୍ତି । ସେ ଯଦି ତାହା କରିଥାନ୍ତେ, ତେବେ ଆଧୁନିକ ଭାଷାବିତ୍‌ମାନଙ୍କର ଆସ୍ଫାଳନ କରିବାର ବିଶେଷ କିଛି ନ ଥାନ୍ତା । ପୃଥିବୀର ଅନ୍ୟାନ୍ୟ ପ୍ରଧାନ ଭାଷା ଗ୍ରୀକ୍, ଲାଟିନ୍, ଇଂରାଜୀ, ଫ୍ରେଞ୍ଚ୍ ମଧ୍ୟ ଆଜିପର୍ଯ୍ୟନ୍ତ ସଂସ୍କୃତ ପରି ଯଥାଯଥ ବର୍ଣ୍ଣିତ ହୋଇ ପାରି ନାହିଁ । ବରଂ ଆମେରିକାର ଆଦିବାସୀମାନଙ୍କ ଭାଷା ଭାଷାବିତ୍‌ମାନଙ୍କର ଦୃଷ୍ଟି ଆକର୍ଷଣ କରିଥିବାରୁ ସେମାନଙ୍କ ଭିତରୁ କେତେକ ସଂପୂର୍ଣ୍ଣରୂପେ ବର୍ଣ୍ଣିତ ହୋଇପାରିଛି । ଭାରତବର୍ଷରେ ହଜାର ହଜାର ଭାଷା, ଉପଭାଷା ଏପର୍ଯ୍ୟନ୍ତ ଅସ୍ପୃଷ୍ଟ ହୋଇ ପଡ଼ିରହିଛନ୍ତି । ସେଥିପାଇଁ ଶହ ଶହ ଭାଷାବିତ୍ ଅନ୍ତତଃ ଅର୍ଦ୍ଧଶତାବ୍ଦୀ ପର୍ଯ୍ୟନ୍ତ କାର୍ଯ୍ୟ କଲେ ଯାଇ କାର୍ଯ୍ୟର ଆରମ୍ଭ ମାତ୍ର ହୋଇପାରିବ ବୋଲି ଆଶା କରାଯାଏ ।

ବର୍ଣ୍ଣନାତ୍ମକ ଭାଷାବିଜ୍ଞାନ କଥା ବିଚାର କଲାବେଳେ ଏକ ଆନୁଷଙ୍ଗିକ ପ୍ରଶ୍ନର ବିଚାର କରାଯାଇପାରେ । ଲୋକେ ଭାଷାବିତ୍‌ଙ୍କୁ ସବୁବେଳେ ପଚାରିଥାନ୍ତି 'ଆପଣ କେତୋଟି ଭାଷା ଜାଣନ୍ତି ?' ଅନ୍ତତଃ ଏହି ପ୍ରବନ୍ଧରୁ ଏତିକ ସ୍ପଷ୍ଟ ହୋଇଯିବା ଉଚିତ ଯେ, ଭାଷାବିତ୍‌ଙ୍କଠାରୁ ବହୁ ଭାଷାର ଜ୍ଞାନ ଆଶା କରିବାର କୌଣସି କାରଣ ନାହିଁ । ଭାଷାବିତ୍‌ଙ୍କୁ ଏପ୍ରକାର ପ୍ରଶ୍ନ ପଚାରିବା ଯାହା, ଜଣେ କେମିଷ୍ଟଙ୍କୁ ସେ କେତେପ୍ରକାର ସାବୁନ ଓ ଅତର ତିଆରି କରିଛନ୍ତି ପଚାରିବା ସେଇଆ ବା ଫିଜିସିଷ୍ଟ କେତେପ୍ରକାର ଉଡ଼ାଜାହାଜ ତିଆରି କରିଛନ୍ତି ପଚାରିବା ସେଇଆ । କେମିଷ୍ଟ ଯେମିତି ତିଆରିର ପ୍ରଣାଳୀ ଜାଣନ୍ତି, ଫିଜିସିଷ୍ଟ ଯେମିତି ଉଡ଼ାଜାହାଜ ଗଢ଼ିବାର ନିୟମସବୁ ଜାଣନ୍ତି, ଭାଷାବିତ୍ (ବର୍ଣ୍ଣନାତ୍ମକ ଭାଷାବିତ୍) ସେମିତି ଭାଷାର ଅନ୍ତର୍ନିହିତ ନିୟମସବୁ ଜାଣନ୍ତି, ଯାହା ଯେକୌଣସି ଭାଷାରେ ପ୍ରୟୋଗ କରି ପରୀକ୍ଷା କରାଯାଇପାରେ ।

ମୋଟ ଉପରେ ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ (ଲିଙ୍ଗୁଇଷ୍ଟିକ୍‌ସ୍) ଫିଲଲଜି ତଥା ତୁଳନାତ୍ମକ ଫିଲଲଜିଠାରୁ କେମିତି ଭିନ୍ନ ସେତକ ଜାଣିବାପାଇଁ ନିମ୍ନଲିଖିତ କଥାଗୁଡ଼ିକ ମନେ ରଖିବା ଉଚିତ—

(କ) ବର୍ଣ୍ଣନାତ୍ମକ ଭଷାତତ୍ତ୍ୱ ଓ ଫିଲଲଜି ଉଭୟ ଭାଷା ସହିତ ସଂପୃକ୍ତ ହେଲେ ମଧ୍ୟ ଦୁହେଁ ଦୁଇଟି ସଂପୂର୍ଣ୍ଣ ଭିନ୍ନ ବିଭାଗ ।

(ଖ) ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ ଜୀବନ୍ତ ମୁଖନିଃସୃତ ଭାଷା ସହିତ ସଂପୃକ୍ତ—ମୃତ ଲିଖିତ ଅକ୍ଷର ସହିତ ଏହାର ପ୍ରତ୍ୟକ୍ଷ ସଂପର୍କ ନାହିଁ ।

(ଗ) ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ ଭାଷାର ଅଭିବ୍ୟକ୍ତି-ପଦ୍ଧତି (expression system) ସହିତ ସଂପୃକ୍ତ—ଅର୍ଥ ସହିତ ପ୍ରତ୍ୟକ୍ଷଭାବରେ ସଂପୃକ୍ତ ନୁହେଁ ।

(ଘ) ବର୍ଣ୍ଣନାତ୍ମକ ଭାଷାତତ୍ତ୍ୱ ଏକ ପଜିଟିଭ୍ ବିଜ୍ଞାନ, ଯହିଁରେ ଭାଷାର ଔଚିତ୍ୟ-ଅନୌଚିତ୍ୟ ବିଚାର କରାଯାଏ ନାହିଁ, ବରଂ ଭାଷା ଯେମିତି ଲୋକଙ୍କଦ୍ୱାରା ବ୍ୟବହୃତ ହେଉଥାଏ ତାହାର ବିଚାର କରାଯାଏ ।

---

(ঙ) ঐতিহাসিক বর্ণনাত্মক ভাষাতত্ত্বের মূলমন্ত্র ।

# ଓଡ଼ିଶାରେ ପ୍ରଚଳିତ ଭାଷା ଓ ଉପଭାଷା

କୌଣସି ଦେଶ ବା ରାଜ୍ୟରେ ପ୍ରଧାନତଃ ଗୋଟିଏ ଭାଷା ପ୍ରଚଳିତ ଥିଲେହେଁ ପ୍ରଧାନ ଭାଷାର ପାଖେ ପାଖେ ଅନ୍ୟାନ୍ୟ ଅପ୍ରଧାନ ଭାଷା ଓ ଉପଭାଷା ମଧ୍ୟ ବ୍ୟବହୃତ ହୋଇଥାନ୍ତି । ଇଂଲଣ୍ଡର ଭାଷା ଆମେ ଇଂରାଜୀ ବୋଲି ଜାଣୁ, ମାତ୍ର ସ୍କଟଲାଣ୍ଡ ଓ ୱେଲ୍‌ସରେ ଯେଉଁ ଭାଷା ବ୍ୟବହୃତ ହୁଏ ତାହା ଲଣ୍ଡନ ବା ଅକ୍‌ସଫୋର୍ଡ଼ ଇଂରାଜୀଠାରୁ ଭିନ୍ନ । ହିନ୍ଦୀଭାଷୀ ରାଜ୍ୟରେ ଅନେକ ଲୋକ ବି ସ୍ଥିରଭାବରେ ଜାଣନ୍ତି ନାହିଁ, ପ୍ରକୃତ ହିନ୍ଦୀର ସ୍ୱରୂପ କଣ । ମାତ୍ର ଖଡ଼ୀବୋଲି ଉପଭାଷା, ଯାହା ଦିଲ୍ଲୀ ଓ ମିରଟ ଆଖ-ପାଖରେ କୁହାଯାଏ, ତାକୁଇ ହିନ୍ଦୀର ଷ୍ଟାଣ୍ଡାର୍ଡ଼ ବୋଲି ଧରାଯାଇଛି । ମାତ୍ର ହିନ୍ଦୀର ଅନେକ ଉପଭାଷା ଅଛି । ପ୍ରଧାନ କେତୋଟି ହେଉଛି ବ୍ରଜଭାଷା, ଅବଧି, ବୁନ୍ଦେଲଖଣ୍ଡୀ । ଭାଷାରାଜ୍ୟରେ ଏସବୁ କିଛି ନୂଆ କଥା ନୁହେଁ । ଆମର ତ କଥା ଅଛି 'ନଈକେ ବାଙ୍କେ ଦେଶକେ ଫାଙ୍କେ', ଏ ଗାଁ କଥା ସେ ଗାଁ କଥାଠାରୁ ଭିନ୍ନ । ଯେଉଁ ଭାଷା ବିଶ୍ୱବିଦ୍ୟାଳୟ, ସ୍କୁଲ, କଚେରୀ, ସରକାରୀ ଦପ୍ତରମାନଙ୍କରେ ତଥା ପୁସ୍ତକମାନଙ୍କରେ ବ୍ୟବହୃତ ହୁଏ, ତାକୁଇ ଷ୍ଟାଣ୍ଡାର୍ଡ଼ ବୋଲି ଧରିନେଇ ସେହି ଭାଷାଠାରୁ ଭିନ୍ନ ଅନ୍ୟ ଭାଷାମାନଙ୍କୁ ଉପଭାଷା ନାମରେ ଅଭିହିତ କରାଯାଇଥାଏ ।

ଓଡ଼ିଶାର ଭାଷା ଓଡ଼ିଆ । ଏହା ଯେ କେବଳ ଓଡ଼ିଶା ସୀମା-ଭିତରେ ଆବଦ୍ଧ ତା ନୁହେଁ, ଓଡ଼ିଶାବାହାରେ ଏହା ବଙ୍ଗ, ବିହାର, ମଧ୍ୟପ୍ରଦେଶ, ଆନ୍ଧ୍ର ପ୍ରଭୃତି ରାଜ୍ୟରେ ମଧ୍ୟ ବହୁସଂଖ୍ୟକ ଲୋକଙ୍କଦ୍ୱାରା

ବ୍ୟବହୃତ ହୁଏ । ଆମେମାନେ ଯାହାକୁ ଓଡ଼ିଆ ବୋଲି କହୁ, ବିହାର ଓ ବଙ୍ଗଳାରେ ତାକୁ 'ଉଡ଼ୀୟା' ବୋଲି କହୁଥାନ୍ତି ଓ ଲେଖିଥାନ୍ତି । ଓଡ଼ିଶାରେ ଓଡ଼ିଆ ଭାଷାର କେତେକ ଉପଭାଷା ଓ ସେମାନଙ୍କ ଛଡ଼ା କେତେକ ସ୍ୱତନ୍ତ୍ର ଭାଷା ବ୍ୟବହୃତ ହୋଇଥାଏ । ଅନେକ କାରଣରୁ ଓଡ଼ିଶା ବହୁ ଦିନରୁ ବହୁ ଅଣଓଡ଼ିଆଙ୍କର ବାସସ୍ଥଳ ହୋଇ ରହିଛି; ତା ଛଡ଼ା ଓଡ଼ିଶାର ବଣଜଙ୍ଗଲରେ ଓଡ଼ିଶା ଜନତାର ଏକପଞ୍ଚମାଂଶ ଆଦିବାସୀ ରହିଛନ୍ତି, ଯେଉଁମାନଙ୍କର ମାତୃଭାଷା ଓଡ଼ିଆ ଭାଷାରୁ ଭିନ୍ନ ।

ଏହି ପ୍ରବନ୍ଧରେ ଓଡ଼ିଶାର ଭାଷା ସମ୍ବନ୍ଧରେ ଯେଉଁ ଟିପ୍ପଣୀ ଦିଆ ଯାଇଛି ତାହା ଆଦୌ ସମ୍ପୂର୍ଣ୍ଣ ନୁହେଁ, ଯେହେତୁ ଏପର୍ଯ୍ୟନ୍ତ ଓଡ଼ିଆ ଭାଷାର ସଠିକ ସର୍ଭେ ହୋଇ ପାରି ନାହିଁ । ଗ୍ରିଅର୍ସନ୍ ଯେଉଁ ରିପୋର୍ଟ ଦେଇଛନ୍ତି ତା ଅତି ମାମୁଲି । ଓଡ଼ିଶାର ଭାଷା, ଉପଭାଷା ସମ୍ପର୍କରେ କୌଣସି ବିଶିଷ୍ଟ ସରକାରୀ ତଥ୍ୟ ଏପର୍ଯ୍ୟନ୍ତ ସଂଗୃହୀତ ହୋଇ ନାହିଁ; ତଥାପି ଓଡ଼ିଶାରେ ବ୍ୟବହୃତ ବିଭିନ୍ନ ଭଷା ସମ୍ପର୍କରେ ଏକ ସଂକ୍ଷିପ୍ତ ଟିପ୍ପଣୀ ଉପସ୍ଥାପିତ କରାଯାଇଛି । ସମୁଦାୟ ଓଡ଼ିଶାରେ କଥିତ ଭାଷାମାନଙ୍କୁ କେତେକ ବିଶିଷ୍ଟ ବିଭାଗର ଅନ୍ତର୍ଭୁକ୍ତ କରାଯାଇପାରେ ।

(କ) ଇଣ୍ଡୋ-ଇଉରୋପୀୟାନ୍

ଓଡ଼ିଆ
ବଙ୍ଗଳା
ହିନ୍ଦୀ
ଗୁଜରାଟୀ
ମାରୱାଡ଼ି
ଛତିଶଗଡ଼ୀ
ଇଂରାଜୀ

(ଖ) ଇଣ୍ଡୋ-ଇରାନୀୟାନ୍

ଉର୍ଦ୍ଦୁ

(ଗ) ଦ୍ରାବିଡ଼

| | | | | | |
|---|---|---|---|---|---|
| | | ତେଲୁଗୁ | | | |
| | | ତାମିଲ | | | |
| (ଘ) | ଅଷ୍ଟ୍ରିକ୍ | ଭୂମିଜ | ହୋ | ମୁଣ୍ଡା | ପାରୁଆ |
| | | ଭୂୟାଁ | କୋଲ | ମୁଣ୍ଡାରି | ପରଜା |
| | | ଗୋଣ୍ଡ | କନ୍ଧ | ଓରାଁଓ | ସଉରା |
| | | ଗାଦ୍‌ବା | କୁଇ | | ସାନ୍ତାଳ |
| | | | କିସାନ | | |

ଇଂରାଜୀର ସ୍ଥାନ ଅନ୍ୟ ପ୍ରଦେଶମାନଙ୍କରେ ଯାହା ଓଡ଼ିଶାରେ ମଧ୍ୟ ସେୟା । ଉଚ୍ଚଶିକ୍ଷିତମାନଙ୍କ ମଧ୍ୟରେ ଏହା ପ୍ରାକୃତିକ ଦ୍ୱିତୀୟ ଭାଷା ପରି ବ୍ୟବହୃତ । ଓଡ଼ିଶା ଜନତାର ନଗଣ୍ୟ ଅଂଶ ମୁସଲମାନ । ସେମାନେ ଘରେ ଉର୍ଦ୍ଦୁ ଓ ବାହାରେ ଓଡ଼ିଆ ଭାଷା କହନ୍ତି । ଅଧିକାଂଶ ଶିକ୍ଷିତ ଓଡ଼ିଆ ବଙ୍ଗଳା ଓ ହିନ୍ଦୀ ବୁଝିପାରନ୍ତି; ବ୍ୟାକରଣ ଦୋଷକୁ ଛାଡ଼ିଦେଲେ କହିପାରନ୍ତି ମଧ୍ୟ । ଓଡ଼ିଶାବାସୀ ବଙ୍ଗୀୟ ଭଦ୍ରଲୋକମାନେ ଘରେ ବଙ୍ଗଳା ଭାଷା ଓ ବାହାରେ ଓଡ଼ିଆ ଭାଷା ବ୍ୟବହାର କରିଥାନ୍ତି । ଓଡ଼ିଆମାନଙ୍କ ଉପରେ କଥିତ ମାରୱାରୀ ଓ ଗୁଜରାଟୀ ଭାଷାର ପ୍ରଭାବ ନାହିଁ କହିଲେ ଚଳେ । ଅନ୍ୟ ଦୃଷ୍ଟିରୁ ଓଡ଼ିଶାର ଅବସ୍ଥା ଯାହା ହେଉ ପଛେ, ଭାଷା ଦୃଷ୍ଟିରୁ ଅନେକ ଭଲ । ଓଡ଼ିଶାର ଶିକ୍ଷିତ ଲୋକେ ଯେମିତି ସହଜରେ ଭାରତର ଦୁଇଟି ପ୍ରଧାନ ଭାଷା ହିନ୍ଦୀ ଓ ବଙ୍ଗଳା ବୁଝିପାରନ୍ତି ଓ କହିପାରନ୍ତି, ହିନ୍ଦୀ ପ୍ରାନ୍ତର ଲୋକେ ସେପରି ଆମମାନଙ୍କ ଭାଷା ବୁଝିପାରନ୍ତି ନାହିଁ । ପାଶ୍ଚାତ୍ୟ ଲୋକମାନଙ୍କ ଦୃଷ୍ଟିରେ ଭାରତୀୟମାନେ ଯେମିତି ଜନ୍ମଗତ ଭାଷାବିତ୍, ଭାରତୀୟମାନଙ୍କ ଭିତରେ ଓଡ଼ିଆମାନେ ସେହିପରି ଏକ ଜାତି । ଓଡ଼ିଆ ରାଗିଲେ ହିନ୍ଦୀ କହନ୍ତି, ପୁରୀର ପଣ୍ଡାମାନେ ସବୁପ୍ରକାର ଭାରତୀୟ ଭାଷା ସହଜରେ କହିପାରନ୍ତି ।

ରାଜନୈତିକ କାରଣରୁ ଓଡ଼ିଶା ବହୁ କାଳପର୍ଯ୍ୟନ୍ତ ଦୁଇ ବିଶିଷ୍ଟ ବିଭାଗରେ ବିଭକ୍ତ ହୋଇ ରହିଥିଲା, ଯଥା—ଗଡ଼ଜାତ ଓ ମୋଗଲବନ୍ଦୀ । ୧୯୪୭ର ରାଜନୈତିକ ମିଶ୍ରଣଫଳରେ ଉଭୟ ବିଭାଗର ମିଳନ ପରେ ମଧ୍ଯ ଭାଷା ଓ ସଂସ୍କୃତିରେ ଉଭୟ ପ୍ରାନ୍ତମଧ୍ୟରେ ତଫାତ ରହିଛି । ଏବେ ମଧ୍ୟ ଗଡ଼ଜାତ ଭାଷାକୁ ମୋଗଲବନ୍ଦୀ ଜିଲ୍ଲାମାନଙ୍କରେ ଯେମିତି 'ଗଡ଼ଜାତିଆ' ନାମ ଦିଆ ଯାଇଥାଏ, ଗଡ଼ଜାତମାନଙ୍କରେ ମୋଗଲବନ୍ଦୀ ଭାଷାକୁ 'ତଳଘାଟିଆ','ମୋଗଲବନ୍ଦିଆ' ଆଦି ବିଭିନ୍ନ ନାମ ଦିଆଯାଇଥାଏ । ପୁଣି ଏହି ଗଡ଼ଜାତ ଓ ମୋଗଲବନ୍ଦୀ ରାଜ୍ୟମାନଙ୍କ ଭିତରେ ପ୍ରଚଳିତ ଭାଷାମାନଙ୍କରେ ବହୁତ ତଫାତ ଦେଖାଯାଏ । ହିନ୍ଦୋଳ ଅନୁଗୁଳ ଭାଷା ଢେଙ୍କାନାଳ ଭାଷାଠାରୁ ଯେମିତି ଭିନ୍ନ, ବାଲେଶ୍ୱର ଭାଷା ସେମିତି ପୁରୀ ଅଞ୍ଚଳଠାରୁ ଭିନ୍ନ । ଏହିପ୍ରକାର ବିଭିନ୍ନତା ବେଶୀ ହେଉଛି କହିବାର ଭଙ୍ଗୀରେ, ଇଂରାଜୀରେ ଯାହାକୁ intonation କହନ୍ତି ।

ଷ୍ଟାଣ୍ଡାର୍ଡ଼ ଓଡ଼ିଆଭାଷା ସାରା ଓଡ଼ିଶାର ଲୋକେ ବୁଝନ୍ତି; ମାତ୍ର ଓଡ଼ିଆ ଭାଷାର କେତେକ ଉପଭାଷା କେବଳ ସ୍ଥାନୀୟ ଲୋକଙ୍କ ଛଡ଼ା ଅନ୍ୟମାନେ କେହି ବୁଝନ୍ତି ନାହିଁ । ଏହିପ୍ରକାର ଏକ ବଳିଷ୍ଠ ଉପଭାଷା ସମ୍ବଲପୁରୀ । ଏହି ଉପଭାଷା ସମ୍ବଲପୁର, ସୁନ୍ଦରଗଡ଼, କଳାହାଣ୍ଡି, ବଲାଙ୍ଗୀର, ବଉଦ ପ୍ରଭୃତି ଅଞ୍ଚଳରେ ବ୍ୟବହୃତ ହୁଏ । ଏହି ଭାଷା ସଂସ୍କୃତ, ଓଡ଼ିଆ, ହିନ୍ଦୀ, ଛତିଶଗଡ଼ୀ ଓ ଆଦିବାସୀ ଭାଷାମାନଙ୍କର ମିଶ୍ରଣର ଏକ ମଧୁମୟ ଫଳ । ଏହି ଉପଭାଷା ବିଶେଷଭାବରେ ପ୍ରାଣବନ୍ତ ଓ ଶ୍ରୁତିମଧୁର । ଏହାକୁ ଶୁଣିଲା ମାତ୍ରେ ହିନ୍ଦୀର ପ୍ରଭାବ ଏଥିରେ ସ୍ପଷ୍ଟ ଜଣା ପଡ଼ିଯାଏ । ଓଡ଼ିଶାର ଉପକୂଳ ଅଞ୍ଚଳରୁ ବହୁ ଦୂରରେ ରହି ଏବଂ ବହୁ କାଳପର୍ଯ୍ୟନ୍ତ ମଧ୍ୟ-ପ୍ରଦେଶର ଅନ୍ତର୍ଭୁକ୍ତ ରହି ସମ୍ବଲପୁରୀ ଭାଷା ଏକ ସ୍ୱତନ୍ତ୍ର ରୂପ ଧାରଣ କରିଛି । ଠିକ୍ ଏ ତଳେଇ ଦେଖିଲେ ସଂସ୍କୃତ ଭାଷାର ପ୍ରଭାବ ଯେତିକି ଜଣାପଡ଼େ, ଆଦିବାସୀ ଭାଷାର ପ୍ରଭାବ ସେତିକି ଜଣାପଡ଼େ । ଆଦିବାସୀ ଭାଷାମାନଙ୍କର ପ୍ରଭାବ ଯୋଗୁ ସମ୍ବଲପୁର ଓ କୋରାପୁଟ ଓଡ଼ିଶାର ଦୁଇ ବିପରୀତ ପ୍ରାନ୍ତରେ ବହୁ ଦୂରରେ ଅବସ୍ଥିତ ଥିଲେ ମଧ୍ୟ ଉଭୟ

ଭାଷାରେ ବହୁ ସମାନାର୍ଥକ ଶବ୍ଦ ଦେଖାଯାଏ । କାରଣ ସମ୍ବଲପୁର ପରି କୋରାପୁଟ ଓ ଗଞ୍ଜାମର ମାଳ ଅଞ୍ଚଳ ମଧ୍ୟ ବିଶେଷଭାବରେ ଆଦିବାସୀ ଭାଷାଦ୍ୱାରା ପ୍ରଭାବିତ । ସମ୍ବଲପୁରୀ ଉପଭାଷାରେ ବିଶେଷ ଉଲ୍ଲେଖଯୋଗ୍ୟ ବସ୍ତୁ ଆଖିଆଗକୁ ନ ଆସିଲେ ମଧ୍ୟ ଏହି ଭାଷାରେ ବହୁ ମଧୁର ଲୋକଗୀତ-ସମ୍ପଦ ଭରି ରହିଛି । ସମ୍ବଲପୁରର କେତେକ ଶିକ୍ଷିତ ଲୋକ ସମ୍ବଲପୁରୀ ଭାଷାକୁ ଓଡ଼ିଆର ଏକ ବିଶିଷ୍ଟ ଉପଭାଷା ବୋଲି ସ୍ୱୀକାର କରିବାପାଇଁ ନାରାଜ । ସେମାନଙ୍କ ଦୃଷ୍ଟିରେ ଏହା ଏକ ସ୍ୱତନ୍ତ୍ର ବିଶିଷ୍ଟ ଭାଷା । ବିହାର ଭାଷାମଣ୍ଡଳୀରେ ମୈଥିଳୀ ଭାଷାର ସ୍ଥାନ ଯେଉଁଠି, ଓଡ଼ିଆ ଭାଷା ନିକଟରେ ସମ୍ବଲପୁରୀର ସ୍ଥାନ ସେଇଠି ବୋଲି ସେମାନଙ୍କର ମତ । ମାତ୍ର ଏହି ସିଦ୍ଧାନ୍ତରେ ଉପସ୍ଥିତ ହେବାପାଇଁ ଷ୍ଟାଣ୍ଡାର୍ଡ ଓଡ଼ିଆ ଓ ସମ୍ବଲପୁରୀ ଭାଷାର ଯେତିକି ତୁଳନାତ୍ମକ ବିଚାର ହେବାର କଥା, ତାହା ଏପର୍ଯ୍ୟନ୍ତ ହୋଇ ନାହିଁ ।

ଓଡ଼ିଆ ଭାଷାର ଅନ୍ୟ ଏକ ଉପଭାଷା ଉତ୍ତର-ଓଡ଼ିଶାରେ ଉତ୍ତର-ବାଲେଶ୍ୱର, ମୟୂରଭଞ୍ଜ ଓ ବଙ୍ଗଳାର ମେଦିନୀପୁର ଜିଲ୍ଲାର ଲୋକେ କହନ୍ତି । ଏହି ଭାଷା ବିଶେଷଭାବରେ ବଙ୍ଗ ଭାଷାଦ୍ୱାରା ପ୍ରଭାବିତ । ଏହା ଏକପ୍ରକାର ବଙ୍ଗଳାମିଶା ଓଡ଼ିଆ । କହିବା ବାହୁଲ୍ୟ, ମେଦିନୀପୁର ଅଞ୍ଚଳ ଦିନେ ଓଡ଼ିଶାର ଥିଲା ଏବଂ ଉତ୍ତର-ଓଡ଼ିଶାର ସବୁପ୍ରକାର କାରବାର ବଙ୍ଗ ଦେଶରେ । ଗ୍ରୀଅର୍ସନ୍‌ଙ୍କ ରିପୋର୍ଟରୁ ଜଣା ପଡ଼େ ଯେ, ସେଠିକା ଲୋକେ ଏପରି ଏକ ଭାଷା କହନ୍ତି ଯାହା ବଙ୍ଗଳାରେ ଆରମ୍ଭ ହୋଇ ଓଡ଼ିଆରେ ଶେଷ ହୁଏ କିମ୍ବା ଓଡ଼ିଆରେ ଆରମ୍ଭ ହୋଇ ବଙ୍ଗଳାରେ ଶେଷ ହୁଏ । ମେଦିନୀପୁର ଅଞ୍ଚଳରେ ବଙ୍ଗଳା ପ୍ରଭାବ ଏତେ ବେଶୀ ଯେ, ଓଡ଼ିଆ ଭାଷାର ଶ୍ରେଷ୍ଠ ଶ୍ରେଷ୍ଠ ଗ୍ରନ୍ଥ ଓ ଲୋକଗୀତ ବଙ୍ଗଳା ଅକ୍ଷରରେ ଲେଖା ହେବାର ଦେଖାଯାଉଛି ।

ଓଡ଼ିଆ ଭାଷାର ଅନ୍ୟ ଏକ ଉପଭାଷା ଦକ୍ଷିଣ-ଓଡ଼ିଶାର କୋରାପୁଟ ଓ ଗଞ୍ଜାମ ଜିଲ୍ଲାରେ କୁହାଯାଏ । ଏହା ତେଲୁଗୁ ଓ ଓଡ଼ିଆମିଶ୍ରିତ ଏକ

ଭିଷା । ଏହିପ୍ରକାର ମିଶ୍ରଣଫଳରେ ଓଡ଼ିଆଭାଷାରେ ବହୁତ ଶବ୍ଦ ସ୍ଥାନ ପାଇଛି, ଯାହାର ମୂଳ ହେଉଛି ତେଲୁଗୁ । ଓଡ଼ିଆଭାଷାର ବିଶେଷ ଅଧ୍ୟୟନପାଇଁ ତେଲୁଗୁଭାଷା ବିଶେଷ ଆବଶ୍ୟକ ମନେ ହୁଏ । ବହୁ କାଳପର୍ଯ୍ୟନ୍ତ ଗଞ୍ଜାମ ମାନ୍ଦ୍ରାଜ ପ୍ରଦେଶ ସହିତ ରହିଥିଲା ଓ ତହିଁରେ ଓଡ଼ିଆମାନଙ୍କୁ ତେଲୁଗୁ ପଢ଼ିବା-ପାଇଁ ବାଧ୍ୟ କରାଯାଉଥିଲା । ଷ୍ଟାଣ୍ଡାର୍ଡ଼ ଓଡ଼ିଆ, ସମ୍ବଲପୁରୀ ଓ ଗଞ୍ଜାମୀ ଓଡ଼ିଆ ପରସ୍ପରଠାରୁ ଏତେ ଭିନ୍ନ ଯେ, ସେମାନଙ୍କୁ ଚହ୍ନିବାପାଇଁ କିଛି କଷ୍ଟ ନାହିଁ । ସମ୍ବଲପୁରୀ ଅପେକ୍ଷା ଗଞ୍ଜାମୀ ଅଧିକ ଅଜବ ଶୁଣାଯାଏ । ଶହ ଶହ ବର୍ଷର ମିଳନପରେ ମଧ୍ୟ ତେଲୁଗୁ ଭାଷା ଓଡ଼ିଆକୁ ସେପରିଭାବରେ ପ୍ରଭାବିତ କରି ପାରି ନାହିଁ, ଯେପରି ବଙ୍ଗଳା ଭାଷା ମେଦିନୀପୁର ଓଡ଼ିଆକୁ କିମ୍ବା ହିନ୍ଦୀ ଭାଷା ସମ୍ବଲପୁରୀ ଭାଷାକୁ କରିପାରିଛି । ତାର ପ୍ରଧାନ କାରଣ ହେଉଛି ହିନ୍ଦୀ,ବଙ୍ଗଳା ଓ ଓଡ଼ିଆ ଏକବଂଶୀ ଅର୍ଥାତ୍ ଇଣ୍ଡୋ-ଇଉରୋପୀୟାନ୍ ପର୍ଯ୍ୟାୟଭୁକ୍ତ; ମାତ୍ର ତେଲୁଗୁ ଭାଷା ଦ୍ରାବିଡ଼ବଂଶୀ । ଏମାନଙ୍କର ଭାଷାତାତ୍ତ୍ୱିକ ପ୍ରବୃତ୍ତି ବିଭିନ୍ନମୁଖୀ ହୋଇଥିବାରୁ ପରସ୍ପରକୁ (କେବଳ ଶବ୍ଦ ଆଦାନ-ପ୍ରଦାନ ଛଡ଼ା) ପ୍ରଭାବିତ କରିବା ସହଜ ନୁହେଁ । କିନ୍ତୁ ଦକ୍ଷିଣ ସୀମାରେ ଥିବା ଓଡ଼ିଆ ଲୋକେ ତେଲୁଗୁ ଭାଷାକୁ ଓଡ଼ିଆ ଭାଷା ପରି ସହଜରେ କହିପାରନ୍ତି । ଆଶ୍ଚର୍ଯ୍ୟର କଥା, ଶହେ ବର୍ଷ ପର୍ଯ୍ୟନ୍ତ ଗଞ୍ଜାମ ଓଡ଼ିଆସାହିତ୍ୟର ଏକ ପ୍ରଭାବଶାଳୀ କେନ୍ଦ୍ର ହୋଇଉଠିଥିଲା । ଗୋପାଳକୃଷ୍ଣ, କବିସୂର୍ଯ୍ୟଙ୍କ ପରି କବି ଓ ଗୋପୀନାଥ ନନ୍ଦଙ୍କ ପରି ଭାଷାବିତ୍ ଦକ୍ଷିଣ-ଓଡ଼ିଶାକୁ ଅଳଙ୍କୃତ କରିଥିଲେ ।

ଓଡ଼ିଆଭାଷା ଓ ତାହାର କେତେକ ଜଣାଶୁଣା ଉପଭାଷା ଛଡ଼ା ଓଡ଼ିଶାର ବଣଜଙ୍ଗଲରେ ବହୁପ୍ରକାର ଭାଷା କଥିତ ହୁଏ । ଓଡ଼ିଶାର ବଣଜଙ୍ଗଲ ଯେମିତି ବୃକ୍ଷସମ୍ପଦରେ ପୂର୍ଣ୍ଣ, ସେହିପରି ଭାଷାସମ୍ପଦରେ ମଧ୍ୟ ପୂର୍ଣ୍ଣ । ଗଞ୍ଜାମ, କୋରାପୁଟ, ସମ୍ବଲପୁର ଛଡ଼ା ଓଡ଼ିଶା ଗଡ଼ଜାତ, ଯଥା—ମୟୂରଭଞ୍ଜ, କେନ୍ଦୁଝର, ସୁନ୍ଦରଗଡ଼, ବଲାଙ୍ଗୀର, କଳାହାଣ୍ଡି, ବଉଦ ପ୍ରଭୃତି ରାଜ୍ୟରେ ବହୁ ଆଦିବାସୀ ଦେଖାଯାନ୍ତି । ସେମାନଙ୍କର ଭାଷା ସଂପର୍କରେ ବୈଜ୍ଞାନିକ

ବିଶ୍ଳେଷଣ ଏପର୍ଯ୍ୟନ୍ତ ଆଦୌ ହୋଇ ନାହିଁ । ପୁନା ସ୍କୁଲରେ କେତେ ଜଣ ଆମେରିକାନ୍ ଭାଷାବିତ୍‌ଙ୍କ ସହିତ ମୁଣ୍ଡାରି ଭାଷା ବିଶ୍ଳେଷଣ କରିବାର ସୁଯୋଗ ଲେଖକକୁ ମିଳିଥିଲା । ମାତ୍ର ତାହା ବିଶେଷ କିଛି ନୁହେଁ । ଏବେ ଜଣେ ଆମେରିକାନ୍ ଭାଷାବିତ୍ ଜନ୍ ଗୁମ୍ପରସ୍ ମୟୂରଭଞ୍ଜରେ ମୁଣ୍ଡାରି ବ୍ୟାକରଣ ଲେଖିବାପାଇଁ କାମ ଆରମ୍ଭ କରିଛନ୍ତି । ଓଡ଼ିଶାର ସର୍ବଶ୍ରେଷ୍ଠ ଔପନ୍ୟାସିକ ଗୋପୀନାଥ ମହାନ୍ତି କେତେକ ଆଦିବାସୀ ଭାଷାର ଅନୁସଂଧାନ କରିଛନ୍ତି; ମାତ୍ର ତାର ବୈଜ୍ଞାନିକ ମୂଲ୍ୟ ଏପର୍ଯ୍ୟନ୍ତ ଜଣା ପଡ଼ି ନାହିଁ । ଆଦିବାସୀ ସଭ୍ୟତା ଯେମିତି ଓଡ଼ିଶାର ସଭ୍ୟତା ସହିତ ଓତପ୍ରୋତଭାବରେ ମିଶି ରହିଛି, ଓଡ଼ିଆର ଶ୍ରେଷ୍ଠ ଦେବତା ଜଗନ୍ନାଥ ଯେମିତି ଶବର ଦେବତା ବୋଲି ପରିଚିତ, ଓଡ଼ିଆ ଭାଷା ସେହିପରି ଆଦିବାସୀ ଭାଷାଦ୍ୱାରା ପ୍ରଭାବିତ । ଆଦିବାସୀମାନଙ୍କର ଜୀବନ ବିଶ୍ଳେଷଣରେ ଅର୍ଥାତ୍ ସେମାନଙ୍କର ସାମାଜିକ ଜୀବନ ଜାଣିବାପାଇଁ ବର୍ତ୍ତମାନ ଯେଉଁପ୍ରକାର ଧ୍ୟାନ ଦିଆଯାଉଛି, ସେମାନଙ୍କ ଭାଷାର ଅଧ୍ୟୟନପାଇଁ ସେପରି ଧ୍ୟାନ ଦିଆ-ଯାଇ ନାହିଁ । ଆଧୁନିକ ଭାଷାତତ୍ତ୍ୱର ମୂଲ୍ୟ ଯେପର୍ଯ୍ୟନ୍ତ ଉପଲବ୍ଧି ହୋଇନି, ସେପର୍ଯ୍ୟନ୍ତ ଆଦିବାସୀ ଭାଷାର ବିଶ୍ଳେଷଣ ସମ୍ଭବ ନୁହେଁ କିମ୍ବା ଆଦିବାସୀଙ୍କ ସାମାଜିକ ଜୀବନର ପୂର୍ଣ୍ଣାଙ୍ଗ ଇତିହାସ ସମ୍ଭବ ହେବ ନାହିଁ ।

ଯଦିବା ଆଦିବାସୀମାନଙ୍କର ଭାଷା ସଂପର୍କରେ କୌଣସି ସଠିକ ଲିଖିତ ସମ୍ବାଦ ଏପର୍ଯ୍ୟନ୍ତ ସଂଗୃହୀତ ହୋଇ ନାହିଁ, ତଥାପି ବିଗତ ଜନଗଣନା ରିପୋର୍ଟ ଏବଂ ଅନ୍ୟ କେତେକ ସରକାରୀ ପତ୍ରପତ୍ରିକାରୁ ଯାହା ମିଳେ, ତାହାର ସାହାଯ୍ୟରେ କେତେକ ଜ୍ଞାତବ୍ୟ କଥା କୁହାଯାଇପାରେ । ଓଡ଼ିଶାର ଆଦିବାସୀମାନଙ୍କ ଭିତରୁ ବେଶୀ ଭାଗ ଲୋକ **ସାନ୍ତାଳୀ** ଭାଷା ବ୍ୟବହାର କରିଥାନ୍ତି । ମୟୂରଭଞ୍ଜ ଜିଲ୍ଲାରେ ଏମାନେ ସର୍ବାଧିକ ସଂଖ୍ୟାରେ ବାସ କରନ୍ତି । ମୟୂରଭଞ୍ଜ ଲୋକସଂଖ୍ୟାର ଶତକଡ଼ା ୨୩ ଭାଗ ହେଉଛନ୍ତି ସାନ୍ତାଳୀଭାଷୀ ଆଦିବାସୀ । ସଂଖ୍ୟାଦୃଷ୍ଟିରୁ ଓଡ଼ିଶା ଆଦିବାସୀ-

ମାନଙ୍କର ବିଗ୍ରହ କଲେ ସେମାନଙ୍କୁ କନ୍ଧ, କୁଇ, ସଉରା, ହୋ କ୍ରମରେ ରଖାଯାଇପାରିବ ।

ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ଯେଉଁ **ସଓରା**ମାନେ ବାସ କରନ୍ତି, ସେମାନେ ନାନାଭାବରେ ପରିଚିତ । ତେଲୁଗୁ ଭାଷାରେ ସେମାନଙ୍କୁ ସବରା ଓ ଓଡ଼ିଆ ଭାଷାରେ ସଉରା କୁହାଯାଏ । ସେମାନଙ୍କର ଭାଷା ମୁଣ୍ଡାପର୍ଯ୍ୟାୟର ଅନ୍ତର୍ଗତ । ଜର୍ଜ ଗ୍ରୀଅର୍ସନ୍ କହନ୍ତି ଯେ, ସେମାନଙ୍କର ଭାଷା ବିଶେଷଭାବରେ ତେଲୁଗୁ-ପ୍ରଭାବିତ ଏବଂ ଖରିଆ ଓ ଜୁଆଙ୍ଗ ଭାଷାର ନିକଟବର୍ତ୍ତୀ ଏକ ଭାଷା । ଏହି ଭାଷାଭାଷୀ ଲୋକେ ଗଞ୍ଜାମ, କୋରାପୁଟ ଛଡ଼ା ବାଲେଶ୍ୱର, ମୟୂରଭଞ୍ଜ, ସୁନ୍ଦରଗଡ଼ ଓ କଳାହାଣ୍ଡି ଜିଲ୍ଲା-ମାନଙ୍କରେ ମଧ୍ୟ ବସବାସ କରନ୍ତି ।

**କନ୍ଧ**ଭାଷାଭାଷୀ ଲୋକମାନେ ଗଞ୍ଜାମ, କୋରାପୁଟ ଓ ଫୁଲବାଣୀ ଅଞ୍ଚଳମାନଙ୍କରେ ରହନ୍ତି । ଓଡ଼ିଆମାନଙ୍କ ସହିତ ପରିବର୍ଦ୍ଧିତ ସଂପର୍କ ହେତୁ କନ୍ଧମାନେ ନିଜ ନିଜର ଭାଷା ଛାଡ଼ି ଓଡ଼ିଆ ଭାଷା କହିବାପାଇଁ ଆରମ୍ଭ କଲେଣି । ଏହା ଯେ କେବଳ କନ୍ଧଭାଷାପ୍ରତି ପ୍ରଯୁଜ୍ୟ ତା ନୁହେଁ, ଓଡ଼ିଶାର ବହୁ ଅଞ୍ଚଳରେ ଏହା ଦେଖିବାକୁ ମିଳେ । ହିନ୍ଦୁମାନଙ୍କର ଗାଁ-ପାଖରେ ରହିଥିବା ଆଦିବାସୀମାନେ କାଳକ୍ରମେ ନିଜ ଭାଷା ଛାଡ଼ି ଓଡ଼ିଆ ଭାଷା ଶିଖିଯାଉଛନ୍ତି । ଫଳତଃ ଓଡ଼ିଆ ଭାଷାରେ ଆଦିବାସୀ ଭାଷାର ପ୍ରଭାବ ମଧ୍ୟ ପରିଲକ୍ଷିତ ହେଉଛି । ଭାଷାବିତ୍‌ମାନେ ବର୍ତ୍ତମାନଠାରୁ ତତ୍ପର ନ ହେଲେ ହୁଏତ ଆସନ୍ନା ଅର୍ଦ୍ଧଶତାବ୍ଦୀଭିତରେ ଏହିସବୁ ଲୁପ୍ତ ହୋଇଯିବ, ନଚେତ୍ ଆର୍ଯ୍ୟଭାଷା ସହିତ ମିଶି ଏକ ଖେଚେଡ଼ି ତିଆରି ହୋଇଯିବ । **କୁଇ**ଭାଷୀ ଆଦିବାସୀମାନେ ସୁନ୍ଦରଗଡ଼, କଳାହାଣ୍ଡି, ଗଞ୍ଜାମ ଓ ପୁରୀ ଜିଲ୍ଲାମାନଙ୍କରେ ଦେଖାଯାନ୍ତି । **ଜୁଆଙ୍ଗ** ଓ **ଭୂୟାଁ**ଭାଷୀ ଲୋକେ କେନ୍ଦୁଝର ଓ ଢେଙ୍କାନାଳ ଜିଲ୍ଲାର ଅଧିବାସୀ । ସେମାନଙ୍କର ଭାଷା ମୁଣ୍ଡାରୀ ଭାଷା ସହିତ ସଂପୃକ୍ତ ବୋଲି ଭାଷାବିତ୍‌ମାନଙ୍କର ମତ । ସୁନ୍ଦରଗଡ଼

ଜିଲ୍ଲରେ **ଓରାଙ୍ଗ**ମାନଙ୍କ ସହିତ **କିସାନ**ମାନେ ବସବାସ କରିବାର ଦେଖାଯାଏ । ଓରାଙ୍ଗ ଓ କିସାନମାନଙ୍କର ଭାଷାରେ ସାମ୍ୟ ଅଛି ବୋଲି କେତେକ ଅନୁସନ୍ଧିତ୍ସୁ ସନ୍ଦେହ କରନ୍ତି; ମାତ୍ର ଏହିପ୍ରକାର ସଂପର୍କର ସିଦ୍ଧାନ୍ତ ପୂର୍ବରୁ **ସବିଶେଷ** ଗବେଷଣା ଆବଶ୍ୟକ ।

ଯଦିବା ବିଭିନ୍ନ ଆଦିବାସୀମାନଙ୍କୁ ଭିନ୍ନ ଭିନ୍ନ ଜିଲ୍ଲର ଅଧିବାସୀ ବୋଲି ଦେଖାଇ ଦିଆଯାଇଛି, ତଥାପି ସାଧାରଣଭାବରେ ଏହା କୁହାଯାଇପାରେ ଯେ ସବୁପ୍ରକାର ଆଦିବାସୀ ଅଳ୍ପବହୁତେ ଓଡ଼ିଶାର ପ୍ରାୟ ସମସ୍ତ ଜିଲ୍ଲରେ ଦେଖାଯାନ୍ତି । ଅବଶ୍ୟ ଉପକୂଳବର୍ତ୍ତୀ ଅଞ୍ଚଳ ଅପେକ୍ଷା ମାଳ ଅଞ୍ଚଳ ଓ ଗଡ଼ଜାତର ଅରଣ୍ୟ ଅଞ୍ଚଳ ଆଦିବାସୀମାନଙ୍କର ପ୍ରଶସ୍ତ ବାସକ୍ଷେତ୍ର । ବର୍ତ୍ତମାନ ଆଦିବାସୀମାନଙ୍କୁ ଓଡ଼ିଆ ଭାଷା ମାଧ୍ୟମରେ ଶିକ୍ଷା ଦିଆ ଯାଉଛି । ଆଦିବାସୀମାନେ ଏହି ଭାଷାରେ ସଂପୂର୍ଣ୍ଣ ଶିକ୍ଷିତ ହେବା-ବେଳକୁ ସେମାନଙ୍କ ପ୍ରଭାବରେ ଓଡ଼ିଆ ଭାଷା ବହୁଭାବରେ ପ୍ରଭାବିତ ହୋଇସାରିଥିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷା ଓ ଉପଭାଷାମାନଙ୍କର ସାମ୍ୟ ଓ ବୈଷମ୍ୟ ଦେଖିବାପାଇଁ ନିମ୍ନଲିଖିତ କେତେକ ଉଦାହରଣ ଦିଆଯାଇପାରେ ।

**ଷ୍ଟାଣ୍ଡାର୍ଡ଼ ଓଡ଼ିଆ**—ଯେଉଁ ସାହିତ୍ୟ ସାରାଓଡ଼ିଶାର ପାଠକମାନଙ୍କ ପାଇଁ ଲେଖା ହେବ, ତାହା ସମ୍ବଲପୁରୀ କିମ୍ବା ଅଣସମ୍ବଲପୁରୀ ଭାଷାରେ ଲେଖା ନ ଯାଇ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଅର୍ଥାତ୍ ସାର୍ବଜନୀନ ଓଡ଼ିଆ ଭାଷାରେ ଲେଖାଯିବା ଉଚିତ । କିନ୍ତୁ ଷ୍ଟାଣ୍ଡାର୍ଡ଼ ଭାଷାରେ ସାହିତ୍ୟ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଆଞ୍ଚଳିକ ଉପଭାଷାରେ ମଧ୍ୟ ସାହିତ୍ୟ ସୃଷ୍ଟି କରାଯାଇପାରେ । ବିଲାତର ଅନେକ ବଡ଼ ବଡ଼ ଲେଖକ ଇଂରାଜୀ ଭାଷାରେ ସାହିତ୍ୟ ଲେଖିବା ସଙ୍ଗେ ସଙ୍ଗେ ଆଇରିସ୍ ଓ ସ୍କଚ୍ ଭାଷାରେ ମଧ୍ୟ ଅନେକ ବିଖ୍ୟାତ ସାହିତ୍ୟ ଲେଖିଯାଇଛନ୍ତି । ବିହାରର ଷ୍ଟାଣ୍ଡାର୍ଡ଼ ଭାଷା ହିନ୍ଦୀ; କିନ୍ତୁ ଅନେକ ବିହାରୀ ଲେଖକ ହିନ୍ଦୀ ଭାଷାରେ ଲେଖିବା ଛଡ଼ା ଆଞ୍ଚଳିକ ଉପଭାଷାରେ

ମଧ୍ୟ ଉଚ୍ଚ ଧରଣର ସାହିତ୍ୟ ଲେଖିଯାଇଛନ୍ତି । ବିହାରର ଉପଭାଷା-ମାନଙ୍କମଧ୍ୟରେ ମୈଥିଳୀ ପ୍ରଧାନ । ମୈଥିଳୀ ଭାଷା ଏତେ ଉନ୍ନତି କରିଛି ଯେ, ବିହାର ବିଶ୍ୱବିଦ୍ୟାଳୟମାନଙ୍କରେ ମୈଥିଳୀ ଏମ୍. ଏ. କ୍ଳାସରେ ପଢ଼ାଯାଉଛି । ବିହାରରେ ମୈଥିଳୀ ଭାଷାର ସ୍ଥାନ ଯେଉଁଠି, ଓଡ଼ିଶାରେ ସମ୍ବଲପୁରୀ ଭାଷାର ସ୍ଥାନ ସେଇଠି ।

**ସମ୍ବଲପୁରୀ ଭାଷା**—ଯେଉଁ ସାହିତ୍ୟ ଓଡ଼ିଶାର ସାକର ପାଠକ-ମାନଙ୍କର ଲାଗି ଲେଖାଯିବା, ସେ ସାହିତ୍ୟ ସମ୍ବଲପୁରୀ ଉପଭାଷା କି ଅଣସମ୍ବଲ-ପୁରୀଉପଭାଷାଥି ନାଇଁ ଲେଖିକରି ଷ୍ଟାଣ୍ଡାର୍ଡ଼ ଅର୍ଥାତ୍ ସାର୍ବଜନୀନ ଓଡ଼ିଆଭାଷାଥି ଲେଖାଯିବାର ଉଚିତ । କିନ୍ତୁ ଷ୍ଟାଣ୍ଡାର୍ଡ଼ ଭାଷାଥି ସାହିତ୍ୟ ସୃଷ୍ଟି କରିବାର ସାଙ୍ଗେ ସାଙ୍ଗେ ଆଞ୍ଚଳିକ ଉପଭାଷାଥି ଭି ସାହିତ୍ୟ ସୃଷ୍ଟି କରିଯାଇ-ପାରେ । ବିଲାତର ବହୁତ ଲେଖକ ଷ୍ଟାଣ୍ଡାର୍ଡ଼ ଇଂରାଜୀ ଭାଷାଥି ସାହିତ୍ୟ ଲେଖିବାର ସାଙ୍ଗେ ସାଙ୍ଗେ ସେମାନଙ୍କର ଆଞ୍ଚଳିକ ଉପଭାଷା ଅର୍ଥାତ୍ ଆଇରିସ୍, ସ୍କଚ୍ ଆଦି ଭାଷାଥିଭି ଅନେକ ବିଖ୍ୟାତ ସାହିତ୍ୟ ସୃଷ୍ଟି କରି ଯାଇଛନ୍ । ବିହାରର ଷ୍ଟାଣ୍ଡାର୍ଡ଼ ଭାଷା ହିନ୍ଦୀ; କିନ୍ତୁ ଅନେକ ବିହାରୀ ଲେଖକ ହିନ୍ଦୀ ଭାଷାଥି ଲେଖିବାର ଛଡ଼ା ନିଜ ନିଜର ଆଞ୍ଚଳିକ ଉପଭାଷାଥି ଭି ଉଚ୍ଚ ଧରଣର ସାହିତ୍ୟ ଲେଖିଯାଇଛନ୍ । ବିହାରର ଇ ଆଞ୍ଚଳିକ ଭାଷାମାନଙ୍କର ଭିତରୁ ମୈଥିଳୀ ଭାଷା ପ୍ରଧାନ । ମୈଥିଳୀ ଭାଷା ଏତେଦୂର ଉନ୍ନତି କରିଛି ଯେ, ବିହାରର ବିଶ୍ୱବିଦ୍ୟାଳୟମାନଙ୍କେ ମୈଥିଳୀ ଭାଷାଥି ଏମ୍. ଏ. ପଢ଼ା ଯାଉଛେ । ବିହାରଥି ମୈଥିଳୀ ଭାଷାର ସ୍ଥାନ ଯାହା, ଓଡ଼ିଶାଥି ସମ୍ବଲପୁରୀ ଭାଷାର ସ୍ଥାନ ତାହା ।

( ଅଶ୍ୱିନୀ କୁ. ପୂଜାରୀ, ସମ୍ବଲପୁର
—କଣଲକ୍ଷ୍ମୀ, ପୃ: ୯)

**ଦକ୍ଷିଣୀ ଭାଷା (କୋରାପୁଟ)—(୧)** ଯୁ ସାହିତ୍ୟଟା କି ଓଡ଼ିଶା ଯାକର ପାଠକମାନଙ୍କପାଇଁ ଲେଖାଯିବ, ସିଟା ସମ୍ବଲପୁରୀ କି ଅସମ୍ବଲପୁରୀ; ଦେଶୀୟା ଭାଷାରେ ନ ଲେଖା ହୋଇ ଷ୍ଟାଣ୍ଡାର୍ଡ଼ ବୋଇଲେ, ସବୁ ଲୋକ ଜାଣିପାରଲା ପରି ଓଡ଼ିଆ ଭାଷାରେ ଲେଖା ହେବା ବିଧି। ମାତ୍ର ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷାରେ ସାହିତ୍ୟ ରଚନା କରିବା ସାଙ୍ଗରେ ସାଙ୍ଗରେ ଦେଶୀୟା ଭାଷାରେ ମିଶା ସାହିତ୍ୟ ରଚନା କରାଯାଇପାରେ। ବିଲାତର ଲେଖକ ଆଇରିସ୍ ଆଉରି ସ୍କଚ୍ ଭାଷାରେ ମିଶା ବିଖ୍ୟାତ ସାହିତ୍ୟ ଲେଖିଯାଇଛନ୍ତି। ବିହାରର ଷ୍ଟାଣ୍ଡାର୍ଡ଼ ଭାଷା ହିନ୍ଦୀ; ମାତରକ ବିହାରର ବହୁତ ଲେଖକ ହିନ୍ଦୀ ଭାଷାରେ ଲେଖିବା ଛଡ଼ା ତାଙ୍କର ଦେଶୀୟା ଭାଷାରେ ମିଶା ବଡ଼ ଧରଣର ସାହିତ୍ୟ ଲେଖିଯାଇଛନ୍ତି। ବିହାରର ଦେଶୀୟା ଭାଷାମାନଙ୍କଭିତରୁ ମୈଥିଳୀ ଗୁଟେ ମୁଖ୍ୟ ଭାଷା। ମୈଥିଳୀ ଭାଷା ଏତେ ଧୁର ଉନ୍ନତି କରିଛି ଯେ, ବିହାରର ବିଶ୍ୱବିଦ୍ୟାଳୟମାନଙ୍କରେ ମୈଥିଳୀ ଭାଷାରେ ଏମ୍. ଏ. ପଢ଼ାଯାଉଛି। ବିହାରର ମୈଥିଳୀ ଭାଷାର ଥାନ ଯୁଟି, ଓଡ଼ିଶାର ସମ୍ବଲପୁରୀ ଭାଷାର ଥାନ ସିଠି।

**(୨)** ଯନ୍ ପାଠଟା କି ଓଡ଼ିଶା ଯାକର ପାଠପଢ଼ା ଲୋକମନେଙ୍କର କାଜେ ଲେଖାଯାଇସି, ସେଟା ସମ୍ବଲପୁରୀ କି ଅସମ୍ବଲପୁରୀ ଦେଶୀୟା ଭାଷା ଆନେ ଲେଖା ନ ହୋଇକରି, ଷ୍ଟାଣ୍ଡାର୍ଡ଼ ବୋଇଲେ ଯେମନ୍ତାର କି ସବୁ ଲୋକ୍ ସମ୍ଜି ହେଜି ପାରବାଇ ସେମ୍ତାର ଓଡ଼ିଆ ଭାଷା ଆନେ ଲେଖିବା ବିଧି। ମାତର ଷ୍ଟାଣ୍ଡାର୍ଡ ଭାଷା ଆନେ ପାଠ ରଚନା କରିବାର ସାଙ୍ଗେ ସାଙ୍ଗେ ଉପୁରି ଭାଷା ଆନେ ମିଶା ସେମନ୍ତାର କରିହୋଇସି। ସାଇବ ଦେଶେ ବିସ୍ତାର ବଡ଼ ବଡ଼ ଲେଖିବା ଲୋକ୍ ଇଂଗ୍ଲୁସ୍ ଭାଷା ଆନେ ପାଠ ରଚନା କରବାର ସାଙ୍ଗେ ସାଙ୍ଗେ ଆଇରିସ୍ ଆଉରି ସ୍କଚ୍ ଉପୁରି ଭାଷା ଆନେ ମିଶା ପରଧାନ ପାଠ ଲେକିଗଲଚତ୍। ବିଆରର ଷ୍ଟାଣ୍ଡାର୍ଡ଼ ଭାଷା ହେଲାଚେ ହିନ୍ଦୀ; ମାତର ବିଆରର ବିସ୍ତାର ଲେଖିବା

ଲୋକ୍ ହିନ୍ଦୀ ଭାଷା ଆନେ ଲୋକ୍ବା ବଦଲେ ସେମନ୍‌କର ଦେଶୀୟ ଭାଷା ଆନେ ମିଶା ବଡ଼େ ଧରେଣର ପାଠ ଲେକଗଲ୍‌ଚନ୍ । ବିଆରର ଦେଶୀୟ ଭାଷାମନେଙ୍କର ଭିତରେ ମୈଥିଳୀ ଗୋଟେକ୍ ମୁଖିଆ ଭାଷା । ମୈଥିଳୀ ଭାଷା ଏତେକ ଦୂର ବଗସିଗଲ୍‌ଚେ ଯେ ବିଆର ବିଶ୍ୱବିଦ୍ୟାଳୟ-ମନ୍‌କରେ ସେଇ ଭାଷା ଆନେ ଏମ୍. ଏ. ପାଢ଼ାଯାଇସି ଆଚେ । ବିଆର ଦେଶେ ମୈଥିଳୀ ଭାଷା ଯୋଠାନେ ଆଚେ, ଓଡ଼ିଶା ଆନେ ସମ୍ବଲପୁରି ଭାଷା ସେଇଠାନେ ଆଚେ ।

( ଶ୍ରୀଯୁକ୍ତ ରାମନାଥ ପଣ୍ଡା, କୋରାପୁଟ, ଯେ ଏହି ଲେଖା ଯୋଗାଇ ଦେଇଛନ୍ତି, ତାଙ୍କ କହିବା ଅନୁସାରେ ଦ୍ୱିତୀୟଟି କୋରାପୁଟର ସାଧାରଣ କଥିତ ଭାଷା ଓ ପ୍ରଥମଟି ପରିମାର୍ଜିତ ଭାଷା । ଏଠି ଆମର ଦ୍ୱିତୀୟ ଲେଖାଟି ଦେଖିବାର କଥା ।)

**ବାଲେଶ୍ୱରୀ ଭାଷା**— ଯେ ପୁଥି ଉଡ଼ିଶାର ସବୁଆଡ଼ ପାଠୁଆଙ୍କ ପାଇଁ ଲେଖାଯିବ, ତା ସମ୍ବଲପୁରୀ ବା ଅଣସମ୍ବଲପୁରୀ ଉପଭାଷାରେ ଲେଖା ନ ହୋଇ ଷ୍ଟାଣ୍ଡାର୍ଡ଼ ବା ସବୁ ଆଡ଼କାର ଉଡ଼ିଆ ଭାଷାରେ ଲେଖା ହେବା ଉଚିତ । କିନ୍ତୁ ଷ୍ଟାଣ୍ଡାର୍ଡ଼ ଭାଷାର ପୁଥି ଲେଖିବା ସଙ୍ଗରେ ବି ଉପଭାଷାର ପୁଥି ଲେଖା ଯାଇପାରେ । ବିଲାତର ବହୁତ ବଡ଼ ବଡ଼ ଲେଖକ ଇଂରାଜୀ ଭାଷାର ପୁଥି ଲେଖିବା ସଙ୍ଗରେ ମଧ୍ୟ ଆଇରସ୍ ଓ ସ୍କଚ୍ ଉପଭାଷାର ବଡ଼ ବଡ଼ ପୁଥି ଲେଖି ଯାଇଚନ୍ ।

* * * *

( ଇନ୍ଦୁ ଭୂଷଣ କର, ୩ୟ ବାର୍ଷିକ କଳା
ଫ. ମୋହନ କଲେଜ )

(ଅବଶ୍ୟ ଏହି ବାଲେଶ୍ୱରୀ ଭାଷା ନମୁନା ମେଦନୀପୁର ଅଞ୍ଚଳର ନ ହୋଇଥିବାରୁ ଏଥିରେ ବଙ୍ଗୀୟ ପ୍ରଭାବର ବିଶେଷ ଛାପ ନାହିଁ ।)

ସବୁଠୁ ସୁବିଧା ହେଉଛି ଲୋକଙ୍କ ମୁହଁରୁ କଥା ଟେପ୍-ରେକର୍ଡିଂ ମେସିନ୍ ଦ୍ୱାରା ଉଠାଇଆଣି ବିଶ୍ଳେଷଣ କରିବା କଥା; ମାତ୍ର ସେପ୍ରକାର ସୁଯୋଗ ନ ଥିବା ସ୍ଥଳେ କେବଳ ବୈଭିନ୍ନ୍ୟର ପରିଚୟ ମାତ୍ର ଦିଆଯାଇଛି । ଅବଶ୍ୟ ଓଡ଼ିଶା ଗଡ଼ଜାତମାନଙ୍କରେ ଏମିତି ଭାଷାସବୁ ଅଛି, ଯାହା ସମ୍ବଲପୁରୀ ବା କୋରାପୁଟ ଉପଭାଷା ପରି ସ୍ୱତନ୍ତ୍ର; ମାତ୍ର ସେମାନଙ୍କର କୌଣସି ବୈଜ୍ଞାନିକ ବିଶ୍ଳେଷଣ ଏପର୍ଯ୍ୟନ୍ତ ଆରମ୍ଭ ହୋଇନି । ଏହି ପ୍ରବନ୍ଧରେ କେବଳ ପ୍ରଧାନ ଜଣାଶୁଣା ଉପଭାଷାମାନଙ୍କର ସୂଚନା ଦିଆଯାଇଛି ମାତ୍ର ।

---

କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କଦ୍ୱାରା ମୁଦ୍ରିତ—୧୯୫୭

